# ବାମାବାଦ ଓ ଅନ୍ୟାନ୍ୟ ପ୍ରବନ୍ଧ

ଡକ୍ଟର ନଗେନ କୁମାର ଦାସ



Source: Author, Digitized by PPRACHIN, SOA

# ବାମାବାଦ ଓ ଅନ୍ୟାନ୍ୟ ପ୍ରବନ୍ଧ

ଡକ୍ଟର ନଗେନ କୁମାର ଦାସ



ଅଗ୍ରଦୂତ
କଟକ - ୭୫୩୦୦୨

Source: Author, Digitized by PPRACHIN, SOA

ବାମାବାଦ ଓ ଅନ୍ୟାନ୍ୟ ପ୍ରବନ୍ଧ

ଲେଖକ/ପ୍ରକାଶକ : ଡକ୍ଟର ନଗେନ କୁମାର ଦାସ
ବି-୨୨୦, ସେକ୍ଟର-୧୬,
ରାଉରକେଲା, ସୁନ୍ଦରଗଡ଼
୭୬୯୦୦୩

ପରିବେଷକ : ଅଗ୍ରଦୂତ
ବାଙ୍କାବଜାର, କଟକ-୭୫୩୦୦୨
ଓଡ଼ିଶା

ପ୍ରଥମ ପ୍ରକାଶ : **୨୦୧୫**
ପ୍ରଚ୍ଛଦ ଓ କମ୍ପ୍ୟୁଟର ସହାୟତା : ଏମ୍. ପ୍ରିଣ୍ଟର୍ସ, କଟକ
ମୁଦ୍ରଣ : ରୁବି ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ.୧୦୦/-

BAMABADA OANNYANYA PRABANDHA

Written / Published by: **Dr.Nagen Kumar Das**
B-220, Sector- 16, Rourkela-16, Sundargarh,769003

Distributer : **AGRADUTA**
Bankabazar, Cuttack-753002,Odisha

First Edition - **2015**
Printed by : Ruby Printers, Cuttack

Price : ₹ 100/-

ISBN81-86354-130-8

**Acknowledgement :**
*Published with Financial Assistance from Grant-in-Aid Unit of Central Institute of Indian Languages (Ministry of Human Resource Development, Department of Higher Education, Govt. of India), Manasagangotri, Mysore - 570006 vide sanction letter F No. 51-8(2)/ 2015-16/ORY/GRNT, dated 1st February- 2017 under the Publication Scheme of Grant-in-Aid (scheme- II)."*

Source: Author, Digitized by PPRACHIN, SOA

ବାପା ଓ ବୋଉ
ଯିଏ ମୋତେ ତାଙ୍କ ଆଲୋକରେ ଆଲୋକିତ
କରିଛନ୍ତି, ତାଙ୍କର ପାଦପଦ୍ମରେ ଏହି
ପୁସ୍ତକଟି ସମର୍ପିତ...

ନଗେନ

Source: Author, Digitized by PPRACHIN, SOA

# ମୁଖବନ୍ଧ...

ମାନବ ସଭ୍ୟତାରେ ଯେବେଠାରୁ 'ବ୍ୟକ୍ତିଗତ ସଂପତ୍ତି' ମାନସିକତାର ଜନ୍ମ ନେଇଛି, ସେବେ ଠାରୁ ନାରୀ ହୋଇଛି ବ୍ୟକ୍ତିଗତ ସଂପତ୍ତିର ଏକ ସ୍ଥୁଳ ନମୂନା । ବ୍ୟକ୍ତିଗତ ସଂପତ୍ତିର ଅଧିନିୟମ କେବଳ ଗୋଟିଏ କେନ୍ଦ୍ରରେ ସୀମାବଦ୍ଧ ହେବା । ସେହିପରି ନାରୀର ସ୍ୱାଧୀନ ଇଚ୍ଛାପ୍ରବୃତ୍ତି ପୁରୁଷତନ୍ତ୍ରର କେନ୍ଦ୍ରବିନ୍ଦୁ ଚତୁପାର୍ଶ୍ୱରେ ଘୂର୍ଣ୍ଣାୟମାନ । ପରିବର୍ତ୍ତିତ ସମୟ ଚକ୍ରରେ ସେ ହୋଇଛି ଏକ ଯୌନ ଉଦ୍ଦୀପକ ବସ୍ତୁ ମାତ୍ର । ଧର୍ମ ଧାରଣା ମଧ ଦେଇ ନାରୀର ସ୍ୱାଧୀନତା ଅପହୃତ ହୋଇଛି ପୁରୁଷ ତନ୍ତ୍ର ମାଧମରେ । ତେଣୁ ନାରୀର ସ୍ୱପ୍ନ କେବେହେଲେ ପରିଧିକୁ ସ୍ପର୍ଶ କରିପାରିନି । ଯୁଗଯୁଗ ଧରି ପୁରୁଷାନୁଶାସନରେ ନିବଦ୍ଧ ନାରୀ-ସତ୍ତା ମୁକ୍ତିର ବାଟ ଅନ୍ୱେଷଣ କରିବାର ଆସ୍ପର୍ଦ୍ଧା ହୁଏତ ପୁରୁଷତନ୍ତ୍ର ପାଇଁ ଏକ ବିଷମ ସଂକଟ । ବାମାବାଦ ବା ଫେମିନିଜମ୍ ଏହି ଯନ୍ତ୍ରଣାସିକ୍ତ ଜୀବନର ଏକ ମାର୍ଗଦର୍ଶିକା ବୋଲି ମନେହୁଏ । ପ୍ରବନ୍ଧଗୁଡ଼ିକ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଛି । ଏହି ଅବସରରେ ଝଙ୍କାର, କୋଣାର୍କ, ଇସ୍ତାହାର, ନବପତ୍ର, ସ୍ୱସ୍ତି ପ୍ରଭୃତି ପତ୍ରପତ୍ରିକାର ସଂପାଦକମାନଙ୍କୁ ମୋର ଗଭୀର କୃତଜ୍ଞତା ।

ସାହିତ୍ୟ ରଚନାର ନାରୀର ସୃଜନଶୀଳ ମନୋଭାବ ଓ ସେଥିରେ ନାରୀ ଜୀବନ ସଂପର୍କିତ ବହୁବିଧ ସୂକ୍ଷ୍ମ ତଥା ସ୍ଥୁଳ ଉପାଦାନ ଅନ୍ୱେଷଣ କରିବାରେ ଯିଏ ମୋର ପ୍ରେରଣାର ଉତ୍ସ; ସେ ହେଲେ – ପ୍ରଫେସର ସବିତା ପ୍ରଧାନ । ଏହି ଅବସରରେ ତାଙ୍କୁ ମୋର ଭକ୍ତିପୂତ ପ୍ରଣାମ । ସର୍ବୋପରି ମୋର ଗବେଷଣା କରିବାର ମନୋବୃତ୍ତିକ ଅଧିକରୁ ଅଧିକ ପ୍ରରୋଚିତ କରିଥିବା ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ପ୍ରଫେସର ମନୋରଂଜନ ପ୍ରଧାନ, ଡକ୍ଟର ଶ୍ରୀଚରଣ ମହାନ୍ତିଙ୍କୁ ଏଇ ଅବସରରେ ମୁଁ ପ୍ରଣିପାତ କରୁଛି ।

**ନଗେନ କୁମାର ଦାସ**

Source: Author, Digitized by PPRACHIN, SOA

# ସୂଚୀ


| | | |
|---|---|---|
| ୧. | ବାମାବାଦ | ୭ |
| ୨. | ବାମାବାଦୀ ଆନ୍ଦୋଳନର ଇତିହାସ : ଏକ ଅଧ୍ୟୟନ | ୧୬ |
| ୩. | ଓଡ଼ିଆ ଲେଖିକାଙ୍କ ମିଥ୍ ଓ ବିଜ୍ଞାନ ଭିତ୍ତିକ ଉପନ୍ୟାସରେ ବାମାବାଦୀ ଚେତନା | ୨୪ |
| ୪. | ଲେଖିକାଙ୍କ ଉପନ୍ୟାସ: ଭାଷା ପ୍ରୟୋଗର ବୈଶିଷ୍ଟ୍ୟ ବିଚାର | ୪୦ |
| ୫. | ସୁଲୋଚନା ଦେବୀ : ବିସ୍ମୃତ ପରଂପରାରେ ବିସ୍ମୃତ ପ୍ରତିଭା | ୪୫ |
| ୬. | ଯାଜ୍ଞସେନୀ : ବାମାବାଦୀ ଚେତନାର ଆଲେଖ୍ୟ | ୬୪ |
| ୭. | ଔପନ୍ୟାସିକା ସୁଲୋଚନା ଦାସ | ୭୧ |
| ୮. | ଲକ୍ଷ୍ମୀଧର କାବ୍ୟମାନସ | ୮୨ |
| ୯. | ଇଂରାଜୀରେ ପ୍ରଥମ ଓଡ଼ିଆ ନାଟକ : ବାବାଜୀ | ୯୦ |
| ୧୦. | ଫକୀରମୋହନଙ୍କ ଶାସ୍ତ୍ରାୟଣ ପ୍ରସଂଗ : 'ଛ ମାଣ ଆଠଗୁଣ୍ଠ' | ୯୯ |
| ୧୧. | ଭାବବାଦୀ ଉଲ୍ଲାସର ଅନ୍ୱେଷଣ : 'ବୃନ୍ଦାବନର ଶେଷ ଧୂପ' | ୧୧୯ |
| ୧୨. | 'ରାଜକନ୍ୟା'ର ରୂପକାର ନିତ୍ୟାନନ୍ଦ ମହାପାତ୍ର | ୧୩୨ |
| ୧୩. | 'ଓ ! କାଲକାଟା !!' ସୁରେନ୍ଦ୍ରୀୟ ଚେତନାର ବ୍ୟତିକ୍ରମ ଉପଲବ୍ଧି | ୧୪୨ |
| ୧୪. | ପୁନଶ୍ଚ ହସ୍ତିନା : କଥା ସୃଷ୍ଟି, ଶିଳ୍ପୀଦୃଷ୍ଟି | ୧୫୨ |
| ୧୫. | ବିଷକନ୍ୟାର କାହାଣୀର ଅନ୍ତର୍ଯାତ୍ରା | ୧୬୫ |




Source: Author, Digitized by PPRACHIN, SOA

# ବାମାବାଦ

ଇଂରାଜୀରେ ଗୋଟିଏ ଶବ୍ଦ ଅଛି "Androgynous" ସମାଜତାନ୍ତ୍ରିକ ଦୃଷ୍ଟିକୋଣରୁ ବିଚାର କଲେ ଯାହାର ଅର୍ଥ ହୋଇପାରେ, ଲିଙ୍ଗଭେଦ ଦୃଷ୍ଟିରୁ ସମାଜରେ ସମସ୍ତେ ସମାନ । ସେଥିପାଇଁ ଆମକୁ ଆମ ସମାଜକୁ "Androgynous Society" କୁହାଯାଏ । ଏହ "Androgynous" ଶବ୍ଦ ଗ୍ରୀକ୍ 'Andro' ଅର୍ଥାତ୍ 'ପୁରୁଷ' ଏବଂ 'Gyn' ଅର୍ଥାତ୍ 'ନାରୀ' ଶବ୍ଦର ସମ୍ମିଶ୍ରଣରୁ ସୃଷ୍ଟି । ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାପଡ଼େ ଯେ ଏହି "Androgynous Society" କ୍ରମଶଃ ଏକ ବିବର୍ତ୍ତନ ଧାରା ଦେଇ ସଂପ୍ରତି 'Patriarchal Society' ବା ପୁରୁଷ ପ୍ରଧାନ ସମାଜ ରୂପେ ଆମ ସମ୍ମୁଖରେ ବିଦ୍ୟମାନ । ତେଣ୍ Patriarchal କିମ୍ବା 'Matriarchal Society'ର କ୍ରମବିବର୍ତ୍ତନ କେନ୍ଦ୍ରରେ ରହିଛି ମାନବ – ମାନସିକ ଜଟିଳତାର କ୍ରିୟାପରିଣାମ । ଏହି ଜଟିଳ-ମାନସିକ ପ୍ରକ୍ରିୟାକୁ ଭିତ୍ତିକରି ସାର୍ତ୍ରେଙ୍କ 'Theory of Existentialsim' ପ୍ରତିଷ୍ଠିତ । ଉପର୍ଯ୍ୟୁକ୍ତ ମାନସିକ ପ୍ରକାର୍ଯ୍ୟକୁ ସାର୍ତ୍ରେ କୁହନ୍ତ 'sadomasochism' ଅର୍ଥାତ୍ ଆନନ୍ଦ ପାଇବାର ମୂଳ ଉତ୍ସ ହେଉଛି ଯନ୍ତ୍ରଣା । ନିଜର ସ୍ୱାଧୀନତା ବା 'Subjectivity'କୁ ନିଜ ମଧ୍ୟରେ ଗଭୀର ଭାବେ ଆତ୍ମସ୍ଥ କରି ଅନ୍ୟର ସ୍ୱାଧୀନତାକୁ ଅପହରଣ କରିବା ସହ ତା'କୁ ଯନ୍ତ୍ରଣା ଦେଇ ସ୍ୱୟଂ ଆନନ୍ଦିତ ବ୍ୟକ୍ତିକୁ ସାର୍ତ୍ରେ 'Saddist' ବୋଲି କହନ୍ତି । କିନ୍ତୁ ଅନେକ ବ୍ୟକ୍ତି ନିଜର 'Subjectivity'କୁ ସ୍ୱ-ଇଚ୍ଛାରେ ଅନ୍ୟକୁ ସମର୍ପଣ କରନ୍ତି ଓ ତାଙ୍କଠାରୁ ଯନ୍ତ୍ରଣା ପାଇ ସେଥିରେ ସେମାନେ ଆନନ୍ଦିତ ହୁଅନ୍ତି । ଏମାନଙ୍କୁ ସାର୍ତ୍ରେ 'Masochist' ବୋଲି କହିଛନ୍ତି ।

(ସାଂପ୍ରତିକ ସମାଜରେ ନାରୀ 'masochist'ରେ ପରିଣତ ହୋଇଛି । ନିଜର ସ୍ୱାଧୀନ ମତ କିମ୍ବା ଇଚ୍ଛାଗୁଡିକୁ ବ୍ୟକ୍ତିବିଶେଷ ଏବଂ ସମାଜ ନିକଟରେ ସମର୍ପଣ କରିବା ସହ ସେମାନଙ୍କଠାରୁ ଯନ୍ତ୍ରଣା ପାଇ ଆଜିର ନାରୀ ଆନନ୍ଦିତ । ଯେଉଁଠି ସେ ନିଜର ସ୍ଥିତି ସଂପର୍କରେ ସଚେତନ ନୁହେଁ । ନିଜକୁ ନ୍ୟୁନ ମନେ କରି ଆତ୍ମପ୍ରକାଶ କରୁଛି 'Second sex' ରୂପେ । ତେଣୁ ସାଂପ୍ରତିକ ସମାଜକୁ 'Androgynous' ସମାଜ ନ କହି 'second sex'ର ସମାଜ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁଠି ସ୍ଥାନ ପାଇଛି, ପୁରୁଷ ନିକଟରେ ନାରୀର ସଂପୂର୍ଣ୍ଣ ଆତ୍ମସମର୍ପଣ, ନିଜ ଇଚ୍ଛାନୁସାରେ ବିବାହ ନିର୍ବାଚନ ନ କରିବା ଗ୍ଳାନି ଇତ୍ୟାଦି ।) ପୁରୁଷ ଦ୍ୱାରା ଲିଖିତ ନୀତି ତଥା ପୁରାଣ ଶାସ୍ତ୍ରରେ ନାରୀକୁ 'ଦେବୀ'ର ଆଖ୍ୟା ଦେବା ସହ



Source: Author, Digitized by PPRACHIN, SOA

ଜାୟା, ଜନନୀ, ଭଗିନୀ ରୂପେ ବିଭକ୍ତ କରିଛି । ଶଂଖା, ସିନ୍ଦୁରବୁର୍ଖା ଏବଂ ଦେହସାରା ଚିତାକୁଟାଇ ନାରୀକୁ ଏପରି ଏକ ବେଡ଼ିରେ ବାନ୍ଧି ରଖିଛି ଯେଉଁଥିରେ ତାର ମୁକ୍ତି ଅସମ୍ଭବ । ନାରୀ ହୋଇଯାଇଛି ଗୋଟିଏ 'myth' । ଏହି ସାମାଜିକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପୁରୁଷ ତିଆରି କରିଛି ପାଇଁ ଏପରି ଏକ ପରିବେଶ ଯାହାର ମାୟାଜାଲ ମଧ୍ୟରେ ନାରୀ ସ୍ୱୟଂ ଆବଦ୍ଧ ହୋଇ ପୁରୁଷ ବଶ୍ୟତା ସ୍ୱୀକାର କରୁଛି । ଅନେକ ସମୟରେ ନାରୀ ତା'ର ଶାରୀରିକ ଗଠନ ପ୍ରକ୍ରିୟାକୁ ନିଜର ଭାଗ୍ୟ ବୋଲି ମନେ କରୁଥାଏ । ତେଣୁ ପୁରୁଷର ହିଂସ୍ରମନୋଭାବ ମୂଳକ ଯୌନପ୍ରବୃତ୍ତି ଏବଂ ତାର ପ୍ରତିକ୍ରିୟା ସ୍ୱରୂପ ସୃଷ୍ଟି ହୋଇଥିବା 'Sadomesochism'ର ଉଚ୍ଛେଦ ପାଇଁ ସାଂପ୍ରତିକ ନାରୀ 'Lesbianism' ଉପରେ ଗୁରୁତ୍ୱ ଦେଉଛି । 'In order to be liberated, women must escape the confines of heterosexuality and create an exclusively female sexality through celibacy autoeroticism of lesbianism. Alone or with other women; a woman can discover the true pleasure of sex'.[୨]

ଭିନ୍ନ ଏକ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ, ଗୋଟିଏ ନାରୀ ନିଜର ରୂପ ବୈଭବ କିମ୍ବା ଧନ ଐଶ୍ୱର୍ଯ୍ୟ ଦ୍ୱାରା କ୍ରମାନ୍ୱୟ ଭାବେ ବହୁ ପୁରୁଷ ସହ ସଂପର୍କ ସ୍ଥାପନକରି ସମାଜରେ ନାରୀ ପୁରୁଷ ମଧ୍ୟରେ ଥିବା ମଧୁମୟ ତଥା ଆଧ୍ୟାତ୍ମିକ ସଂପର୍କର ଭାରସାମ୍ୟକୁ ଭାଙ୍ଗି ଦେଇଥାଆନ୍ତି । ଏହି ଧରଣର ନାରୀକୁ 'Nymphomaniacs' ବୋଲି ଅଭିହିତ କରାଯାଏ । ଏମାନେ ବୈଷୟିକ ବେଶ୍ୟାବୃତ୍ତିରେ ଲିପ୍ତ ନହେଲେ ବି ମାନସିକ ସ୍ତରରେ ପେଷାଦାରୀ ବେଶ୍ୟା ଭାବେ ସ୍ୱୀକୃତ । ସେଥିପାଇଁ 'Feminist' ମାନେ, ନାରୀ ନିଜର ଉଶୃଙ୍ଖଳତା ପ୍ରତି ସତର୍କ ରହିବା ସହ, ସ୍ୱାଧୀନତାକୁ ସ୍ୱେଚ୍ଛାଚାରିତାରେ ପରିଣତ ନ କରିବା ପାଇଁ ଦୃଢ଼ ମନ୍ତବ୍ୟ ଉପସ୍ଥାପନ କରିଛନ୍ତି । ନାରୀର ଏ ପ୍ରକାର ଉଶୃଙ୍ଖଳା ଜୀବନଯାପନ, ନାରୀ ପ୍ରତି ନାରୀର ଇର୍ଷା, ବିଦ୍ୱେଷ ଭାବକୁ ଆଧାର କର 'Neo-Feminism'ର ସୃଷ୍ଟି । ଯେଉଁଠି ପ୍ରତିପାଦିତ ହୋଇଛି ନାରୀ ସ୍ୱୟଂ ନାରୀ ଜାତି ଏବଂ ସମାଜର ଶତ୍ରୁ । ନାରୀର ଜୀବନ ଚର୍ଯ୍ୟାରେ ଏହିପରି ରୂପ ବୈଚିତ୍ର୍ୟକୁ ଉପଲକ୍ଷ୍ୟ କରି ବା ସହିତ ନାରୀ ସଂପର୍କରେ 'Simone de Beauvoir' କହନ୍ତି, "one is not born, but rather becomes, a woman. No biological, psiychological or economic fate determines the figure that the human female presents in society; it is civilzation as a whole that produces .[୨]

ଉପର୍ଯ୍ୟୁକ୍ତ ଆଲୋଚିତ ଭିତ୍ତିଭୂମି ଉପରେ 'Feminist Movement' ପ୍ରତିଷ୍ଠିତ । 'Feminist Movement' ଶବ୍ଦକୁ ପ୍ରଥମେ ଫ୍ରାନ୍ସର ନାଟ୍ୟକାର Alexander



Source: Author, Digitized by PPRACHIN, SOA

dumas, ୧୮୬୨ ମସିହାରେ ଗୋଟିଏ ପ୍ରାଚୀର ପତ 'L' ରେ 'Homme Femme' ନାମରେ ପ୍ରୟୋଗ କରିଥିଲେ । ଯାହା ତତ୍କାଳୀନ ନାରୀ ଅଧିକାର ଜନିତ ଆନ୍ଦୋଳନକୁ ସୂଚୀତ କରିଥିଲା । ତେଣୁ ଏହି ଆନ୍ଦୋଳନ ନାରୀ ଜୀବନ ସଂକ୍ରାନ୍ତ ଏକ ବୃହତ୍ତ ପରିମଣ୍ଡଳ ଉପରେ ପର୍ଯ୍ୟବସିତ ।

ସାମାଜିକ ସ୍ଥିତି ଓ ମଣିଷର ମାନସିକ ସ୍ଥିତିର କ୍ରମବିବର୍ତ୍ତନ ପ୍ରକ୍ରିୟା ହେତୁ ଜୀବନଧାରାର ମୂଲ୍ୟବୋଧ ଯେପରି ପରିବର୍ତ୍ତିତ ହେଉଚି, ସେହିପରି କ୍ରମଶଃ ନୂତନ ଚିନ୍ତା ଚେତନାର ଘନୀଭୂତ ବିକାଶ ଆମ ସମାଜରେ ପରିଲକ୍ଷଣୀୟ । ସମାଜରେ ସାଧାରଣ ନ୍ୟାୟ ପାଇଁ ପ୍ରାଥମିକ ଅବସ୍ଥାରେ ନାରୀ ଯେପରି ଭାବେ ସ୍ୱର ଉଠାଇଥିଲା ସେହି ସ୍ୱର ଏବେ କେବଳ ସାମାଜିକ ନ୍ୟାୟ ସ୍ତରରେ ନ ରହି ସାମାଜିକ ପ୍ରକ୍ରିୟା ଏବଂ ବ୍ୟକ୍ତିଜୀବନାନୁଭୂତିର ବହୁ ଦିଗଦିଗନ୍ତକୁ ସ୍ପର୍ଶ କରିଛି । ଏହି ଆନ୍ଦୋଳନର ମୁଖ୍ୟ ପ୍ରବକ୍ତା ଭାବେ Marry Wollstone craft (1759-1797), Virginia woolf (1882-1941), Simone de Beauvior (1908-1986) Sheila Jeffreys (1952) ଆଦିଙ୍କୁ ଗ୍ରହଣ କରାଯାଏ । ଦୀର୍ଘ ଦିନର ପ୍ରସ୍ତୁତି ପଥରେ ଏହି 'Feminist movement'କୁ ସଫଳ କରିବା ପାଇଁ ନିଜକୁ ଉତ୍ସର୍ଗୀକୃତ କରିଥିବା 'Feminist' ମାନଙ୍କ ଆଦର୍ଶ ଏବଂ ଦର୍ଶନ ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳିତ ନୁହେଁ । ନିଜର ନିଜର ଆଦର୍ଶ ଏବଂ ଦର୍ଶନକୁ ଆଧାର କରି ସାହିତ୍ୟ, କଳା, ସମାଜତାନ୍ତ୍ରିକ ବିଶ୍ଳେଷଣ, ମୂଳକ ପୁସ୍ତକ ରଚନା କରିବା ସହ ସମାଜରେ ସେଗୁଡ଼ିକର ପ୍ରତ୍ୟକ୍ଷ ପ୍ରୟୋଗ କରିଛନ୍ତି । ସେଥିପାଇଁ 'Feminist'ର ପ୍ରୟୋଗବିଧିରେ ଦେଖାଦେଇଛି ବହୁବିଧ ରୂପ । ଏହି ପରିପ୍ରେକ୍ଷୀରେ ଅଦ୍ୟାବଧି ଆବିଷ୍କୃତ 'Feminis movement' ସମାଜର କେଉଁ କେଉଁ ସ୍ତରକୁ ସ୍ପର୍ଶ କରିଛି ଓ ତା'ର ସ୍ୱରୂପ କିପରି ପ୍ରକଟିତ ହୋଇଛି ତାହା ଆଲୋଚନା ସାପେକ୍ଷ । ସଂପ୍ରତି 'Feminism'କୁ ସାତ ଭାଗରେ ବିଭକ୍ତ କରାଯାଇଛି ଯଥା – (1) Liberal Feminism (2) Marixist Feminism (3) Radical Feminism (4) Psychoanalytic (5) Socialist Feminism (6) Existentialist Feminism (7) Post modern Feminism.

ନାରୀ ସ୍ୱଭାବତଃ ଉଭୟ ଶାରୀରିକ କ୍ଷମତା ଏବଂ ବୌଦ୍ଧିକତା ଦୃଷ୍ଟିରୁ ପୁରୁଷଠାରୁ ନ୍ୟୁନତର । ଏହି ଧାରଣା ବଶବର୍ତ୍ତୀ ପୁରୁଷ ସମାଜ ସେମାନଙ୍କୁ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ, ନ୍ୟାୟାଳୟ, ବ୍ୟବସାୟ କ୍ଷେତ୍ରରେ ଯୋଗଦେବାରୁ ବଞ୍ଚିତ କରିଛି । ଏହି ପରମ୍ପରାସିଦ୍ଧ ସମାଜରେ ନାରୀକୁ ପୁରୁଷର ସମକକ୍ଷ ଏବଂ ସମାନ ଅଧିକାର ଦେବାପାଇଁ 'Liberal Feminist' ମାନେ ଉଦ୍ୟମ କରିଛନ୍ତି । କିନ୍ତୁ 'Marxist Feminist' ଗଣ ଚିନ୍ତା କରିଛନ୍ତି ଯେ, ଯେପର୍ଯ୍ୟନ୍ତ ଶ୍ରେଣୀ ସମାଜ (Class Society) ଥିବ ସେ ପର୍ଯ୍ୟନ୍ତ ନାରୀ ଓ



Source: Author, Digitized by PPRACHIN, SOA

ପୁରୁଷ ମଧ୍ୟରେ କୌଣସି ସମାନତା ଅଣାଯାଇପାରିବ ନାହିଁ । ଏହି 'Class Society' ସୃଷ୍ଟି ହେବାର କେନ୍ଦ୍ରରେ ରହିଛ 'Private Property' । ଯାହାର ପ୍ରକୃତ ଅଧିକାରୀ ହେଉଛନ୍ତି ପୁରୁଷ ଗୋଷ୍ଠୀ, ଯେଉଁମାନଙ୍କୁ ମଧ୍ୟ 'Capitalist' ବୋଲି କୁହାଯାଏ । ଏମାନଙ୍କ ଦ୍ୱାରା ସମାଜର ଆର୍ଥନୀତିକ ମାନଦଣ୍ଡ ନିୟନ୍ତ୍ରଣ । ତେଣୁ 'Capitalist system' ଟି 'Socialist system'ରେ ପରିଣତ ହେଲେ ଅର୍ଥାତ୍ ସମାଜରେ ଉଭୟ ନାରୀ ସମାନ ଉପାର୍ଜନକ୍ଷମ ହୋଇପାରିଲେ ନାରୀ ନିଜର ଅଧିକାର ଫେରିପାଇବ ବୋଲ 'Marxist' ଏବଂ 'Socialist Feminist' ମାନେ ପରିକଳ୍ପନା କରିଛନ୍ତି । 'Radical Feminist' ଗଣ 'Liberal' କିମ୍ବା 'Marxist Feminism'ର କୌଣସି ଦର୍ଶନକୁ ଗ୍ରହଣ କରନ୍ତି ନାହିଁ । ସେମାନଙ୍କ ମତରେ ସମାଜରେ ନାରୀ ଏବଂ ପୁରୁଷ ମଧ୍ୟରେ ଯେଉଁ ଅସମାନତା ସୃଷ୍ଟି ହୋଇଛି, ତା'ମୂଳର ରହିଛି 'patriarchal system' ଯେଉଁ 'System' ନାରୀ ଉପରେ ନିଜର ଆଧିପତ୍ୟ ବିସ୍ତାର କରିବା ସହ ସେମାନଙ୍କ ସ୍ୱାଧୀନତାକୁ ଅପହୃତ କରିଛି । ଏହି ଧରଣର ସମାଜକୁ ସଂସ୍କାର ଦ୍ୱାରା ନ ବଦଳାଇ ସଂପୂର୍ଣ୍ଣ ରୂପେ ମୂଳୋତ୍ପାଟନ କରିବା ଉଚିତ । ଏତଦ୍ ବ୍ୟତୀତ ପୁରୁଷ କୈନ୍ଦ୍ରିକ Political strcuctureରେ ଉଚ୍ଛେଦ କରିବା ସହ ସମସ୍ତ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ (ପରିବାର, ମନ୍ଦିର, ମସ୍‌ଜିଦ, ଗୀର୍ଜା ଇତ୍ୟାଦି) ଯାହା ନାରୀକୁ ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳିତ କରିବାକୁ ନିର୍ଦ୍ଦେଶ ଦିଏ, ସେଗୁଡ଼ିକୁ ବନ୍ଦ କରିବା ଦରକାର । 'Reproductive system'କୁ ସଂପୂର୍ଣ୍ଣ ନାରୀ ଉପରେ ଛାଡ଼ିଦେବା ଉଚିତ । କେତେକ 'Radical feminist''Androgynous society' ବିରୁଦ୍ଧରେ ମନ୍ତବ୍ୟ ଦେଇଛନ୍ତି । ସେମାନଙ୍କୁ ଦୃଷ୍ଟିରେ ଏହି ଧରଣର ସମାଜ ମଧ୍ୟ ପୁରୁଷକୈନ୍ଦ୍ରିକ । କାରଣ ଏଥିରେ ମଧ୍ୟ ନାରୀର ପ୍ରକୃତ 'Feminity' ଗୁଣକୁ ପୁରୁଷ ମାନ୍ୟତା ଦେଇନଥାଏ ।

ଯୌନ ପ୍ରବୃତ୍ତିକୁ ମୁଖ୍ୟ ଉପଜୀବ୍ୟ ଭାବେ Psychoanalytic Feminism ଗ୍ରହଣ କରିଥାଏ । ତେଣୁ ଏଠାରେ Freudଙ୍କ 'Preoedipal stage' ଏବଂ 'Oedipus complex'କୁ ଗୁରୁତ୍ୱ ଦିଆଯିବା ସହିତ ନାରୀର ମନସ୍ତତ୍ତ୍ୱ ଏବଂ ସମାଜରେ ତା'ର ପ୍ରଭାବ ଓ ପ୍ରତିକ୍ରିୟା ସଂପର୍କରେ ଆଲୋକପାତ କରିବା ନାରୀର ମନସ୍ତତ୍ତ୍ୱ ଏବଂ ସମାଜରେ ତା'ର ପ୍ରଭାବ ଓ ପ୍ରତିକ୍ରିୟା ସଂପର୍କରେ ଆଲୋକପାତ କରାଯାଇଛି । 'Pre-Oedipal stage'ରେ ଉଭୟ ମା' ଏବଂ ବାଳକର ସଂପର୍କ ଅତି ନିବିଡ଼ । ଏହି ସ୍ଥିତିରେ ବାଳକ ତା'ର ମା'କୁ "First love Object" ଭାବେ ଗ୍ରହଣ କରିଥାଏ । ତେଣୁ ମା'ର ଉପସ୍ଥିତି ବାଳକକୁ ଯେତିକି ଆନନ୍ଦ ଦିଏ, ତା'ର ଅନୁପସ୍ଥିତି ଯେତିକି ବିଶାଦ ମଧ୍ୟ ଆଣିଦିଏ । କିନ୍ତୁ 'Pre-Oedipal stage' ଅତିକ୍ରମ କରିସାରିଲା ପରେ ବାଳକର 'id' ବା 'desire' ସଂପୂର୍ଣ୍ଣ ଭାବେ 'Superego' ବା 'Collective social



Source: Author, Digitized by PPRACHIN, SOA

conscience'କୁ ଚାଲିଯାଏ । ଯେଉଁଠି ସେ ସଂସ୍କୃତି ସହ ଏକାତ୍ମ ହୋଇଯାଏ । ଶିଶୁଟି କ୍ରମଶଃ ମା'ର କର୍ତ୍ତୃତ୍ୱରୁ ବାହାରି ବାପାର ଅଧିନକୁ ଚାଲିଆସେ । ଏବଂ ତଥାକଥିତ ପାରଂପାରିକ ସଂସ୍କୃତିରେ ନିମ୍ନଜିତ ବାପାର ଆଦର୍ଶକୁ ଗ୍ରହଣ କରି ନାରୀ ନିର୍ଯ୍ୟାତନା ତଥା ଅସହାୟତାକୁ ସ୍ୱାଗତ କରିଥାଏ । କିନ୍ତୁ 'Oedipal stage'ରେ ପହଞ୍ଚିପାରୁନଥିବାରୁ ସେ ସଂପୂର୍ଣ୍ଣ ରୂପେ ସଂସ୍କୃତି ସହ ଏକାତ୍ମ ହୋଇପାରେ ନାହିଁ । ଫଳରେ ସେ ପୁରୁଷର ଆଧିପତ୍ୟକୁ ସ୍ୱୀକାର କରିବାକୁ ବାଧ ହୁଏ । Dorothy Dinnersteinଙ୍କ ମତରେ ନାରୀ ନିଜର ଶକ୍ତି ସମ୍ପର୍କରେ ଅବଗତ ହୋଇପାରେ ନାହିଁ । ମା'ର 'First love object' ହୋଇ ରହିଯାଏ ଏବଂ ସଂସ୍କୃତିର ପରିଧି ଭିତରେ ବନ୍ଦୀ ହୁଏ । ସେ ଶାସନ କରିପାରେନି ପରନ୍ତୁ ଶାସିତ ହୁଏ । କେତେକ Psychoanalytic Feminist ଏହ 'oedopal complex'କୁ ସ୍ୱୀକାର କରନ୍ତି ନାହିଁ । କାରଣ ସେମାନଙ୍କ ଦୃଷ୍ଟିରେ ଏହା ମଧ ପୁରୁଷ ଦ୍ୱାରା ସୃଷ୍ଟି । ସେମାନଙ୍କ ମତରେ 'oedipal complex' ହେଉଛି ସଂସ୍କୃତି ସହ ସମସ୍ତ ମଣିଷର ସଂପୂର୍ଣ୍ଣ ସହାବସ୍ଥାନ । ଏଥିରେ କୌଣସି ନାରୀ ଏବଂ ପୁରୁଷର ପ୍ରଭେଦ ନାହିଁ ।

ନାରୀର ଏପରି ସ୍ଥିତି ସମ୍ପର୍କରେ ସଚେତନତା ସୃଷ୍ଟି ପଛରେ ରହିଛି Simone de Beauvoirଙ୍କ 'The second sex' ଯାହା ସାର୍ତ୍ରେଙ୍କ ଦର୍ଶନ ଉପରେ ପର୍ଯ୍ୟବସିତ । ନାରୀକୁ 'Otherness' ବା ଅନ୍ୟ ଆଖ୍ୟା ଦେଇ ପୁରୁଷ ତା'କୁ ଶୋଷଣ କରେ । ସେଥିପାଇଁ ନାରୀକୁ ଗୋଟିଏ ସଂକୀର୍ଣ୍ଣ ପରିବେଶ ଗତି କରିବାକୁ ପଡୁଛି । କେତେକ ଉପମା, ଅଳଙ୍କାର ଏବଂ ସୂତ୍ର ମଧରେ ତା'ର ଆତ୍ମ ପରିଚୟକୁ ଉପସ୍ଥାପନ କରାଯାଉଛି । Simone de beauvoirଙ୍କ ମତରେ, ନାରୀ ଯଦି ନିଜର ଅହଂକୁ ପ୍ରତିଷ୍ଠା କରିବାକୁ ଚାହେଁ ତେବେ ତାକୁ ନିଜ ସଂପର୍କରେ ଥିବା ସମସ୍ତ ସତ୍ତାକୁ ଅତିକ୍ରମ କରିବାକୁ ହେବ । Liberal Feminismର ସମାଜରେ ନାରୀର ଉପଯୁକ୍ତ ଶିକ୍ଷା ଏବଂ ସମସ୍ତ ସାଂସ୍କୃତିକ, ରାଜନୀତିକ, ସାମାଜିକ ଅନୁଷ୍ଠାନ ଗୁଡିକରେ ନାରୀର ପୁରୁଷ ପରି ସମାନ ପ୍ରବେଶାଧିକାର, Radical Feminismର ପୁରୁଷ ପ୍ରଧାନ ସମାଜ ବିରୁଦ୍ଧରେ ଯୁଦ୍ଧ ଘୋଷଣା, Existentialist Feminismର ନାରୀ ନିଜର ପ୍ରଜ୍ଞା ଦ୍ୱାରା ପୁରୁଷର ସମସ୍ତ ଗୁଣକୁ ଆୟତ କରିବାର ଅଭିଳାଷ ପ୍ରଭୃତିର 'Socialist Feminism' ସମ୍ମିଶ୍ରଣରେ ପ୍ରତିଷ୍ଠିତ । ଲିଙ୍ଗଭେଦ ବାଛ ବିଚାର ପରିଧିରୁ ମୁକ୍ତ ହୋଇ ନିଜକୁ ମଣିଷ ରୂପେ ସମାଜରେ ପ୍ରତିଷ୍ଠା କରିବା 'Socialist Feminism'ର ମୂଳ ଏବଂ ମୁଖ୍ୟ ଦର୍ଶନ ।

'Postmodern Feminism'ର ପ୍ରବକ୍ତାଗଣ ଫ୍ରାନ୍‌ସର ଅଧିବାସୀ ହୋଇଥିବାରୁ ଏହାକୁ 'French Feminism' ନାମରେ ନାମିତ କରାଯାଉଛି । ଫ୍ରାନ୍‌ସର Helene cixious, Luce Irigary, Julia Kristeva ପ୍ରଭୃତି "ଗଣ" ସଂପର୍କିତ



Source: Author, Digitized by PPRACHIN, SOA

ବିଚାର ବିଶ୍ଳେଷଣ ଏବଂ ଉପସ୍ଥାପନ କଲାବେଳେ ବିଶେଷ ଭାବେ Jacques Derridaଙ୍କ Deconstruction Theory' Simone de Beauvoirଙ୍କ "The Second Sex", ଏବଂ 'Jacques Lacanଙ୍କ 'Symbolic order' ତତ୍ତ୍ୱଗୁଡିକ ଉପରେ ଗୁରୁତ୍ୱ ଦେବା ସହ କେତେକ ତ୍ରୁଟିକୁ ମଧ୍ୟ ସଂଶୋଧନ କରିବା ପାଇଁ ପ୍ରୟାସ କରିଛନ୍ତି । ଏତଦ୍‌ବ୍ୟତୀତ ଅଦ୍ୟାବଧି ଆବିଷ୍କୃତ ସମସ୍ତ 'Feminism'ର ତତ୍ତ୍ୱକୁ ଗୋଟିଏ ଭିନ୍ନ ରୂପ ଦେବାପାଇଁ ଚେଷ୍ଟା କରିଥିବାରୁ ଏହାକୁ 'Antithesis' ରୂପେ ଗ୍ରହଣ କରାଯାଇଛି । ଏମାନେ ବିଶେଷ ଭାବେ 'Biology' ସହ 'Language'ର ସଂପର୍କ ଓ ଏଥିରୁ ଉଦ୍ଭୁତ ସାମାଜିକ ପ୍ରକ୍ରିୟାକୁ ଗୋଟିଏ ଜଟିଳ ତତ୍ତ୍ୱ ମାଧ୍ୟମରେ ପ୍ରକାଶ କରିଛନ୍ତି । ତେଣୁ ସମାଲୋଚକମାନେ ଏହାକୁ 'Feminism for academicians' ବୋଲି କହିଛନ୍ତି । କାରଣ ଏମାନଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ ଗୁଡିକ ଯଥା Phallocentrism Logocentricism, "Semiotic-symbolic" ଇତ୍ୟାଦି ମଧ୍ୟରେ ଅର୍ଥଗତ ପାର୍ଥକ୍ୟ ନିର୍ଦ୍ଧାରଣ କରିବା କଷ୍ଟକର । ଯଦିଚ Cixaus ଏବଂ Irigary ଗୋଟିଏ 'Feminine Language' ସୃଷ୍ଟି କରିବା ପାଇଁ ଚେଷ୍ଟା କରିଛନ୍ତି ତଥାପ 'Fascistic Patriarchy' ଏବଂ 'Fascistic Matriarchty' ସମାଜ ଓ ଭାଷା ସୃଷ୍ଟି ହେବା ଭୟରେ Julia Kristeva ଏଥିରୁ ବିରତି ନେଇଛନ୍ତି ।

ଭିନ୍ନ ସମୟ ଭିନ୍ନ ଦୃଷ୍ଟି ପରି 'Feminist' ମାନେ ସମାଜ ଏବଂ ସମାଜର ସାଂସ୍କୃତିକଧାରା, ନାରୀ ନିର୍ଯ୍ୟାତନା କ୍ଷେତ୍ରରେ ପୁରୁଷର ପ୍ରମୁଖ ଭୂମିକା, ନାରୀ ପ୍ରତି ନାରୀର ଶତ୍ରୁତା ପ୍ରଭୃତିକୁ ନୃତାତ୍ତ୍ୱିକ, ସମାଜ ତାତ୍ତ୍ୱିକ, ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ନାରୀ ନିଜର ସ୍ଥିତି ସଂପର୍କରେ ସଚେତନ ହେବା, ନିଜକୁ ସଂପୂର୍ଣ୍ଣ ରୂପେ 'Biological' ଦୃଷ୍ଟି ଭଙ୍ଗୀରୁ ମୁକ୍ତି କରି ମଣିଷ ଭାବେ ସମାଜରେ ଉପସ୍ଥାପନ କରିବା ପାଇଁ ଏହି ଚିନ୍ତା ଚେତନା ଗୁଡ଼ିକର ଉଦ୍ଭବ ଓ ବିକାଶ ଘଟିଛି ଏବଂ ନାରୀମାନଙ୍କୁ ସୁଚିନ୍ତିତ ମାର୍ଗ ପ୍ରଦର୍ଶନ କରୁଛି ।

ପାଶ୍ଚାତ୍ୟ ଦେଶଗୁଡ଼ିକରେ ଯେପରି ଭାବେ ଏହି 'Feminist movement' ସଫଳ ହେଉଛି ପ୍ରାଚ୍ୟ ଦେଶମାନଙ୍କରେ ସେପରି ହୋଇନାହିଁ । ଏଠିକାର ନାରୀ ସେଇ ପ୍ରାଚୀନ ସାମାଜିକ ତଥା ସାଂସ୍କୃତିକ ସୀମାବଦ୍ଧତା ମଧ୍ୟରେ ଗତି କରୁଛି । ତା'ର ଚେତନାର ବିକାଶ ଘଟୁନଥିବାରୁ ନିଜ ସ୍ୱାଧୀନତା ସଂପର୍କରେ ଅଜ୍ଞ ହୋଇ ରହିଯାଉଛି । ବେଦ, ବେଦାନ୍ତ ତଥା ଧର୍ମଶାସ୍ତ୍ରର ଦୃଷ୍ଟାନ୍ତ ଦେଇ ପୁରୁଷ ସର୍ବଦା ନାରୀକୁ ଗୃହଦାସୀ ରୂପେ ବ୍ୟବହୃତ କରୁଛି । ମଣିଷ ହେବାପାଇଁ ଚିନ୍ତା କରିବା ଦୂରର କଥା ନିଜର ସ୍ୱାଧୀନତାକୁ ଉପଲବ୍ଧି କରିପାରୁନାହିଁ । ତେଣୁ ସେହି ସୀମାବଦ୍ଧତା ଓ ସଂକୀର୍ଣ୍ଣତା ମଧ୍ୟରେ ରହି ମୁକ୍ତିପାଇବାର ସ୍ୱପ୍ନ ଭାରତୀୟ ନାରୀମାନଙ୍କ ପାଇଁ ପ୍ରହେଳିକା ସଦୃଶ ମନେ ହେଉଛି ।



Source: Author, Digitized by PPRACHIN, SOA

ପୁରୁଷ ଯେପରି ଭାବେ ଜ୍ଞାନ, ବୀର, ସୌର୍ଯ୍ୟ ଆଦି ଗୁଣକୁ ଅଧିକାର କରି ଗର୍ବ କରୁଛି ଏବଂ ନାରୀ ନିର୍ଯ୍ୟାତନାର ଭୂମିକା ଗ୍ରହଣ କରୁଛି ସେହିପରି ଅନ୍ତର୍ବୋଧ ଗୁଣକୁ ନାରୀ ଅତି ସହଜ ସାବଲୀଳ ଭାବେ ଗ୍ରହଣ କରି ନିର୍ଯ୍ୟାତିତ ହେଉଛି । ଯେ ପର୍ଯ୍ୟନ୍ତ ଏହି ଅନ୍ତର୍ବୋଧ ଗୁଣକୁ ପୁରୁଷ ଗ୍ରହଣ କରିନାହିଁ, ସେ ପର୍ଯ୍ୟନ୍ତ ନାରୀର ମୁକ୍ତି ଅସମ୍ଭବ । ତେଣୁ ଉଭୟ ଜ୍ଞାନ ଏବଂ ଅନ୍ତର୍ବୋଧ ଗୁଣଗୁଡ଼ିକ ସଂପର୍କରେ ସଚେତନ ହେବା ପୁରୁଷ ଓ ନାରୀର ଏକମାତ୍ର ଅବଲମ୍ବନ, ଯାହା ଗୋଟିଏ ସୁସ୍ଥ ସମାଜ ଗଠନ ଦିଗରେ ସହାୟକ ହୋଇପାରିବ ।

---

(1) Feminist Thaught, Page - 5.

(2) Ethics : A Feminist Reader, Ed. by Elizabeth Frizer Jennifer Hornsby & Sabina Lovibond, Blackwell, U.S.A



Source: Author, Digitized by PPRACHIN, SOA

# ବାମାବାଦୀ ଆନ୍ଦୋଳନର ଇତିହାସ : ଏକ ଅଧ୍ୟୟନ

ପୁରୁଷ ଓ ନାରୀ ମଧ୍ୟରେ ଥିବା ସମ୍ପର୍କ ସାପେକ୍ଷ ପ୍ରତିଦ୍ୱନ୍ଦ୍ୱିତା ଏବଂ ସମସ୍ତ ଅନୁଷ୍ଠାନ, ନିୟମ ପରମ୍ପରା ଯାହା ନାରୀକୁ ପୁରୁଷ ସମାଜ ନିକଟରେ ତା'ର ବଶ୍ୟତା ସ୍ୱୀକାର କରିବା ପାଇଁ ବାଧ୍ୟ ରହିଛି, ଏ ସମସ୍ତ କ୍ଷେତ୍ରରେ ସଚେତନତା ସୃଷ୍ଟି କରିବା ବାମାବାଦୀ ଚିନ୍ତାର ମୂଳ ଲକ୍ଷ୍ୟ । 'Feminism' ଶବ୍ଦଟିକୁ ପ୍ରଥମେ ଫ୍ରାନସର ନାଟ୍ୟକାର Alexandar Dumas ୧୯୭୨ 'L' ନାମକ ଗୋଟିଏ ପ୍ରାଚୀନ ପତ୍ରରେ 'Homme Feme' ନାମରେ ପ୍ରୟୋଗ କରିଥିଲେ । ଯାହା ତତ୍‌କାଳୀନ ନାରୀ ଅଧିକାର ଜନିତ ଆନ୍ଦୋଳନକୁ ସୂଚିତ କରେ । ବାମାବାଦୀ ଆନ୍ଦୋଳନ ବିଧିବଦ୍ଧ ରୂପ ନେଲା ପୂର୍ବରୁ ଶତାବ୍ଦୀ ଶତାବ୍ଦୀ ଧରି ସାହିତ୍ୟ ଏବଂ ପ୍ରଶାସନିକ କ୍ଷେତ୍ରରେ ନାରୀ ନିଜର ଦକ୍ଷତାକୁ ପତିପାଦିତ କରି ଆସିଛି । ଦୃଷ୍ଟାନ୍ତ ସ୍ୱରୂପ – ଲେଡ଼ି ମୁରାସାକି ଶିକିବୁ (୯୭୮-୧୦୨୬) ଜାପାନର ବିଶିଷ୍ଟ ଲେଖିକା ଯିଏ 'The Tale of Genji' ନାମକ ଏକ ପୂର୍ଣ୍ଣାଙ୍ଗ ତଥା ଦୀର୍ଘ ଉପନ୍ୟାସ ଲେଖିଥିଲେ । ସାଫୋ ପ୍ରାଚୀନ ଗ୍ରୀକ୍‌ର କବି, ଏମ୍ପ୍ରେସ୍ କ୍ୟାଥେରିନ୍ (୧୯୨୦-୯୬) ଜର୍ମାନର ରାଣୀ ଯିଏ ଋଷିଆକୁ ଦୀର୍ଘ ୩୫ ବର୍ଷ ଧରି ଶାସନ କରିଥିଲେ, ଜୋନ୍ ଅଫ୍ ଆର୍କ (୧୩୧୨-୩୧) ଫ୍ରାନସର ଜଣେ ଯୋଦ୍ଧା, ଯାହାଙ୍କୁ ମାତ୍ର ୧୯ ବର୍ଷ ବୟସରେ ମୃତ୍ୟୁ ଦଣ୍ଡ ଦିଆଯାଇଥିଲା । ଏତଦ୍ ବ୍ୟତୀତ ଭାରତର ଲକ୍ଷ୍ମୀବାଈଙ୍କ ବୀରତ୍ୱ ତଥା କଳିଙ୍ଗର ଓଡ଼ିଆ ରମଣୀ ଦଣ୍ଡୀଙ୍କ ପ୍ରଶାସନିକ ଦକ୍ଷତା କାହାରି ନିକଟରେ ଅବିଦିତ ନୁହେଁ ।

ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମଗ୍ର ଇଉରୋପ ସାମନ୍ତତାନ୍ତ୍ରିକ ଥିଲା । ଯେଉଁଠାରେ ଉଭୟ ନାରୀ ଏବଂ ପୁରୁଷ ସମାନ କାର୍ଯ୍ୟ କରି ସମାନ ଅର୍ଥ ଉପାର୍ଜନ କରିବାର ସୁଯୋଗ ପାଉଥିଲେ; କିନ୍ତୁ ଶିଳ୍ପାୟନର ପ୍ରସାର ହେତୁ ଶ୍ରମିକ ତଥା ସହରୀ ମଧ୍ୟବିତ୍ତ ଶ୍ରେଣୀ ଆଦି ସୃଷ୍ଟି ହୋଇଥିଲା । ଗୃହ କାର୍ଯ୍ୟଠାରୁ ପୁରୁଷ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଶିଳ୍ପ ଜଗତରେ ପ୍ରବେଶ କଲା । ପୁରୁଷ ହୋଇ ପଡ଼ିଲା ଅନ୍ନଦାତା ଏବଂ ନାରୀ ହେଲା ନିର୍ଭରଶୀଳା ଗୃହଦାସୀ । ଏହି ଶତାବ୍ଦୀର ମଧ୍ୟ ଭାଗ ବେଳକୁ ପୁରୁଷର ଗ୍ରାହ୍ୟସ୍ଥ ଜୀବନରେ ଯାଦୃଚ୍ଛିକ ଶାସନ କ୍ଷମତା ବିରୁଦ୍ଧରେ, ନାରୀ ପ୍ରଥମ କର ସ୍ୱର ଉଠାଇ ଥିଲା ।



Source: Author, Digitized by PPRACHIN, SOA

୧୭୯୨ ମସିହାରେ ଇଂଲଣ୍ଡର ବିଶିଷ୍ଟ ନାରୀ ନେତ୍ରୀ ମ୍ୟାରି ଉଲଷ୍ଟନ୍ କ୍ରାଫ୍ଟ (୧୭୫୯-୯୭)ଙ୍କ ନାରୀ ଜାଗରଣ ସମ୍ପର୍କିତ ପ୍ରଥମ ପୁସ୍ତକ "A vindication of the Rights of Woman" ପ୍ରକାଶିତ ହୋଇଥିଲା । ଏଥିରେ ସେ ନାରୀର ଶିକ୍ଷା, ଆର୍ଥିକ ସ୍ୱଚ୍ଛଳତା, ରାଜନୀତି ଓ ସାମାଜିକ ସ୍ତରରେ ଥିବା ବାଧାଗୁଡିକୁ ଏଡ଼ାଇବା ପାଇଁ ଉଲ୍ଲେଖ କରିଛନ୍ତି । ଏହି ସମୟରେ ଫରାସୀ ରାଷ୍ଟ୍ର ବିପ୍ଳବ (୧୭୮୯)ର ସୂତ୍ରପାତ ହୁଏ । ସମାଜର ପ୍ରତ୍ୟେକ ଶ୍ରେଣୀର ନାରୀ, କେବଳ ଖାଦ୍ୟାଭାବ ବିରୁଦ୍ଧରେ ନୁହେଁ, ଦେଶର ଶାସନ ପ୍ରଣାଳୀରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ପାଇଁ ସଂଗ୍ରାମ କରିଥିଲେ । ଗୋଟିଏ ପକ୍ଷରେ 'ଜ୍ୟାକୋବିନ୍' ନାରୀମାନେ ମୋନାର୍କି ନାରୀମାନେ କନଷ୍ଟିଚ୍ୟୁସନାଲ୍ ମୋନାର୍କି ସ୍ଥାପନ କରିବା ଦିଗରେ ସଂଗ୍ରାମ କରିଥିଲେ । ଏମାନଙ୍କର ନେତୃତ୍ୱ ନେଇ ଥିଲେ ଅଲମ୍ପିଡ଼ ଗଜ୍ (୧୭୦୮-୯୩) ଏବଂ ଦେରୋଇନ୍ ଡି ମେରୀକୋର୍ଟ (୧୭୬୬-୧୮୧୬) । ଏମାନଙ୍କର ମିଳିତ ସଂଗ୍ରାମ ହେତୁ 'Pro-woman divorce law', କ୍ରୀତଦାସ ବ୍ୟବସାୟର ଉଚ୍ଛେଦ, ବେକାରୀ ନାରୀମାନଙ୍କର ଅର୍ଥ ଉପାର୍ଜନ ପାଇଁ 'National Theatre For Woman'ର ଗଠନ ଆଦି ବହୁ ନାରୀ ମଙ୍ଗଳ କାର୍ଯ୍ୟମାନ ସମ୍ପାଦିତ ହୋଇଥିଲା ।

୧୮୦୭ ମସିହାରେ ଆନ୍ତର୍ଜାତିକ ବାଣିଜ୍ୟ କ୍ଷେତ୍ରରେ କ୍ରୀତଦାସ ପ୍ରଥା ରଦ୍ଦ ହୋଇଥିଲେ ମଧ୍ୟ ଆମେରିକାର ନିଗ୍ରୋମାନଙ୍କୁ କ୍ରୀତଦାସ ଭାବେ ଜୀବନଯାପନ କରିବାକୁ ପଡୁଥିଲା । ଏହାର ପ୍ରତିରୋଧରେ ପ୍ରଥମେ ନିଗ୍ରୋ ଜାତିର ନାରୀମାନେ ଆନ୍ଦୋଳନ ଆରମ୍ଭ କରିଥିଲେ । ଫିଲାଡେଲଫିଆର ଜଣେ କୃଷ୍ଣ ବର୍ଣ୍ଣା ଶିକ୍ଷକ ସାରହା ସ୍ୟାପ୍ ଡଗଲାସ୍‌ଙ୍କ ନେତୃତ୍ୱ ଏବଂ ଲାକେସିଆ ମଟ୍, ହ୍ୟାରିଏଟ୍ ପରଭିସ୍ ପ୍ରଭୃତିଙ୍କ ସହାୟତାରେ "Female Antislavery Society" ଗଠିତ ହୋଇଥିଲା ଯେଉଁଥିରୁ ମଧ୍ୟ ଆମେରିକାର ଶ୍ୱେତାଙ୍ଗ ମହିଳାମାନେ ନିଜ ଅଧିକାର ସମ୍ପର୍କରେ ସଚେତନ ହୋଇଥିଲେ ।

୧୮୪୮ ମସିହା ଜୁଲାଇ ୧୯ ତାରିଖରେ ହୋଇଥିବା 'Seneca Falls' ଅଧିବେଶନରେ ଏଲିଜାବେଥ୍ କ୍ୟାଡି, ଲକ୍ରେସିଆ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ନାରୀମାନଙ୍କ ସର୍ବବିଧ ଉନ୍ନତି ଏବଂ ସମାଜରେ ନାରୀମାନଙ୍କ ପ୍ରତି ରହିଥିବା ଦୃଷ୍ଟିଭଙ୍ଗୀର ଆମୂଳଚୂଳ ପରିବର୍ତ୍ତନ ପାଇଁ ଏମାନଙ୍କ ପ୍ରଚେଷ୍ଟା ଅନସ୍ୱୀକାର୍ଯ୍ୟ । ଗୃହଯୁଦ୍ଧ (୧୮୬୦-୬୫) ପରେ ୧୮୮୮ରେ ଲୁସିଷ୍ଟୋନ୍ ଆଣ୍ଟୋଇନ୍ନେଟ୍ ବ୍ରାଉନ ପ୍ରଭୃତି ନେତ୍ରୀମାନଙ୍କ ମିଳିତ ଉଦ୍ୟମରେ "United National American Women's suffrage Association" ଗଠିତ ହୋଇଥିଲା । ଯହାଦ୍ୱାରା ନିଗ୍ରୋମାନଙ୍କ ଭୋଟ ଦେବାର ଅଧିକାର ପ୍ରସ୍ତାବଟି କାର୍ଯ୍ୟକାରୀ ହୋଇଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ଅର୍ଥାତ୍ ଶିଳ୍ପ ବିପ୍ଳବ ସମୟରେ ଇଂଲଣ୍ଡରେ ସୃଷ୍ଟି ହୋଇଥିଲା ନାରୀ ଶ୍ରମିକ ସଙ୍ଗଠନ । ଏହି ସମୟ ପୂର୍ବବର୍ତ୍ତୀ ଅବସ୍ଥାରେ ଯେଉଁ ମହିଳାମାନେ



Source: Author, Digitized by PPRACHIN, SOA

ନିଜ ପିତା କିମ୍ବା ସ୍ୱାମୀମାନଙ୍କ ଉପାର୍ଜିତ ଅର୍ଥରେ ପ୍ରତିପାଳିତ ହେଉଥିଲେ ସେମାନେ ନିଜେ ଅର୍ଥ ଉପାର୍ଜନ କରି ନିଜର ସ୍ୱାଧୀନତାକୁ ଅଧିକ ଅନୁଭବ କରିଥିଲେ । କିନ୍ତୁ ମଧ୍ୟବିତ୍ତ ଭିକ୍ଟୋରିଆନ୍ ମହିଳାମାନଙ୍କ ପାଇଁ ନିଜ ଗୃହବ୍ୟତୀତ ପୃଥିବୀର କୌଣସି ସ୍ଥାନ ସୁରକ୍ଷିତ ନୁହେଁ ବୋଲି ବିବେଚିତ ହେଉଥିଲା ।୧୮୫୬ ମସିହାରେ ବାରବରା ସ୍ମିଥ୍ ଏବଂ ବେସୀରେନର ପାର୍କସ୍ "The Ladies of Langham place" ନାମକ ଗୋଟିଏ ମହିଳା ସମିତି ଗଠନ କରିଥିଲେ । ଯାହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ବିବାହିତା ମହିଳାମାନେ ସ୍ୱୟଂ ଉପାର୍ଜନକ୍ଷମ ହେବେ ଏବଂ ଉପାର୍ଜିତ ଅର୍ଥ ଉପରେ କେବଳ ସେମାନଙ୍କର ଅଧିକାର ରହିବ । ୧୮୫୮ ମସିହାରେ ଏହି ସଂସ୍ଥାଟି "English Woman Journal" ନାମକ ଗୋଟିଏ ମୁଖପତ୍ରରେ ନାରୀଶିକ୍ଷା, କର୍ମନିଯୁକ୍ତି, ନ୍ୟାୟଗତ ଏବଂ ଭୋଟ ଦେବାର କ୍ଷମତା ପ୍ରଭୃତି ନାରୀ-ଚେତନା-ସଂସ୍କାରମୂଳକ ଲେଖାଗୁଡିକ ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ଜନ୍ ଷ୍ଟୁଆର୍ଟ ମିଲ୍ ଏବଂ ହେଲେନ୍ ଟେଲରଙ୍କ ମିଳିତ୍ ଉଦ୍ୟମ ଏହି କାର୍ଯ୍ୟଟିକୁ ଅଧିକ ତ୍ୱରାନ୍ୱିତ କରିଥିଲା । ଇଂଲଣ୍ଡର ଏହି ବାମାବାଦୀ ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟରେ ରାଜନୀତି ତଥା ବିଭିନ୍ନ ଉପାର୍ଜନ କ୍ଷେତ୍ରରେ ନାରୀମାନଙ୍କର ସ୍ୱାଧୀନତାକୁ ଗୁରୁତ୍ୱ ଦିଆଯାଇଥିଲା । କିନ୍ତୁ ଏହାର ଦ୍ୱିତୀୟ ପର୍ଯ୍ୟାୟରେ ସାମାଜିକ ସ୍ତରରେ ଥିବା ବିଭିନ୍ନ ସ୍ଥିତ ସମ୍ପର୍କରେ ନାରୀର ସଚେତନତାବୋଧ ଦେଖା ଦେଇଛି । ଏହି ସମୟରେ ଯୋସେଫାଇନ୍, ବଟ୍ଲର, ପୁରୁଷ ତାନ୍ତ୍ରିକ ଭିକ୍ଟୋରିଆନ ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସହ ସମାଜର ସମସ୍ତ ସ୍ତରର ନାରୀମାନଙ୍କୁ ନିଜର ସ୍ୱାଧୀନତା ସମ୍ପର୍କରେ ଅବଗତ କରାଇଥିଲେ । ବିଶେଷକରି, ସମାଜରେ ଯୌନ ଭିତ୍ତିକ ସମାନତା ଆଣିବା ପାଇଁ ସେ ଜନସଚେତନତା ସୃଷ୍ଟି କରିଥିଲେ ।

ଭାରତରେ ନାରୀ ଜାଗରଣ ପ୍ରଥମ ବିଦ୍ଧିବଦ୍ଧ ରୂପ ନେଇ ଥିଲା ଦୟାନନ୍ଦ ସରସ୍ୱତୀ, ରାମମୋହନ ରାୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ସମାଜ ସଂସ୍କାର ମୂଳକ ମନୋଭାବରୁ । ଏମାନଙ୍କ ପ୍ରଚେଷ୍ଟାରେ ୧୮୨୯ରେ ସତୀଦାହ ପ୍ରଥାର ବିଲୋପ ଏବଂ ୧୮୫୬ରେ ବିଧବା ବିବାହ ସମ୍ପର୍କିତ ଆଇନ ପ୍ରଣୟନ ହୋଇ ପାରିଥିଲା । ଲତାମଣୀ ଏହି ଆଇନକୁ ସମାଜର ପ୍ରତ୍ୟେକ ଶ୍ରେଣୀ ନିକଟରେ ପହଞ୍ଚାଇବା ପାଇଁ ପ୍ରଚେଷ୍ଟା କରିଥିଲେ । ଭାରତୀୟ ସମାଜରେ ଥିବା କେତେକ ମୁଷ୍ଟିମେୟ ସଂପ୍ରଦାୟଙ୍କ ରଢ଼ୀବାଦୀ ଚିନ୍ତାଧାରାକୁ ସମାଲୋଚନା କରି କହିଥିଲେ, "Debates on Women whether in the context of Sati, widow remarriage or zenanas, were not merely about women, but also instances in which the moral challenge of colonial rule was conforted and negotiated" [୧] ୧୯୧୮ରେ ଭାରତରେ ନାରୀନେତ୍ରୀମାନେ ଜାତୀୟ କଂଗ୍ରେସର ସାହଚର୍ଯ୍ୟ ଲାଭ କରିଥିଲେ । ପଣ୍ଡିତା ରମାବାଈ



Source: Author, Digitized by PPRACHIN, SOA

ହିନ୍ଦୁ ଧର୍ମରେ ନାରୀ ସ୍ୱାଧୀନତା ସମ୍ପର୍କିତ 'Women's Religous law' ନାମକ ପୁସ୍ତକ ଲେଖିବା ସହିତ 'ମହିଳା ସମାଜ' ନାମକ ଗୋଟିଏ ନାରୀ ସଙ୍ଗଠନ ଗଢ଼ିଥିଲେ । ଏହି ସମୟରେ ଓଡ଼ିଶାର କୁନ୍ତଳା କୁମାରୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ଭାରତୀ ତପୋବନ' ଅନୁଷ୍ଠାନଟି ନାରୀ ସମାଜର ସଂସ୍କାର ନିମନ୍ତେ କାର୍ଯ୍ୟ କରିଛି । ଆନିବେଶାନ୍ତ ମାର୍ଗାରେଟ୍ କଜିନ୍ସଙ୍କ ମିଳିତ ଉଦ୍ୟମରେ 'Indian Women's Universality Association' ନାମକ ଯେଉଁ ସଂସ୍ଥାଟି ମୁଣ୍ଡ ଟେକି ଥିଲା ତାହା ଭାରତୀୟ ନାରୀମାନଙ୍କୁ ଭୋଟ ଦେବାର ଅଧିକାର ପାଇଁ ସଂଗ୍ରାମ କରିଥିଲା । ମାର୍ଗାରେଟ୍ କଜିନସଙ୍କ ଉଦ୍ୟମରେ ୧୯୨୫ ମସିହାରେ ପ୍ରତିଷ୍ଠିତ ହୋଇଥିଲା ନିଖିଳ ଭାରତୀୟ ମହିଳା ସମ୍ମିଳନୀ (AIWC) ।

ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରପରି ଇଣ୍ଡୋନେସିଆର ରାଡେନ୍ ଆଜେନ୍ କାର୍ଟିନୀ, ପୁରୁଷ କ୍ଷେତ୍ରରେ ଏକାଧିକ ବିବାହ ପ୍ରଥା, ନାରୀ ଇଚ୍ଛା ବିରୁଦ୍ଧରେ ବିବାହ, ଔପନିବେଶିକ ଅତ୍ୟାଚାର, ନାରୀ ଶିକ୍ଷାଧିକାର ସମ୍ପର୍କରେ ସ୍ୱର ଉଠାଇ ଥିଲେ । ଜାପାନର କିଶିଦା ତୋଶିକୋ 'Se itoscha' ନାମକ ଗୋଟିଏ ନାରୀମଣ୍ଡଳ ଗଠନ କର 'Seito' (୧୯୧୧-୧୬) ଶୀର୍ଷକ ଏକ ନାରୀ ମୁଖପତ୍ର ପ୍ରକାଶ କରିଥିଲେ । ଯେଉଁଥିରେ ସେ ତତ୍କାଳୀନ ଜାପାନର ସଂସ୍କୃତି, ବିବାହ ଏବଂ ନାରୀ ଅଧିକାର ସଂପର୍କିତ ବିଷୟଗୁଡିକୁ ଗୁରୁତ୍ୱ ଦେବା ସହ ପ୍ରକାଶ କରୁଥିଲେ ।

ତାନ୍ ଯନିଙ୍ଗ୍ ଚୀନ୍‌ର ଜଣେ ବିଶିଷ୍ଟ ବାମାବାଦୀ । ସେ ୧୯୧୧ରେ 'Chinese suffragette society' ଗଠନ କରି ନାରୀ ସଚେତନତା ସୃଷ୍ଟି କରିଥିଲେ । ୧୯୦୯ରେ ଅଷ୍ଟ୍ରେଲିଆର 'The Austrilian Women's political association' ଗଠିତ ହୋଇଥିଲା । ଯାହାର ଲକ୍ଷ୍ୟ ଥିଲା ଲିଙ୍ଗଭେଦ ଦୃଷ୍ଟିରୁ ସମାଜରେ ସମସ୍ତ ନାଗରିକମାନଙ୍କୁ ସମାନ କର୍ମ ପାଇଁ ସମାନ ଅର୍ଥ ପ୍ରଦାନ ଏବଂ ରାଜନୈତିକ କ୍ଷେତ୍ରରେ ନାରୀମାନଙ୍କର ସକ୍ରିୟ ଅଂଶ ଗ୍ରହଣ ପାଇଁ ଅଧିକାର ଦେବା ।

ଆର୍ଥନୈତିକ ସୀମା ଭିତରେ ମହିଳାମାନେ ଦୈନିକ ପରିଶ୍ରମ ଦ୍ୱାରା ଯେପରି ନିଜର ରକ୍ଷଣାବେକ୍ଷଣ ପାଇଁ ସଂଗ୍ରାମ କରନ୍ତି, ସେହିପରି ଭାବେ ସେମାନେ ନିଜର ଅନ୍ୟାନ୍ୟ ସାମାଜିକ ମୂଲ୍ୟବୋଧ ପ୍ରତି ଧ୍ୟାନ ଦିଅନ୍ତି ନାହିଁ । କୌଣସି ଉପାୟରେ ନିଜର ଜୀବିକା ନିର୍ବାହ କରିବା ସେମାନଙ୍କର ଉଦ୍ଦେଶ୍ୟ । ଏହାଛଡ଼ା ସାମାଜିକ ଜୀବନର ନ୍ୟାୟବୋଧ ଦିଗଟି ପୁରୁଷ ଦ୍ୱାରା ସଂପୂର୍ଣ୍ଣ ନିୟନ୍ତିତ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ନ୍ୟାୟବୋଧଟି ରୋମାନ୍ ଏବଂ ଗ୍ରୀକ୍‌ର ଆଦର୍ଶବୋଧ ଦ୍ୱାରା ପରିଚାଳିତ । କାରଣ ଏହା ଜୁଇସ୍ ଏବଂ ଖ୍ରୀଷ୍ଟିଆନ୍ ଧର୍ମର ପାରମ୍ପରିକ ଧର୍ମ ବିଶ୍ୱାସ ଦ୍ୱାରା ନିୟନ୍ତିତ । ପୁରୁଷମାନେ ସାମାଜିକ ନ୍ୟାୟ ସମ୍ପର୍କରେ ଅବଗତ ହେଉଥିବା ସମୟରେ ନାରୀମାନେ ସନ୍ତାନ ଧାରଣ କରିବା ଏବଂ ଗୃହ କାର୍ଯ୍ୟରେ ନିୟୋଜିତ ହେଉଥିଲେ । ଏଥେନ୍ସରେ ନାରୀମାନେ ସର୍ବଦା



Source: Author, Digitized by PPRACHIN, SOA

ପୁରୁଷଠାରୁ ନ୍ୟୁନ ଭାବେ ବିବେଚିତ ହେଉଥିଲେ । ପ୍ଲାଟୋଙ୍କ ଯୁକ୍ତି ଥିଲା, ପ୍ରତ୍ୟେକ ନାରୀ ଉଚିତ୍ ଶିକ୍ଷା ଗ୍ରହଣ କରିବା ସହ ସମାଜର ଅଗ୍ରଗତି ନିମନ୍ତେ ପୁରୁଷ ପରି ଶାସକର ଆସନରେ ବସିବା ପାଇଁ ନିଜକୁ ଯୋଗ୍ୟକରିବା ଉଚିତ । କିନ୍ତୁ ଆରିଷ୍ଟୋଟଲ ବିଶ୍ୱାସ କରୁଥିଲେ ଯେ ନାରୀମାନେ ସହନଶୀଳତା ହେବା ସହ ସ୍ୱାମୀର ଅନୁଗତା ହେଲେ ସମାଜରେ ସୁସ୍ଥ ବାତାବରଣ ଅଣାଯାଇ ପାରିବ । ତେଣୁ ନାରୀ କେବଳ ଧର୍ମୀୟ କର୍ମ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ପାଇଁ ଗୃହର ସୀମା ମଧ୍ୟରୁ ବାହାରୁ ନଥିଲେ । ସାମାଜିକ ନ୍ୟାୟ ଦୃଷ୍ଟିରୁ ସେମାନଙ୍କର କୌଣସି ସମ୍ପତ୍ତି ଉପରେ ଅଧିକାର ନଥିଲା । ତେଣୁ ସେମାନେ ବିବାହ ବିଚ୍ଛେଦ ପରେ ସ୍ୱାମୀ ଗୃହରୁ ନିଜର ଭରଣ ପୋଷଣ ପାଇଁ କୌଣସି ଆର୍ଥିକ ସହାୟତା ପାଉ ନଥିଲେ । ସମୟାନୁକ୍ରମେ ଯୋଗ ଦେବା ସହ ବିଭିନ୍ନ ବ୍ୟବସାୟିକ କ୍ଷେତ୍ରରେ ନିଜର ସ୍ଥାନ ନିରୂପଣ କରୁଥିଲେ । ଗ୍ରୀସ୍ ଏବଂ ରୋମରେ ବେଶ୍ୟାବୃତ୍ତି ସାମାଜିକ ସ୍ୱୀକୃତି ଲାଭ କରିଥିଲା । ବିବାହିତ ମହିଳାମାନଙ୍କ ତୁଳନାରେ ସେମାନଙ୍କ ପାଇଁ ସାମାଜିକ ଆଇନ୍ କାନୁନ୍ ଖୁବ୍ ବେଶୀ ପ୍ରତିବନ୍ଧକ ନଥିଲା । ଏପରି ଦେଖା ଦେଇଛି ଯେ ଅନେକ ରୋମୀୟ ମହିଳା ବେଶ୍ୟାବୃତ୍ତି ପାଇଁ ଅଦାଲତରେ ସେମାନଙ୍କ ନାମ ଅନ୍ତର୍ଭୁକ୍ତ କରିଥିଲେ । ପାରମ୍ପରିକ ଜୁଇସ୍ ସମାଜରେ ନାରୀ କେବଳ 'ସ୍ତ୍ରୀ' ଏବଂ 'ମା' ରୂପେ ଗଣ୍ୟ ହେଉଥିଲେ । ନିଜର ସନ୍ତାନମାନଙ୍କୁ ଧର୍ମୀୟ ଶିକ୍ଷା ଦେବା, ବ୍ୟତୀତ ସମାଜର କୌଣସି ଧର୍ମୀୟ ଅନୁଷ୍ଠାନରେ ସେମାନଙ୍କର ପ୍ରବେଶ ନଥିଲା । ବହୁ ବିବାହ ଏବଂ ବିବାହ ବିଚ୍ଛେଦ ସମାଜରେ ସ୍ୱୀକୃତ ଥିଲା । ରଜସ୍ୱଳା ନାରୀକୁ ଅସ୍ପୃଶ୍ୟ ଓ ଘୃଣ୍ୟ ବୋଲି ମନେ କରାଯାଉଥିଲା । ଖ୍ରୀଷ୍ଟିଆନ୍ ଧର୍ମନୀତି ନାରୀମାନଙ୍କୁ ସମ୍ମାନ କରୁଥିଲେ ମଧ୍ୟ 'ଆଦାମ'ର ନୈତିକ ସ୍ଖଳନ ପାଇଁ ନାରୀ ସମାଜକୁ ଦୋଷୀ ବୋଲି ଦାୟୀ କରୁଥିଲା । ଟରସସ୍‌ର ସେଣ୍ଟ୍‌ପଲ ଧର୍ମ କ୍ଷେତ୍ରରେ ପ୍ରତନିଧି ପାଇଁ ନାରୀମାନଙ୍କୁ ଗ୍ରହଣ କରୁଥିଲେ ମଧ୍ୟ ସେମାନେ କେବଳ ନିଜର ସ୍ୱାମୀଙ୍କୁ ସାହାଯ୍ୟ କରି ପାରିବେ କିନ୍ତୁ ଶିକ୍ଷା ଓ ଦିକ୍ଷା ଦେଇ ପାରିବେ ନାହିଁ ବୋଲି କହୁଥିଲେ । ନାରୀମାନେ ଧର୍ମ ନୀତିରେ ପୁରୁଷ ସହିତ ସମକକ୍ଷ କିନ୍ତୁ ବାସ୍ତବ କ୍ଷେତ୍ରରେ ସେମାନଙ୍କୁ ସମସ୍ତ ପାପର ଅଧିକାରୀ ବୋଲି ବିବେଚନା କରାଯାଉଥିଲା । ତେଣୁ ପାପରୁ ରକ୍ଷା ପାଇବାକୁ ହେଲେ ନାରୀ ସହିତ କୌଣସି ସମ୍ପର୍କ ନ ରଖିବାକୁ ପ୍ରବର୍ତ୍ତାଉଥିଲେ । ଏହି ଧାରଣାଟି କ୍ରମଶଃ ମଧ୍ୟବର୍ତ୍ତୀ ସମୟ ଆଡକୁ ଦୂରୀଭୂତ ହେଲା । ସେମାନେ ନିଜ ଧର୍ମର ବିଭିନ୍ନ ସଂପ୍ରଦାୟରେ ବିବାହ କରିବା ସହ ଶିକ୍ଷା କ୍ଷେତ୍ରରେ ପ୍ରଭୂତ ଭୂମିକା ଗ୍ରହଣ କରିଥିଲେ । କିନ୍ତୁ ରୋମ ସାମ୍ରାଜ୍ୟର ପତନ ପରେ ଏହି ପରମ୍ପରା ପୁନଶ୍ଚ ବିଖଣ୍ଡିତ ହେଲା ।

ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରୁ ପାଶ୍ଚାତ୍ୟ ଦେଶମାନଙ୍କର ନାରୀମାନେ ବିଭିନ୍ନ କ୍ଷେତ୍ରରେ ଅଧିକାର ଏବଂ ସ୍ୱାଧୀନତା ପାଇବାର ଗୋଟିଏ ଧୀର କ୍ରମୋନ୍ନତି ଦେଖା ଦେଲା । ଏପରି କେତେକ ଘଟଣା ଘଟିଥିଲା ଯାହାର ପ୍ରଭାବ ନାରୀମାନଙ୍କୁ ସମାଜ ପତି



Source: Author, Digitized by PPRACHIN, SOA

ସେମାନଙ୍କ ଦୃଷ୍ଟିଭଙ୍ଗୀ ଏବଂ ନିଜର ବିଚାରଧାରାକୁ ପରିବର୍ତ୍ତନ କରିବା ପାଇଁ ବାଧ କରିଥିଲା । ଏହି ସମୟରେ ଉଚ୍ଚ ଶ୍ରେଣୀୟ ନାରୀମାନେ କେବଳ ଆଦର୍ଶ ମାତୃତ୍ୱର ଅଧିକାରିଣୀ ଏବଂ ବିଶ୍ୱସ୍ତ ସହଧର୍ମିଣୀ ହୋଇ ପାରିବେ ବୋଲି ଆଇନ ପ୍ରଣୟନ ହୋଇଥିଲା । ଏହି ଧାରଣାକୁ ପ୍ରତିରୋଧ କରିବା ପାଇଁ ଯେଉଁ ନବଜାଗରଣ ଦେଖା ଥିଲା ତା'ର ହେତୁ ସ୍ୱରୂପ ଶିକ୍ଷା ସ୍ତରରେ କୃତିତ୍ୱ ଅର୍ଜନ କରିଥିବା ସ୍ପେନ୍‌ର ଇସାବେଲା ଏବଂ ଇଂଲଣ୍ଡର ପ୍ରଥମ ଏଲିଜାବେଥ୍ ରାଜ୍ୟ ଶାସନ କରିବାକୁ ଯୋଗ୍ୟ ହୋଇଥିଲେ ।

ଶିଳ୍ପ ବିପ୍ଳବର ପ୍ରାରମ୍ଭିକ ଅବସ୍ଥାରେ ନାରୀମାନଙ୍କ କାର୍ଯ୍ୟ ସଙ୍କୁଚିତ ହୋଇ ପଡ଼ିଲା । ମଧ୍ୟବିତ୍ତ ଶ୍ରେଣୀର ନାରୀମାନେ ଏଥିରୁ ନିଜକୁ ଉନ୍ମୁକ୍ତ ରଖି ପାରିଥିଲେ; କିନ୍ତୁ ନିମ୍ନ ଶ୍ରେଣୀର ନାରୀମାନେ ନିଜର ସହାବସ୍ଥାନ ପାଇଁ କଠିନ ପରିଶ୍ରମ କରୁଥିଲେ; ଅପର ପକ୍ଷରେ ବିଧବା ନାରୀ କିମ୍ବା ପତି ପରିତ୍ୟକ୍ତା ନାରୀମାନଙ୍କୁ ନିକୃଷ୍ଟ ନାରୀ ଭାବେ ଗଣ୍ୟ କରାଯିବା ସହ ସମୟ ସମୟରେ ସେମାନଙ୍କୁ ହତ୍ୟା କରାଯାଉଥିଲା ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ପୃଥିବୀର ବହୁ ଦେଶ ନାରୀମାନଙ୍କୁ ଭୋଟ ଦେବାର ଅଧିକାର ଦେବା ସହିତ ରାଜନୀତିରେ ସେମାନଙ୍କର ପ୍ରବେଶକୁ ସ୍ୱାଗତ କରିଥିଲେ । ୧୯୪୫ ମସିହା ଜୁନ୍ ମାସରେ ଜାତିସଂଘ ଗୋଟିଏ ଆଦେଶନାମା ଜାରୀ କରିଥିଲା; ଯେଉଁଥିରେ ପୃଥିବୀର ସମସ୍ତ ଦେଶର ପ୍ରତିନିଧିମାନେ ସ୍ୱାକ୍ଷର କରିଥିଲେ । ୧୯୪୬ ମସିହା ଡିସେମ୍ବର ୧୧ ତାରିଖରେ ଡେନମାର୍କ ଗୋଟିଏ ବିଲ୍ ଉପସ୍ଥାପନା କରିଥିଲା ଯେଉଁଥିରେ ପୁରୁଷ ପରି ନାରୀମାନଙ୍କର ମଧ୍ୟ ରାଜନୀତିରେ ପ୍ରବେଶାଧିକାର ରହିଥିଲା । ୧୯୪୮ ମସିହାରେ ଜାତିସଂଘ ଦ୍ୱାରା "Universal declar'Everyone without distinction of any kind is entitled to the rights and freedoms set down as a common standard of achievment for all people and all nations."[୨] ୧୯୭୫ ମସିହାକୁ ଜାତିସଂଘ 'International Women's year' ଭାବେ ଘୋଷଣା କରିବା ସହ ୧୯୭୫-୮୦ ମସିହା ଭିତରେ ମହିଳାମାନଙ୍କର ସର୍ବବିଧ ଉନ୍ନତି ପାଇଁ ବିଭିନ୍ନ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ତତ୍ପରତା ପ୍ରକାଶ ପାଇଥିଲା ।

ବାମାବାଦୀ ଚିନ୍ତାନାୟକମାନେ ସ୍ୱ-ପରିଚୟ ଅନ୍ୱେଷଣ କରିବା ସହ ସାମାଜିକ ସମ୍ପର୍କ ଏବଂ ନିଜ ଶାରୀରିକ ପ୍ରକାର୍ଯ୍ୟ କିପରି ଅନ୍ତର୍ବୋଧ ଗୁଣଟିକୁ ପ୍ରକଟିତ କରି ନାରୀ ଜାତିର ଉତ୍‌ଥାନ ଦିଗରେ ସହାୟକ ହେବ ସେଥିପ୍ରତି ଗୁରୁତ୍ୱ ଦେଇଛନ୍ତି । ଇତିହାସର ଏକ ବୃହତ ପରିମଣ୍ଡଳ ମଧ୍ୟରେ ବାମାବାଦୀଗଣ ଖୋଜିଛନ୍ତି ସେମାନଙ୍କ ସାଂସ୍କୃତିକ ଧାରା । ଯାହାକୁ ମ୍ୟାରୀ ଉଲଷ୍ଟନ୍ କ୍ରାପ୍ଟ କୁହନ୍ତ A revolution in female manner's । ପ୍ରାଥମିକ ସ୍ତରରେ ଏହା ସାମାଜିକ ଆନ୍ଦୋଳନର ରୂପ ଦେଇ ଅର୍ଥନୈତିକ



Source: Author, Digitized by PPRACHIN, SOA

ବାଛ ବିଚାର, ନ୍ୟାୟଗତ ଅଧିକାରକୁ ବିଶେଷ ଗୁରୁତ୍ୱ ଦେଇଛି । ୧୯୬୦-୭୦ ପୂର୍ବବର୍ତ୍ତୀ ନାରୀ ସଙ୍ଗଠନ ଦ୍ୱାରା ଯେଉଁସବୁ ଆନ୍ଦୋଳନ ଏବଂ ମତବ୍ୟକ୍ତ ହୋଇ ଆସୁଥିଲା ତାହା ସାଂପ୍ରତିକ ବାମାବାଦୀ ଚିନ୍ତାଠାରୁ ସଂପୂର୍ଣ୍ଣ ପୃଥକ । ୧୯୬୮ ରେ ଫ୍ରାନ୍ସର ବାମାବାଦୀମାନଙ୍କ ଦ୍ୱାରା 'Bra-burner' ଘଟଣା, ୧୯୭୮ରେ 'Sex shop' ଗୁଡିକ ପୋଡିବା ଆଦି କାର୍ଯ୍ୟ ପଛରେ ରହିଛି ନାରୀକୁ ଗୋଟିଏ ଯୌନ ଉପାଦାନ ଭାବେ ଗ୍ରହଣ କରୁଥିବା ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା । ୧୯୬୦ରେ ଯେଉଁ ନାରୀ ସଙ୍ଗଠନର ସୂତ୍ରପାତ ଘଟିଥିଲା ତାହା ଥିଲା ନାରୀର ସ୍ଥିତି ଓ ସ୍ୱାର୍ଥ ଜନିତ ସମସ୍ତ ବ୍ୟକ୍ତିଗତ ଅଭିସନ୍ଧିମୂଳକ ପ୍ରସ୍ତାବ ଉପରେ ଗୁରୁତ୍ୱ ଆରୋପଣ । ଯେଉଁଠି ସ୍ଥାନ ପାଇଛ 'Liberation rather rather than emancipation, collectivism rather than individualsim' ଏହିଠାରୁ ଉଦ୍ଭବ ହୋଇଛି 'Sexual politics' । ଏଥିପାଇଁ ଫ୍ରାନଜ ଫ୍ୟାନନ୍‌ଙ୍କ 'Internationalization of colonialism' ଏବଂ ମା ଓ କେଡ୍‌ଙ୍ଗଙ୍କ 'Political consciousness' ଉପରେ ଉନ୍ନତ ଚିନ୍ତା ପ୍ରସୂତ ତଥ୍ୟ ପରିବେଷଣ ବିଶେଷ ସହାୟକ ହୋଇଛି । ତେଣୁ କୁହାଯାଇପାରେ ଯେ ବିଂଶ ଶତାବ୍ଦୀର ଦ୍ୱିତୀୟ ପର୍ଯ୍ୟାୟରେ ଅଲଗାବାଦ (Separatism) ଏବଂ ସାମାଜିକ, ରାଜନୈତିକ ଚିନ୍ତା ସହ ବାମାବାଦର ତୀବ୍ର ସମ୍ପର୍କ ଓ ସଂଘର୍ଷ ସ୍ଥାପିତ ହୋଇଛି । ସୋଭିଏତ୍ ରାଷ୍ଟ୍ର ବିଭାଜନ ଏବଂ ଜର୍ମାନୀ ଏକତ୍ରୀକରଣ ପଛରେ ଥିଲା ରାଷ୍ଟ୍ର ନେତାମାନଙ୍କ ଚିନ୍ତା, କେତେକ କ୍ଷେତ୍ରରେ ନାରୀମାନଙ୍କ ଅଧିକାରରୁ ସାବ୍ୟସ୍ତ କରିବା ପାଇଁ ଖୋରାଇ ଯୋଗାଇଛି । ସେଥିପାଇଁ ସାଂପ୍ରତିକ ନାରୀ ସମାଜ ନିଜର ବୁଦ୍ଧି ଏବଂ କୂଟନୀତି ଦ୍ୱାରା ପରିବର୍ତ୍ତିତ ସାମାଜିକ ପ୍ରଣାଳୀକୁ ଲକ୍ଷ୍ୟ କରିବା ସହ ନିଜର ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଯତ୍ନବାନ୍ ହେଉଛନ୍ତି ।

ସାମାଜିକ ଚଳଣୀରେ ନାରୀକୁ 'ଅନ୍ୟା' (Otherness) ଆଖ୍ୟାଟି ଦିଆଯାଇଛି । ଏହି ଶବ୍ଦଟିର ପର୍ଯ୍ୟବେକ୍ଷଣ ଏବଂ ସମସ୍ତ ସାମାଜିକ ପ୍ରକ୍ରିୟାର ବିଶ୍ଳେଷଣରୁ ଗୋଟିଏ ନୂତନ ଶବ୍ଦ 'Biologism'ର ସୃଷ୍ଟି । ଏହି ଶବ୍ଦ ସୃଷ୍ଟି ହେବା ପଛରେ କେତେଗୁଡିଏ କାରଣ ନିହିତ ଅଛି । ଯଥା – (୧) ପୁଞ୍ଜିବାଦୀ ଦେଶମାନଙ୍କରେ ବାମାବାଦୀଗଡି ସେମାନଙ୍କ ରାଜନୈତିକ, ସାମାଜିକ ପରିବେଶ ଅନୁଯାୟୀ ଯେଉଁ ମନ୍ତବ୍ୟ ଉପସ୍ଥାପନ କରିଛନ୍ତି ତାହା Black feminist ପୂର୍ବାଞ୍ଚଳୀୟ ବାମାବାଦୀମାନଙ୍କ ଦ୍ୱାରା ସ୍ୱୀକୃତ ହୋଇପାରୁନାହିଁ । କାରଣ ଏଠାରେ ରାଜନୈତିକ କ୍ଷମତା ଅପେକ୍ଷା ଜାତି ଏବଂ ଧର୍ମର କ୍ଷମତା ଅଧିକ । ଏସବୁ ଗୁଡିକୁ ଅନୁଧ୍ୟାନ କରି ରବିନ୍ ମୋର୍ ଗାନ୍ ତାଙ୍କର 'Sisterhood is global' (୧୯୮୪) ନାମକ ପୁସ୍ତକ ଲେଖି ଗୋଟିଏ ଆପୋଷ ସମାଧାନର ସୂତ୍ର ନିର୍ଣ୍ଣୟ କରିଛନ୍ତି ।



Source: Author, Digitized by PPRACHIN, SOA

(୨) ନାରୀ ଏବଂ ପୁରୁଷ ଶାରୀରିକ ଗଠନ ଦୃଷ୍ଟିରୁ ଭିନ୍ନ ନାରୀର ନାରୀ ସୁଲଭ ଗୁଣ ମଧ୍ୟ ପୁରୁଷଠାରୁ ଭିନ୍ନ । ସାଇମନ ଡି ବେଭାର କୁହନ୍ତି ଯେ ଏହି ନାରୀ ସୁଲଭ ଗୁଣଟି ସଂସ୍କୃତିଗତ ବ୍ୟାପାର ନୁହେଁ, ପରନ୍ତୁ 'A lessoning or destoration of woman's human potential' । ଏହାକୁ ଭିତ୍ତିକରି ଜୁଲିଏଟ୍ ମିଚେଲ ୧୯୬୪ରେ 'Psychonalysis' ଏବଂ ନାନ୍‌ସୀ କୋଡର ୧୯୭୮ରେ "The reproduction of mothering" ପୁସ୍ତକ ଲେଖିଛନ୍ତି -

(୩) 'Post structuralism' ଏବଂ 'Post modernism' ଏହି ଦୁଇଟି ସାହିତ୍ୟତତ୍ତ୍ୱ ସୃଷ୍ଟିହେବା ଦ୍ୱାରା ଏହା ସହିତ ସଂପୃକ୍ତ ବାମାବାଦୀମାନଙ୍କ ଚିନ୍ତାଧାରା ଖୁବ୍ ଜଟିଳ ହୋଇ ପଡିଛି । ସେମାନେ ନିଜ 'ଲକ୍ଷ୍ୟ' ଅପେକ୍ଷା 'ତଥ୍ୟ' ପରିବେଷଣ କରିବାରେ ସମୟ ଅପଚୟ କରିଛନ୍ତି । ଯାହା କେବଳ ପାଠ୍ୟ ଭାବେ ଗ୍ରହଣୀୟ । ଏହି ଚିନ୍ତାଚେତନାକୁ ସରଳୀକରଣ କରି ସାଧାରଣ ନାରୀ ସମାଜରେ ପ୍ରଚାର କରୁଛନ୍ତି । ବିଶେଷକରି ଏମ୍.ହରିକ୍ ଏବଂ ଏଭେଲିକ୍ ଫକ୍‌ସ କେଲର୍‌ଙ୍କ ଦ୍ୱାରା ସଂକଳିତ "Conflicits in feminism" (1990) ପୁସ୍ତକଟି ଅତ୍ୟନ୍ତ ଉପାଦେୟ ।

ବାମାବାଦୀ ଆନ୍ଦୋଳନର ଏହି ଇତିହାସ ଏବଂ ଦର୍ଶନକୁ ଅବଲୋକନ କଲେ ଜଣାଯାଏ ଯେ ପ୍ରାଥମିକ ଅବସ୍ଥାରୁ ବର୍ତ୍ତମାନ ପର୍ଯ୍ୟନ୍ତ ନାରୀର ଚିନ୍ତାଚେତନା ତଥା ସମାଜିକ ଚଳଣିରେ ଏକ ଭିନ୍ନତା ପରିଲକ୍ଷିତ ହେଉଛି । ଭାବପ୍ରବଣତା ପରିବର୍ତ୍ତେ ବୌଦ୍ଧିକତାକୁ ଗୁରୁତ୍ୱ ଦେଇ ପୁରୁଷର ପ୍ରତିଦ୍ୱନ୍ଦ୍ୱୀ ରୂପେ ନିଜକୁ, ନାରୀମାନେ ଉପସ୍ଥାପନ କରୁଛନ୍ତି । ନିଜକୁ 'ନାରୀ' ଭାବେ ପର୍ଯ୍ୟାଲୋଚନା ନକରି 'ମଣିଷ' ଭାବେ ବଞ୍ଚିବା ପାଇଁ ସମାଜ ସମ୍ମୁଖରେ ସେମାନଙ୍କର ଯୁକ୍ତି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ପାଦଟୀକା

୧. Mobility means progress, but why do woman alone pay, the price". -By Tapti Roy, The Asian Age, The August, 1996.
୨. Encyclopaedia Britanica, Page - 106



Source: Author, Digitized by PPRACHIN, SOA

# ଓଡ଼ିଆ ଲେଖିକାଙ୍କ ମିଥ୍ ଓ ବିଜ୍ଞାନ ଭିତ୍ତିକ ଉପନ୍ୟାସରେ ବାମାବାଦୀ ଚେତନା

## (୧୯୭୦ ପରବର୍ତ୍ତୀ)

The Communist Manifestoର ପ୍ରଥମ ବାକ୍ୟ "The History of all hitherto existing society is the history of class struggles" ଅର୍ଥାତ୍ ଆବହମାନ କାଳରୁ ଏପର୍ଯ୍ୟନ୍ତ ସମସ୍ତ ସାମାଜିକ ସ୍ଥିତାବସ୍ଥାର ଇତିହାସ ହେଉଛି ଶ୍ରେଣୀ ସଂଘର୍ଷର ଇତିହାସ । ଶ୍ରେଣୀ ବିଭକ୍ତ ଏହି ସଂଘର୍ଷଶୀଳ ସମାଜରେ ଲିଙ୍ଗ-ରାଜନୀତିର ଏକ ସ୍ପଷ୍ଟ ରୂପରେଖ ଆମେ ଦେଖିପାରିବା । ଯେଉଁ ରାଜନୀତିଟି ସମାଜର ନାରୀର ଅସ୍ତିତ୍ୱ ନିର୍ମାଣ ଓ ଆତ୍ମ ପରିଚିତି ସୃଷ୍ଟି ପାଇଁ ଉଦ୍ୟମଶୀଳ । ଯାହା ଫେମିନିଜମ୍ ବା ବାମାବାଦ । ସାମାଜିକ ସ୍ଥିତାବସ୍ଥା ହିଁ ନାରୀ ଭିତରେ ଚେତନାର ଉନ୍ମେଳନ ପାଇଁ ଯେଉଁ ଅବବୋଧ ସୃଷ୍ଟି କରିଛି, ତାର ଇତିହାସ, ସ୍ୱରୂପ, ପ୍ରକୃତି ଓ ପ୍ରାରୂପ ଦେଶ, କାଳ ଓ ପାତ୍ର ଭିତ୍ତିରେ ଭିନ୍ନ ଭିନ୍ନ ।

ଦୀର୍ଘ ବର୍ଷ ଧରି କେବଳ ଭାରତ ନୁହେଁ ପରନ୍ତୁ ସମଗ୍ର ବିଶ୍ୱରେ ସାମନ୍ତବାଦୀ ଚିନ୍ତାଧାରା ଓ ସାମନ୍ତବାଦକୁ ପ୍ରୋତ୍ସାହନ କରୁଥିବା Super structure ବା ସୌଧଟି (ଯାହା ଏବେ ପ୍ରକାଶ୍ୟ ଅବା ଗୋଟିଏ ଅନ୍ତଃପ୍ରବାହ ଭାବେ) ନାରୀକୁ ଦ୍ୱିତୀୟ ଶ୍ରେଣୀର ନାଗରିକ, ପୁରୁଷର ଏକ ଆମୋଦପ୍ରିୟ ବସ୍ତୁ ଅଥବା ପୁରୁଷ ନିର୍ଭରଶୀଳ ପ୍ରଜାତି ଇତ୍ୟାଦିରେ ରୂପାନ୍ତରିତ କରିଛି । ଏବଂ, ଏହି ସୌଧର Base ବା ପ୍ରମୁଖ ଭିତ୍ତି ହୋଇଛି ଧର୍ମ ଓ ଧର୍ମକୁ କେନ୍ଦ୍ର କରି ଗଢ଼ି ଉଠିଥିବା କାବ୍ୟ, ମହାକାବ୍ୟ ଏବଂ ପରବର୍ତ୍ତି ସମୟରେ ମନୁସଂହିତା । ଯେଉଁଗୁଡ଼ିକ ପ୍ରତି ମୁହୂର୍ତ୍ତରେ ଉଭୟ ନାରୀ ଓ ପୁରୁଷକୁ ପ୍ରୋତ୍ସାହନ ପ୍ରଚୋଦିତ କରିଛି ପ୍ରଚଳିତ ବ୍ୟବସ୍ଥାର ସାଧାରଣୀକରଣ କରିବା ଏବଂ ତାର ସ୍ଥାୟିତ୍ୱ ନିର୍ମାଣ ପାଇଁ । ଏହି ପ୍ରଚେଷ୍ଟାର ପ୍ରଥମ ସୋପାନ୍‌ର ଅନ୍ତରାଳରେ ରହିଛି ନାରୀ ସଂପର୍କିତ ମିଥ୍ ଗଠନ । ପୁରୁଷତନ୍ତ୍ରର ଉପନିବେଶିକ ମନୋରାଜ୍ୟରେ ନାରୀ ହୋଇଛି ବାଧ୍ୟତା ମୂଳକ ଆଜ୍ଞାବହ ପ୍ରଜା । ତେଣୁ ପୁରୁଷ ନିଜକୁ ଦେବତ୍ୱର ଆସନରେ ଅଭିସିକ୍ତ କରି ନାରୀକୁ କିପରି ଅବଦମିତ କରାଯାଇ ପାରିବ ସେଥିପ୍ରତି ଏକ ସତର୍କ ପଦକ୍ଷେପ ନେଇଛି ନାରୀ ସଂପର୍କିତ ବିବିଧ ମିଥ୍ ଗଠନ ପାଇଁ । ପୁରୁଷ ଶାସିତ ରାଜ୍ୟରେ ନାରୀ ନିଜକ ସୁରକ୍ଷିତ କରିବା ପାଇଁ ଅବଗୁଣ୍ଠନର ଆଶ୍ରୟ ନେଇଛି । ଆତ୍ମଗ୍ଲାନି, ଆତ୍ମମର୍ଯ୍ୟାଦା ରକ୍ଷା ପାଇଁ ତା'ର ସମଗ୍ର ସତ୍ତା ବିଚଳିତ ହୋଇପଡିଛି । ସାମାଜିକ ଓ ରାଜନୈତିକ ଆନ୍ଦୋଳନ ମାଧ୍ୟମ ଦେଇ ଧୀରେ



Source: Author, Digitized by PPRACHIN, SOA

ଧୀରେ ନିଜ ସ୍ଥିତିକୁ ସୁଦୃଢ଼ କରିବା ପାଇଁ ଲେଖନୀ ଚାଳନା କରିଛି । ସେଥିପାଇଁ ଏ ଚକ୍ରବ୍ୟୁହରୁ ନିଷ୍କ୍ରାନ୍ତ ପାଇବା ପାଇଁ ଅନୁରୂପ ଗୋଟିଏ ଉପସଂସ୍କୃତି ଗଠନ କରିବାକୁ ଚେଷ୍ଟା କରିଛି । କାରଣ ତା ଦୃଷ୍ଟିରେ ପୁରୁଷ ଲିଖିତ ସମସ୍ତ ସାହିତ୍ୟ ପୁଲିଙ୍ଗ ପର୍ଯ୍ୟାୟଭୁକ୍ତ (Phallo Centric) । ଯେଉଁଥିରେ ନାରୀ ଜୀବନର ବାସ୍ତବ ଚିତ୍ର ଖୋଜି ପାଇବା କଷ୍ଟକର । ଲେଖିକାମାନଙ୍କ ଏହି ସୃଜନ ପ୍ରକ୍ରିୟା ଓ ତା' ଉପରେ ପୁରୁଷ ଲେଖକମାନଙ୍କର ପ୍ରଭାବର ସ୍ୱରୂପକୁ ବିଶ୍ଳେଷଣ କରି ଜନ ଷ୍ଟୁଆର୍ଟ ମିଲ୍ ତାଙ୍କର Subjection of women ପୁସ୍ତକରେ କହିଛନ୍ତି ଯେ, "If women lived in a different country from men, and had never read any of their writings, they would have had a literature of their own." (P-511)

ମିଥ୍ ପ୍ରକ୍ରିୟାଟି କେବଳ ସହର ସଭ୍ୟତା କିମ୍ବା ଗ୍ରାମ୍ୟ ସଭ୍ୟତାରେ ବସବାସ କରୁଥିବା ନାରୀ ନିମନ୍ତେ ଉଦ୍ଦିଷ୍ଟ ନହୋଇ ସାମଗ୍ରିକ ନାରୀ ଜାତିର ଭିତର ବିକାଶ ପଥରେ ଅନ୍ତରାଳ ସୃଷ୍ଟି କରିଛି । ବିଶ୍ୱଜଗତ ତଥା ଜୀବଜଗତ ସୃଷ୍ଟି ସଂପର୍କିତ ମିଥ୍ ଯେପରି ପୁରାଣ ସାହିତ୍ୟରେ ଦେଖିବାକୁ ମିଳେ ସେହିପରି ନାରୀ ସୃଷ୍ଟି ତଥା ତା'ର ଜୀବନ ଚର୍ଯ୍ୟା ସଂପର୍କିତ ମିଥ୍ ପୁରାଣ ପୃଷ୍ଠା ମଣ୍ଡନ କରିଛି । ଦେବୀ, ଦାନବୀ, ମହାମାନବୀ ଭାବେ ନାରୀର ବିବିଧ ରୂପ ବୈଚିତ୍ର୍ୟ ଆକଳନ କରାଯାଇଥିବାରୁ ସେଇ ପାରଂପରିକ ଅବବୋଧ ପୁରାଣ ପୃଷ୍ଠାରୁ ବାହାରି କେବଳ ସାହିତ୍ୟ ନୁହେଁ ପରନ୍ତୁ ଅନ୍ୟାନ୍ୟ ବିଦ୍ୟା ମାଧ୍ୟମରେ ସମାଜରେ ବଳିଷ୍ଠଭାବେ ଆତ୍ମପ୍ରକାଶ କରିଛି । ପୁରୁଷ ସୃଷ୍ଟି କରିଛି ମିଥ୍ ଏବଂ ଏହି ମିଥ୍‌ରୁ ସୃଷ୍ଟିହୋଇଥିବା ନାରୀ ସାଂସାରିକ ସୁଖ ଦୁଃଖ ଠାରୁ ଊର୍ଦ୍ଧ୍ୱରେ ରହି ସମାଜରେ କେବଳ ତ୍ୟାଗମୟୀ, ସର୍ବଂସହା, କରୁଣାମୟୀ ହେବାକୁ ବାଧ୍ୟ କରାଯାଇଛି । ପ୍ରତିଦ୍ୱନ୍ଦ୍ୱୀ ତଥା ପ୍ରତିହିଂସା ପରାୟଣା ହେଲେ ସମାଜରେ ନାରୀର ସ୍ଥାନ ନାହିଁ, ସମାଜ ଏବଂ ପୁରୁଷ ଦୃଷ୍ଟିରେ ତା'ର ପ୍ରତିମୂର୍ତ୍ତି ସର୍ବଦା ସ୍ୱଚ୍ଛ ହେବା ଆବଶ୍ୟକ । ସାଧାରଣ ମଣିଷ ପରି ନିଜର ପ୍ରବୃତ୍ତି, କାମନା, ବାସନାକୁ ଚରିତାର୍ଥ କରିବାରେ ପ୍ରତିବନ୍ଧକ ସୃଷ୍ଟି କରାଯାଇଛି ପୁରୁଷ କୃତ ପୁରାଣରେ । ସେଠାରେ ମଣିଷ ନାହିଁ, କେବଳ ଗୋଟିଏ ଆଦର୍ଶର ଖୋଳ ଭିତରେ ଆବଦ୍ଧ ନାରୀର ବ୍ୟକ୍ତି-ସତ୍ତା । ପୁରାଣର ଦ୍ୱାହି ଦେଇ ପୁରୁଷ ସମାଜ, ନାରୀଠାରୁ ସାଧାରଣ ମଣିଷ ନିମନ୍ତେ ଉଦ୍ଦିଷ୍ଟ ସ୍ୱାଧୀନତା ଅପହରଣ କରିଛି । ବ୍ୟକ୍ତି-ସତ୍ତାର ଉତ୍ତରଣ ଏବଂ ନାରୀ ପ୍ରତି ପୁରୁଷ ସମାଜର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ନିମନ୍ତେ ମିଥ୍‌ର ପୁନର୍ମୂଲ୍ୟାୟନର ଆବଶ୍ୟକତା ଅନୁଭବ କରିଛି ଲେଖିକା । କାରଣ ପୌରାଣିକ, ଐତିହାସିକ ତଥା କିମ୍ବଦନ୍ତୀ ମୂଳକ ମହାକାବ୍ୟ କିମ୍ବା ଉପନ୍ୟାସ ରଚନା କରିବା ପଛରେ ରହିଛି ପୁରୁଷର ଉଦ୍ଦେଶ୍ୟ ମୂଳକ ମନୋଭାବ ଯାହା ନାରୀ ଜୀବନ ଚର୍ଯ୍ୟାର ପ୍ରତିକୂଳ । "Few myths have been advantages to the ruling caste than the myth of woman ଧର୍ମ ସହ



Source: Author, Digitized by PPRACHIN, SOA

ମିଥ୍‌ର ସହସଂପୃକ୍ତ ଥିବାରୁ, ଧର୍ମର ଦ୍ୱାହି ଦେଇ ପୁରୁଷ-ତନ୍ତ୍ର ସମାଜ ନାରୀର ସ୍ୱତଃସ୍ଫୂର୍ତ୍ତ ଜୀବନ ଧାରାରେ ବାଧା ସୃଷ୍ଟି କରେ । ସୀତାର ପାତିବ୍ରତ୍ୟ, ବହୁ ପୁରୁଷ ଭୋଗ୍ୟା ଦ୍ରୌପଦୀ ଏବଂ ଅହଲ୍ୟାକୁ ସତୀ ଆଖ୍ୟା ଦେବା ପଛରେ ରହିଛି, ପୁରୁଷର ଲିଙ୍ଗ-ରାଜନୀତ (Gender Politics) ତଥା ଯୌନ ପ୍ରବୃତ୍ତିର ଦୂରାଭିସନ୍ଧି ମୂଳକ ଅଭୀପ୍‌ସା । ଉକ୍ତ ଆଦର୍ଶବୋଧଟି ପୁରୁଷ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ସେଥିରେ ନାରୀର ପ୍ରବେଶ ଅନାଧିକାର ଚର୍ଚ୍ଚା ସଦୃଶ ମନେକରାଯାଏ । ଭାରତୀୟ ସମାଜ ପରିପ୍ରେକ୍ଷୀର ମିଥ୍‌ର ସଂଚରଣ ସଂପର୍କରେ ଯଶୋଧାରା ବାଗ୍‌ଚୀ କୁହନ୍ତି, "The gender construction that it achived through the dominant myth of Indian womanhood may well be read as the formula for class / caste hegemony of moderm India. " Indian Woman : Myth of Reality, Page-4) ଧର୍ମ ଜୀବନ ବ୍ୟତୀତ ସାମାଜିକ ପେକ୍ଷାପଟରେ ମିଥ୍‌ର ଗଭୀରତା - ନାରୀର ସମଗ୍ର ଜୀବନ ଧାରାରେ ପ୍ରଭାବ ପକାଇଛି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ, ନାରୀର ଜୀବନ ପଞ୍ଜୀ ଏହି ମିଥ୍‌ର ବଶବର୍ତ୍ତୀ । ତେଣୁ ନାରୀ ସଂପର୍କିତ ପୌରାଣିକ, ଐତିହାସିକ ତଥା କିମ୍ୱଦନ୍ତୀ ମୂଳକ ମିଥ୍‌ର ପ୍ରତିବାଦ କରିବା ସହିତ ନାରୀର ପ୍ରକୃତ ସ୍ୱରୂପକୁ ଏହି ଧରଣର ଉପନ୍ୟାସରେ ପୁନର୍ବିଚାର କରିଛି ଲେଖିକା । ପୁରାଣ ଅବା ପୁରୁଷ ନିର୍ଦ୍ଧାରିତ ନୀତି ନିୟମର ବଳୟକୁ ଅସ୍ୱୀକାର କରିବା ସହିତ ନିଜର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ତଥା ଏକ ଉପ-ସଂସ୍କୃତି ଗଠନରେ ଲେଖିକା ପ୍ରୟାସୀ ।

ଉତ୍ତର ସତୁରୀ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଲେଖିକାର ମିଥ୍ ପ୍ରତି ଆକର୍ଷଣ, ନାରୀ ଅନ୍ତର୍ବୋଧର ବିଶ୍ଳେଷଣ ଓ ପୁନର୍ମୂଲ୍ୟାୟନ ପ୍ରତି ଅଭୀପ୍‌ପସାକୁ ସୂଚିତ୍ କରେ । ମିଥ୍‌କୁ ମୁଖ୍ୟ କେନ୍ଦ୍ରରେ ସଂସ୍ଥାପନ କରି ତା'ର ଭାବ-ଭୂମି ଉପରେ ନାରୀତ୍ୱବୋଧର ସାର୍ଥକ ଆରୋପ ପୂର୍ବକ ପ୍ରତିଭାରାୟ, ବିଜୟିନୀ ଦାସ, ସୁକାମିନୀ ନନ୍ଦ, ରୋଜାଲି ନନ୍ଦ ଆଦି ଲେଖିକା, ଉପନ୍ୟାସ ରଚନା କରିଛନ୍ତି । ରାମାୟଣ, ମହାଭାରତ କାବ୍ୟଗ୍ରନ୍ଥର ବିଷୟବସ୍ତୁ ଏବଂ ଚରିତ୍ର ଆହରଣ କରି, ସେଥିରେ ସାଂପ୍ରତିକ ନାରୀର ବାସ୍ତବ ଜୀବନ ଚର୍ଯ୍ୟାକୁ ବିଶ୍ଳେଷଣ କରାଯାଇଛି । ଦୈବୀ-ସତ୍ତା ସଂପନ୍ନ ନାରୀ ହୋଇଛି ମାଟି, ପାଣି, ପବନରେ ଜୀବନ ନିର୍ବାହ କରୁଥିବା ସାଧାରଣ ସଚେତନଶୀଳ ପାର୍ଥିବ ମାନବୀ । ତେଣୁ କଥନ ଭାଗଟିର ସାଦୃଶ୍ୟ ରହିଥିବାବେଳେ ଆଭିମୁଖ୍ୟ ବଦଳି ଯାଇଛି । ପ୍ରତିଭାରାୟଙ୍କ 'ଯାଜ୍ଞସେନୀ' ଯଥାର୍ଥରେ 'ନାରୀତ୍ୱର ଏକ ଆହ୍ୱାନ' । ଉପନ୍ୟାସର 'ଆଦ୍ୟାଭାସ'ରେ ଲେଖିକା କୁହନ୍ତି, "ବିଶ୍ୱର ଏ ଯାବତ୍ ଏପରି ନାରୀ ଜନ୍ମ ଲାଭ କରିନାହିଁ ଯିଏ ଯାଜ୍ଞସେନୀଙ୍କ ଭଳି ନିର୍ଯ୍ୟାତନା, ଲାଞ୍ଛନା, ମାନସିକ ସଂକଟ ଓ ସଂଘର୍ଷର ସମ୍ମୁଖୀନ ହୋଇଛି । କାମାନ୍ଧ ପୁରୁଷ ଦ୍ୱାରା ସୁନ୍ଦର ନାରୀ ଯୁଗେ ଯୁଗେ ନିର୍ଯ୍ୟାତିତ ଏବଂ ଅପମାନିତା ହୋଇଆସିଛି । କିନ୍ତୁ ଭାତୃ ବିବାଦ ଓ ଈର୍ଷା ଅସୂୟାର ବଶବର୍ତ୍ତୀ ହୋଇ ନିଜ ବଂଶର କୂଳବଧୂକୁ ବହୁ



Source: Author, Digitized by PPRACHIN, SOA

ଜ୍ଞାନୀ, ଗୁଣି, ମାନୀ ପୁରୁଷଙ୍କର ସମ୍ମୁଖରେ ବିବସନା କରିବା ଏବଂ ସମସ୍ତେ ନୀରବରେ ନିର୍ବାସନା ଯୁବତୀ ଅଙ୍ଗଶୋଭା ଦର୍ଶନ କରିବା ପାଇଁ ବସିରହିବା ଭଳି କଳଙ୍କିତ ଅଧ୍ୟାୟର ଦୃଷ୍ଟାନ୍ତ, ବିଶ୍ୱରେ ଅଲିଖିତ, ଲିଖିତ ଇତିହାସରେ ନାହିଁ ।" ପଞ୍ଚପତିଙ୍କ ସହ ଦ୍ରୌପଦୀ ସ୍ୱର୍ଗ ଯାତ୍ରା ସମୟରେ ହିମାଳୟର ସ୍ୱର୍ଣ୍ଣରେଣୁରେ ପାଦଖସିବାରୁ ଭୂପତିତ ହୋଇଛି । ସେଥିପ୍ରତି କେହି ଦୃଷ୍ଟିପାତ କରିନାହାନ୍ତି । ସ୍ୱାର୍ଥୀ ସ୍ୱାମୀଙ୍କ ଏତାଦୃଶ କାର୍ଯ୍ୟରେ ଦୁଃଖିତା ଦ୍ରୌପଦୀ ସଖା କୃଷ୍ଣଙ୍କୁ ନିଜର ଗ୍ଲାନି, କ୍ଷୋଭ ଜଣାଇ ପତ୍ର ଲେଖିଛି । ଯେଉଁଥିରେ ତା'ର ଜନ୍ମବୃତ୍ତାନ୍ତ, ବିବାହ, ପତିମାନଙ୍କ ନିକଟରେ ବିଭକ୍ତ ମାନସିକତା, କର୍ଣ୍ଣସମେତ କୌରବଙ୍କ ତା'ପ୍ରତି କୁତ୍ସିତ ମନୋଭାବ, ମହାଭରତ ଯୁଦ୍ଧ ଏବଂ ଯୁଦ୍ଧ ପରବର୍ତ୍ତୀ ଘଟଣା ଗୁଡିକର ବିସ୍ତୃତ ବିବରଣୀ ସ୍ଥାନ ପାଇଛି । ଦେବୀ ପଦକୁ ତାଚ୍ଛଲ୍ୟ କରି ଜଣେ ସାଧାରଣ ଅସହାୟ ନାରୀଭାବେ ନିଜର ଦୁଃଖ, ବେଦନାକୁ ପ୍ରକାଶ କରିଛି । "କାଳ ମତେ ଦେବୀ ଦ୍ରୌପଦୀ'ରେ ପରିଣତ କରିପାରେ । ମୁଁ କିନ୍ତୁ ମରଶରୀର ଧରି ମର୍ତ୍ତ୍ୟର ମାନବୀ ଭାବେ ଧରାପୃଷ୍ଠକୁ ଆସିଥିଲି । * * * ଆମର କର୍ତ୍ତା ମହାମୁନି କୃଷ୍ଣ ଦ୍ୱୈପାୟନ ମତେ ଦେବୀର ଆସନରେ ବସାଇଛନ୍ତି । * * * କିନ୍ତୁ ମୁଁ ଦେବୀ ନୁହେଁ, ମୁଁ ଜାତିସ୍ମର ନୁହେଁ । ତେଣୁ ଆଜି ମୁଁ ମୃତ୍ୟୁପଥରେ ଭାସି ଯାଉ ଯାଉ ଯାହା କହିବି ସବୁ ସତ୍ୟ କହିବି ଏବଂ ମୋ ଜୀବନର କଥା ଜଣେ ମର୍ତ୍ତ୍ୟମାନବୀର ଜୀବନ ଚରିତ ଛଡ଼ା ଅନ୍ୟକିଛି ନୁହେଁ ।" (ପୃ-୫) ଏହି ପ୍ରସଂଗରେ ବେଭୋର କୁହନ୍ତି, "Surely most of the myths had roots in the spontaneous attitude of man towards his own existence and towards the world around him." (P-290)

ପ୍ରଥମ ସାକ୍ଷାତରେ କୃଷ୍ଣଙ୍କୁ ଭଲପାଇବସିଥିଲେ ଦ୍ରୌପଦୀ । କୃଷ୍ଣଙ୍କ ନୀଳ ଜୀମୂତ ରୂପର କମନୀୟତା, ଶାନ୍ତ ସ୍ନିଗ୍ଧ ମୁଖମଣ୍ଡଳ, ରକ୍ତିମ କୋମଳ ପଦରାଜୀ ଦ୍ରୌପଦୀଙ୍କ ଅନ୍ତଶ୍ଚେତନରେ ଗଭୀର ରେଖାପାତ କରିଥିଲା । ସାଧାରଣ ନାରୀପରି କୃଷ୍ଣଙ୍କ ପୌରୁଷରେ ଆକର୍ଷିତ ଦ୍ରୌପଦୀ ପାଇପାରିନଥିଲେ କୃଷ୍ଣଙ୍କୁ । ଦ୍ରୌପଦୀର ମନୋଭାବ ଜାଣି ଅନୁରୂପ ସୌମ୍ୟ ପୁରୁଷ ଅର୍ଜୁନଙ୍କୁ ତାଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ କୃଷ୍ଣ, ସ୍ୱୟଂବର ସଭାରେ । ଏହି ସଭାରେ ଉପସ୍ଥିତ କର୍ଣ୍ଣର ପୌରୁଷ ତେଜରେ ଚିଛିକ୍ଷଣ ପାଇଁ ବିମୁଗ୍ଧ ହୋଇପଡିଥିଲେ ସୁଦ୍ଧା ସର୍ତ୍ତାନୁଯାୟୀ ଦ୍ରୌପଦୀ ବିବାହ କଲେ ଅର୍ଜୁନକୁ । କିନ୍ତୁ ବସନ୍ତ କୁଟୀରରେ ପଞ୍ଚଭ୍ରାତା ଓ କୁନ୍ତୀଙ୍କ କଥୋପକଥନ ଏବଂ ଏକ ଅସ୍ୱାଭାବିକ ପରିସ୍ଥିତି ଉପରେ ପଡ଼ି ଦ୍ରୌପଦୀଙ୍କ ପଞ୍ଚସ୍ୱାମୀ, ଦ୍ରୌପଦୀଙ୍କୁ ବିଚଳିତ କରିଛି ।" ଜଣେ ସ୍ତ୍ରୀ ପାଞ୍ଚଜଣ ପୁରୁଷଙ୍କର ପତ୍ନୀ ହୋଇ ରହିବାର ହାସ୍ୟକର ଦୃଷ୍ଟାନ୍ତ ମୋ ବ୍ୟତୀତ ପୃଥିବୀରେ ଆଉ କେହି ନାହାନ୍ତି, ହେବେ ନାହିଁ । ଏ ଅସମ୍ମାନକୁ ମୁଁ କାହିଁକି ନୀରବରେ ଗ୍ରହଣ କରିବି ? ମୁଁ କ'ଣ ଏକ ପ୍ରାଣହୀନ ପ୍ରତିମା ?" (ପୃ-୬୬) ପୁରୁଷ ବହୁପତ୍ନୀ ଗ୍ରହଣ କରି ନିଜକୁ ଗୌରବାନ୍ୱିତ ମନେକରେ ।



Source: Author, Digitized by PPRACHIN, SOA

ଏହି ବହୁବିବାହ ପ୍ରଥାଟିକୁ ପୁରୁଷ ତାନ୍ତ୍ରିକ ସମାଜ ସ୍ୱୀକୃତି ଦିଏ । ପୁରୁଷର ଏହି ଲିଙ୍ଗରାଜନୀତି ଦ୍ରୌପଦୀ ମନରେ ବିଦ୍ରୋହ ସୃଷ୍ଟି କରିଛି, ଅସହାୟତା ପ୍ରକାଶ ପାଇଛି । ଦ୍ରୌପଦୀର ଏହି ଅନକାଙ୍‌କ୍ଷିତ ପରିସ୍ଥିତିକୁ ବ୍ୟାସ ଦେବ ଅତି ସାଧାରଣ ଭାବେ ଗ୍ରହଣ କରିଛନ୍ତି । ନାରୀର ଅନ୍ତଃକରଣରେ ଉପୁଜୁଥିବା ବେଦନାକୁ ଅନୁଧ୍ୟାନ କରିବାରେ ତାଙ୍କର ଅକ୍ଷମତା ପ୍ରକାଶ ପାଇଛି । ସେଥିପାଇଁ 'ଯାଜ୍ଞସେନୀ'ର ଦ୍ରୌପଦୀ ଜଣେ ଫେମିନିଷ୍ଟ ନାରୀଭାବେ ଚିତ୍ରିତ । ନାରୀର ପ୍ରବୃତ୍ତିକୁ ଧର୍ମ ଏବଂ ନୈତିକତାର ଆବରଣ ଭିତରେ ବିଶ୍ଳେଷଣ କରିନାହାନ୍ତି ଲେଖିକା । ତେଣୁ ସମସ୍ତଙ୍କ ମାନସିକ ସ୍ଥିତି ସହ ଖାପ ଖୁଆଇ ଚଳିବା ଏବଂ ସେମାନଙ୍କ ଦୈହିକ କ୍ଷୁଧାକୁ ପ୍ରଶମିତ କରିବା ନିମନ୍ତେ ଦ୍ରୌପଦୀର ବିଭକ୍ତମନ ଯନ୍ତ୍ରଣାରେ ସିକ୍ରାର କରିଉଠିଛି, "ନାରୀ ଧର୍ମ ଉପରେ ଏ ବୀଭତ୍ସ ଅତ୍ୟାଚାର କଳଙ୍କିତ ଇତିହାସ କାଳସ୍ରୋତରେ ଲିଭିବନାହିଁ । ଏ ଦେଶର ଉତ୍ତରଦାୟାଦ ଏଥିପାଇଁ କୁରୁପତିଙ୍କୁ ନିନ୍ଦିତ କରିବେ । କୁରୁବଂଶର ଏହି ସ୍ୱେଚ୍ଛାଚାର ଏବଂ ଅତ୍ୟାଚାର ସମଗ୍ର ପୁରୁଷ ଜାତିକୁ ଅନନ୍ତକାଳ ପାଇଁ ଦୀନ କରିଦେଇଛି ଏବଂ ଭରତ ବଂଶର ସତୀ ସ୍ତ୍ରୀ ତଥା ସମଗ୍ର ପୃଥିବୀର ନାରୀ ଜାତିକୁ ଅପମାନ କରିଛି ।" (ପୃ-୨୭୭) ବ୍ୟାସଦେବଙ୍କ 'ମହାଭାରତ' ପୁରୁଷ ସମାଜ ଅନୁକୂଳ ଗୋଟିଏ ଧର୍ମଶାସ୍ତ୍ର । ଯେଉଁଥିରେ ନୀତି ସଂପର୍କିତ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଆଯାଇଛି । ସେଥିରେ ଚରିତ୍ର ଚରିତ୍ର ଦେବଭାବ ପୂର୍ଣ୍ଣ । ଧର୍ମ ତଥା ନୀତିଶାସ୍ତ୍ର ଭିତରେ ସାଧାରଣ ମଣିଷର ବାସ୍ତବ ଜୀବନ-ଯାତ୍ରା ଖୋଜି ପାଇବା ଦୁଷ୍କର । ଯେଉଁଥିପାଇଁ ସେଠାରେ ଦ୍ରୌପଦୀ ଜଣେ ସାଧାରଣ ମାନବୀ ନୁହେଁ କିମ୍ବା ଚିନ୍ତା ଚେତନା ନାରୀ ସୁଲଭ ନୁହେଁ । ଦୁର୍ଯ୍ୟୋଧନର ରକ୍ତରେ କେଶ ବନ୍ଧନ ପାଇଁ ତା'ର ରାକ୍ଷସୀ ସୁଲଭ ତୃଷା ଜାଗ୍ରତ ହୋଇଛି । କିନ୍ତୁ ପ୍ରତିଭାରାୟଙ୍କ ଦ୍ରୌପଦୀ ଏ କ୍ଷେତ୍ରରେ ଜୀବନର ବାସ୍ତବ କ୍ଷେତ୍ର ପ୍ରତି ସଚେତନ । ଧର୍ମ ଦର୍ଶନର କୁକ୍ଷୀ ମଧ୍ୟରେ ସୀମାବଦ୍ଧ ନ ହୋଇ ନାରୀ ଭିତରେ ଥିବା ଶକ୍ତିକୁ ସେ ଜାଗରିତ କରିଛି । ଜୀବନର ସମସ୍ତ ସ୍ତରରେ ନିଜକୁ ବିଶ୍ଳେଷଣ କରିଛି, ସ୍ୱାଧିକାର ସଂପର୍କରେ ପ୍ରଶ୍ନ ଉଠାଇଛି, ନାରୀ ସଂପର୍କିତ ସମସ୍ତ ମିଥକୁ ଅସ୍ୱୀକାର କରିବା ନିମନ୍ତେ ତତ୍ପରତା ଦେଖାଇଛି ପ୍ରତିଭାରାୟଙ୍କ ଦ୍ରୌପଦୀ । ସେ ଦେବୀ ହୋଇନାହିଁ କି ଦାନବୀ ହୋଇନାହିଁ, ପରନ୍ତୁ ସାଧାରଣ ମାନବୀଟିଏ ହୋଇ ବଂଚିବାର ରାହା ଖୋଜିଛି । ସେଥିପାଇଁ ପ୍ରତ୍ୟେକ କାର୍ଯ୍ୟରେ ଧର୍ମର ଦ୍ୱାହି ଦେଉଥିବା ଯୁଧିଷ୍ଠିରଙ୍କ ପ୍ରତି ତା'ମନରେ ତିକ୍ତତା ସୃଷ୍ଟିକରିଛି, "ଭାବୁଛି ଯୁଧିଷ୍ଠିରଙ୍କୁ ସ୍ୱାମୀ ରୂପରେ ପାଇଥିଲେ ଯେ କେହି ନାରୀ ଅଶେଷ ଦୁଃଖ ନିଶ୍ଚୟ ଭୋଗିଥାନ୍ତି ।" (ପୃ-୪୪୫) ଧର୍ମର ଅର୍ଦ୍ଦଳି ଭିତରେ ନାରୀ-ସତ୍ତା କିପରି ବିଧ୍ୱସ୍ତ ହୋଇଛି ତାହା 'ଯାଜ୍ଞସେନୀ'ରେ ବେଶ୍ ସ୍ପଷ୍ଟ । ସାରା ଜୀବନ ନିଜକୁ ତିଳତିଳ ଦଗ୍ଧ କରି ଯେଉଁ ପଞ୍ଚପତିଙ୍କ ଦୁଃଖ ସୁବିଧା ନିମନ୍ତେ ନିଜକୁ ସମର୍ପଣ କରିଥିଲା, ପରିଶେଷରେ ସେମାନଙ୍କର ସ୍ୱାର୍ଥପର ମନୋଭାବ



Source: Author, Digitized by PPRACHIN, SOA

ଦ୍ରୌପଦୀଙ୍କୁ ଖୁବ୍ କଷ୍ଟ ଦେଇଛି । ବ୍ୟାସଦେବଙ୍କ ଚକ୍ଷୁରେ ଯୁଧିଷ୍ଠିର ଧର୍ମରାଜ, ମହାନ ଏବଂ ନାରୀ ଜନ୍ମ ହେତୁ ଦ୍ରୌପଦୀ ସମସ୍ତ ପାପ ଓ ଧ୍ୱଂସର ମୂଳ କାରଣ । କିନ୍ତୁ 'ଯାଜ୍ଞସେନୀ'ରେ ଦ୍ରୌପଦୀ ନିକଟରେ ଯୁଧିଷ୍ଠିର ଅପେକ୍ଷା ଭୀମ ଉପଯୁକ୍ତ ପୁରୁଷ । ଭୀମସେନଙ୍କ ବ୍ୟତୀତ କୌଣସି ପତି ଦ୍ରୌପଦୀର ଅସହାୟ ଅବସ୍ଥାରେ ସମବେଦନା ପ୍ରକାଶ କରିନାହାନ୍ତି । କୁରୁସଭାସ୍ଥଳେ ଦ୍ରୌପଦୀଙ୍କୁ ବିବସନା କରିବା ସମୟରେ ହେଉ କିମ୍ବା ଦ୍ରୌପଦୀର କ୍ରୋଧକୁ ପ୍ରଶମିତ କରିବାପାଇଁ ଦୁଃଶାସନର ରକ୍ତରେ ଦ୍ରୌପଦୀର ମୁକ୍ତକେଶ ବନ୍ଧନରେ ହେଉ ।

ନାରୀର ସତୀତ୍ୱ, ପତିବ୍ରତା ସଂପର୍କରେ ବ୍ୟାସଦେବଙ୍କ ପୁରୁଷାୟିତ ମତକୁ ପ୍ରତିଭାରାୟ କେତେକ ସ୍ଥଳରେ ପ୍ରତ୍ୟାଖ୍ୟାନ କରିଛନ୍ତି, କେତେଗୁଡିଏ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । "ସତୀ ନାରୀ" 'ଅସତୀ ନାରୀ' ଭଳି 'ସତ୍ୟ ପୁରୁଷ' ଶବ୍ଦ ଶାସ୍ତ୍ର ପୁରାଣରେ ନାହିଁ କାହିଁକି ? ପୁରୁଷର ହୃଦୟକଣ ସୁନାରେ ଗଢ଼ା ଯାହା କେବେହେଲେ ପାପର ପାର୍ଶ୍ୱରେ ମଳିନ ହୁଏ ନାହିଁ କାହିଁକି ? ଶାସ୍ତ୍ରକାରମାନେ କ'ଣ କେବଳ ନାରୀ ପାଇଁ ପାପର ତାଲିକା ପ୍ରସ୍ତୁତ କରିଥିଲେ ?" (ପୃ-୧୦୭) 'ଯାଜ୍ଞସେନୀ'ର ଦ୍ରୌପଦୀ ଜ୍ଞାନବତୀ ବିଦୁଷୀ । ତେଣୁ ତା' ମଧ୍ୟରେ ଥିବା ନାରୀ ସଚେତନତା ସହଜରେ ଉପଲବ୍ଧ । ସେ ବିଦ୍ରୋହୀ ହୋଇପାରେ, ଧର୍ମ ନାମରେ ନାରୀର ଅନ୍ତଃସତ୍ତାକୁ ଅବଦମିତ କରୁଥିବା ପୁରୁଷ ସମାଜକୁ ତିରସ୍କାର କରିପାରେ ମାତ୍ର ମାତୃତ୍ୱବୋଧର ମହାନତାକୁ ସେ ଅସ୍ୱୀକାର କରିନାହିଁ, ଜଗତର ସୃଷ୍ଟିକାରିଣୀ ହୋଇ ନିଜ ବକ୍ଷର ଅମୃତଧାରାକୁ ବିତରଣ କରିବାରେ କୁଣ୍ଠା ପ୍ରକାଶ କରିନି । ମୃତ୍ୟୁର  ସନ୍ଧିକ୍ଷଣରେ କୃଷ୍ଣଙ୍କୁ ମାଗିଥିବା ତିନୋଟି ବର, ତା'ର ନାରୀ ଜୀବନର ଯଥାର୍ଥତାକୁ ସୂଚିତ କରେ । "କୌଣସି କାଳେ କୌଣସି ନାରୀର ଏକ ସମୟରେ ଏକାଧିକ ପତିର ବିଧାନ କର ନାହିଁ । ନିଜକୁ ଅବିଭକ୍ତ ରଖି ବିଭକ୍ତ ହୋଇଯିବାର ଦୁଃଖ ମୁଁ ଜାଣେ । ଦୟାମୟ କୃଷ୍ଣ ! ଶତ୍ରୁକୁ ମଧ୍ୟ ପୁତ୍ରଶୋକ ଦିଅନାହିଁ । ପୁତ୍ରଶୋକ ଠାରୁ ବଳି ଶୋକ ସଂସାରରେ ଆଉ କିଛି ନାହିଁ । ମୋ ଠାରୁ ସେ କଥା ବେଶି କିଏ ଜାଣେ ! ସଭାଗୃହରେ ମୋର ଯେଉଁ ନିର୍ଯ୍ୟାତନା ହେଲା, ସେ ନିର୍ଯ୍ୟାତନା ପୃଥିବୀର ଅନ୍ୟ କୌଣସି ନାରୀ ଉପରେ ନ ହେଉ । ନାରୀକୁ ରୂମମୟୀକର, ପୁରୁଷକୁ କାମୁକ କର ନାହିଁ । (ପୃ-୪୪୮ 'ଯାଜ୍ଞସେନୀ'ର ଦ୍ରୌପଦୀର ମନୋଭାବକୁ ବିଶ୍ଳେଷଣ କଲେ, ଦ୍ରୌପଦୀକୁ ପୂର୍ଣ୍ଣାଙ୍ଗ ନାରୀ ଭାବେ ଗ୍ରହଣ କରାଯାଏ, ଯିଏ ନିଜର ଆତ୍ମମର୍ଯ୍ୟାଦା ରକ୍ଷା ପାଇଁ ଅହରହ ସଂଗ୍ରାମ କରିଛି, ମାତୃତ୍ୱବୋଧର ସମ୍ମାନ ଓ ସ୍ୱାଧିକାର ପାଇଁ ଯାହାର ହୃଦୟ ବିଚଳିତ ହୋଇଛି, ନାରୀର ବ୍ୟକ୍ତି-ସତ୍ତା ପ୍ରତିଷ୍ଠାପାଇଁ ପୁରୁଷତନ୍ତ୍ର ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି ।

ପ୍ରତିଭାରାୟଙ୍କ ପରି ରୋଜାଲି ନନ୍ଦ, 'କର୍ଣ୍ଣ' (୧୯୯୮), 'ଉର୍ମିଳା' (୧୯୯୧) ନାମକ ଦୁଇଟି ମିଥ୍‌ଧର୍ମୀ  ଉପନ୍ୟାସ ରଚନା କରିଛନ୍ତି । କର୍ଣ୍ଣପରି ସାଂପ୍ରତିକ ସମାଜରେ ଅବୈଧ ସଂତାନ କିପରି ନିଜ ସ୍ଥିତି ପ୍ରତି ଘୃଣ୍ୟ ମନୋଭାବ ପୋଷଣ କରିଛି ତାହା



Source: Author, Digitized by PPRACHIN, SOA

'କର୍ଣ୍ଣ' ଉପନ୍ୟାସ ଚିତ୍ରିତ । କ୍ଷଣିକ ଉତ୍ତୋଳନରେ କର୍ଣ୍ଣଙ୍କୁ ଜନ୍ମଦେଇ ସାମାଜିକ ନୀତିନିୟମ ଭୟରେ ତା'ର ପରିଚୟକୁ ଗୋପନ ରଖିବା ହେତୁ କୁନ୍ତୀଙ୍କ ଅସହାୟ ମାତୃତ୍ୱବୋଧଟି ଦୁଃଖ ଏବଂ ଗ୍ଲାନିରେ ମ୍ରିୟମାଣ ହୋଇ ପଡିଛି । କର୍ଣ୍ଣର ସମାନ୍ତରାଳ ଚରିତ୍ର ଭରତ ହୋଇଛି ସମାଜର ଅବାଂଛିତ ପୁରୁଷ । କୁନ୍ତୀଙ୍କ ପରି ସମାଜରେ ସ୍ୱୀକୃତି ପାଉନଥିବା ମାତୃତ୍ୱର ଜୀବନ ଧାରଣକୁ ସମାଲୋଚନାକରି ଭରତ କହିଛି, "ଏଭଳି ଅବାଂଛିତ ସୃଷ୍ଟିକୁ ଜନ୍ମଦେଇଥିବା ଜନନୀ କେଉଁଠି ଆତ୍ମଗୋପନ କରିଛି । ହୁଏତ ପୁନଶ୍ଚ ଅପାପ ବିଦ୍ଧା ହୋଇ କେଉଁ ଗୃହାଙ୍ଗନରେ ବଧୂର ଅଭିନୟ କରୁଛି । ଅନ୍ୟ ସଂତାନମାନଂକୁ ଜନ୍ମଦେଇ ମାତୃତ୍ୱ ଗର୍ବରେ ପୁଲକିତ ହେଉଥିବ । ଏ ସମାଜରେ ମାତାମାନେ ଗୋଟିଏ ଗୋଟିଏ କୁନ୍ତୀ । ସେମାନଙ୍କୁ ମୁଁ ଘୃଣା କରେ । କାରଣ ସେମାନେ ଜଣେ ଜଣେ ଅସମାପିକା ପ୍ରିୟ । ପ୍ରତ୍ୟେକ ନାରୀଙ୍କ ଜୀବନ ଏକ ଅମୀମାଂସିତ ଉପପାଦ୍ୟ ।" (ପୃ-୨) ତେବେ ଏହି ଉପସ୍ଥିତି ପାଇଁ ଦାୟୀ ଥିବା ସମାଜ ଏବଂ ପୁରୁଷ ଜାତିକୁ ବିଦ୍ରୂପ କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ ଭରତ । ମାତୃତ୍ୱର ଅଧିକାର ନାରୀ ଉପରେ ନିର୍ଭର କରିବା ଉଚିତ ପୁରୁଷ କିମ୍ବା ପୁରୁଷତନ୍ତ୍ର ସମାଜ ଦ୍ୱାରା ନିୟନ୍ତ୍ରିତ ହେବା ଅନୁଚିତ୍ । ଯାହାଫଳରେ ନାରୀ ନିଜ ସନ୍ତାନକୁ ବିନା ସଂକୋଚରେ ପୃଥିବୀ ପୃଷ୍ଠରେ ଅବତରଣ କରାଇ ତାକୁ ସ୍ୱୀକୃତି ଦେଇପାରିବ । କିନ୍ତୁ ଏହି ଅଧିକାର ବୋଧଟି ସମାଜ ଦ୍ୱାରା ସ୍ୱୀକୃତ ନହେବାରୁ କର୍ଣ୍ଣପରି ଶହ ଶହ ଅବାଂଛିତ ସନ୍ତାନ ଜନ୍ମହୋଇ ପିତୃମାତୃ ପରିଚୟରୁ ବଂଚିତ ହୋଇ ଏକ ନୈରାଶ୍ୟ ତଥା ଅବହେଳିତ ଜୀବନଯାପନ କରୁଛନ୍ତି, ଯାହା କେବଳ ସୁସ୍ଥ ସମାଜ ଗଠନରେ ସହାୟକ ନୁହେଁ ପରନ୍ତୁ ମାନବିକ ଅଧିକାରର ସୁରକ୍ଷା ଦେଇପାରେ ନାହିଁ । ଏହି ସନ୍ତାନ ଜନ୍ମଦେବାରେ ପୁରୁଷ ଅପେକ୍ଷା ନାରୀ ଅଧିକ ନିନ୍ଦିତ ହେବା ସହିତ ସମାଜରେ ଏକ ପ୍ରକାର ବାସନ୍ଦ ଜୀବନ ଯାପନ କରିଥାଏ । ଏ ପ୍ରକାର ଲିଙ୍ଗ ରାଜନୀତିରେ ପୁରୁଷ ନାରୀକୁ ନିଜ ଅଧିକାର ବଳୟ ଭିତରେ ସୀମାବଦ୍ଧ କରେ, ମାତୃତ୍ୱ ଉପରେ କଟଜଣା ଜାରିକରେ, ନାରୀର ଭୁଲ୍ ପୁରୁଷ ଆଖିରେ ବଡ଼ ହୋଇ ଦିଶେ । ଅବୈଧ ସନ୍ତାନକୁ ଜନ୍ମଦେବା ନାରୀ ପାଇଁ ଏକ ଅକ୍ଷମଣୀୟ ଅପରାଧ ଭାବେ ପୁରୁଷ ସମାଜ ବିବେଚନା କରେ । "He believes he is God, he wants to be God; and this because he is male, because he is 'superior man', because he is motherlant. (ବେଭୋର, ପୃ-୨୩୦) ପୁରୁଷର ଏହି ଲିଙ୍ଗରାଜନୀତିକୁ ପ୍ରତିହତ କରିବାପାଇଁ ଏବଂ କର୍ଣ୍ଣ ପରି ସାଂପ୍ରତିକ ସମାଜରେ ଅବାଂଛିତ ସନ୍ତାନକୁ ମାତୃତ୍ୱର ପରିଚୟ ଦେବାପାଇଁ ଲେଖିକା ଭରତ ଚରିତ୍ର ମାଧ୍ୟମରେ କୁନ୍ତୀଙ୍କ ସପକ୍ଷରେ ଯୁକ୍ତିବାଢ଼ିବା ସହିତ କୁନ୍ତୀ ମନରେ ବିଦ୍ରୋହ ସୃଷ୍ଟି କରିଛି । କର୍ଣ୍ଣ ଏଠାରେ ମୁଖ୍ୟ ଚରିତ୍ର ହୋଇପାରେ କିନ୍ତୁ ମାତୃତ୍ୱର ଅଧିକାର ଏହାର ମୁଖ୍ୟ ବକ୍ତବ୍ୟ ।



Source: Author, Digitized by PPRACHIN, SOA

ଅଦ୍ୟାବଧି ଅନାଲୋଚିତ ଉର୍ମିଳାଙ୍କ ଜୀବନ ଚର୍ଯ୍ୟାକୁ ଆଧୁନିକ ନାରୀ ଦୃଷ୍ଟିରେ ବିଶ୍ଳେଷଣ କରିଛନ୍ତି ରୋଜାଲୀ ନନ୍ଦ । ପୁରୁଷଙ୍କ ନିମନ୍ତେ ଉଦ୍ଦିଷ୍ଟ ତର୍କଶାସ୍ତ୍ର, ରାଜନୀତି, ଦର୍ଶନ, ଯୁଦ୍ଧ ପ୍ରଭୃତି ବିଦ୍ୟାକୁ ଅକ୍ଳେଶରେ ଆୟତ କରିଛି ଉର୍ମିଳା । ବିବାହ ପ୍ରତି ବୀତସ୍ପୃହ ଉର୍ମିଳା, ସ୍ୱୟମ୍ବର ସମ୍ବାଦ ଶୁଣି ରୂପବତୀ ସତୀ ଅହଲ୍ୟାଙ୍କ ଜୀବନ ବୃତ୍ତାନ୍ତ ତା'ର ମନେ ପଡିଛି । ନାରୀର ରୂପ ପ୍ରତି ପୁରୁଷର ବୀଭତ୍ସ କାମନାକାରୀ ଜୀବନରେ ଦୁଃଖ ଏବଂ ଯନ୍ତ୍ରଣା ଆଣିଥାଏ । "ରୂପବତୀ ଭାବରେ ଜନ୍ମନେବା କ'ଣ ନାରୀ ପାଇଁ ଏକ ଅଭିଶାପ ?" ପୁରୁଷର ସନ୍ଦେହୀମନ ନାରୀର ପ୍ରକୃତି ସ୍ୱରୂପକୁ ଆବିଷ୍କାର କରିପାରେ ନାହିଁ । ସେଥିପାଇଁ ସେ କଷ୍ଟ ପାଏ ଏବଂ ନାରୀକୁ କଷ୍ଟ ଦିଏ ନିଜ ଯନ୍ତ୍ରଣାର ଉପଶମ ପାଇଁ । ନାରୀର ସ୍ୱାଧୀନତା ଏବଂ ଜୀବନ ଚର୍ଯ୍ୟା ପୁରୁଷ ଦ୍ୱାରା ନିୟନ୍ତ୍ରିତ । ପୁରୁଷ - ନିୟନ୍ତ୍ରିତ ସମାଜରେ ତା'ର ବ୍ୟକ୍ତିସତ୍ତା ସଂପୂର୍ଣ୍ଣ ଲୋପ ପାଇଥାଏ । ନାରୀର ଏହି ଜୀବନ ଶୈଳୀକୁ ବିଶ୍ଳେଷଣ କରି ଉର୍ମିଳା କୁହେ, "ନାରୀ ତା ଜୀବନରେ ତିନୋଟି ପୁରୁଷର ଆଶ୍ରାରେ ବଢ଼ିଥାଏ । ବାଲ୍ୟ ଅବସ୍ଥାରେ ପିତା, ପତ୍ନୀ ଭାବରେ ସ୍ୱାମୀର ଓ ଜନନୀ ଭାବେ ପୁତ୍ରର ଆଶ୍ରା । ନାରୀ ତିନୋଟି ସ୍ଥାନରେ ସ୍ୱାଧୀନତା ପାଏ । ରନ୍ଧନଶାଳା, ଶୟନକକ୍ଷ ଏବଂ ପୂଜାଗୃହରେ । ନାରୀର ଚାରୋଟି ରୂପ କନ୍ୟା, ବଧୂ, ପତ୍ନୀ ଓ ଜନନୀ । ଏହି ରୂପରେ ସେ ତା'ର କୌଣସି ସଂଜ୍ଞା, ପରିଚୟ ନାହିଁ । ନିଜସ୍ୱ ପୃଥିବୀଟିଏ ମଧ୍ୟ ନାହିଁ ।" (ପୃ-୫୮) ବିବାହ ପରେ ଉର୍ମିଳା ପତିସ୍ନେହରୁ ବଂଚିତା / ଲକ୍ଷ୍ମଣଙ୍କ ତ୍ୟାଗ ପୂତ ଜୀବନ ନିକଟରେ ଉର୍ମିଳାର ନାରୀ ମନ ଓ ହୃଦୟର କାମନା ତୁଚ୍ଛ ହୋଇପଡ଼ିଛି । ସହନଶୀଳ ଏବଂ ଉତ୍ସର୍ଗୀକୃତ ପତ୍ନୀ ଜୀବନର ଦ୍ୱାହି ଭିତରେ ଏକ ସାଧାରଣ ନାରୀର ଆର୍ତ୍ତଚିତ୍କାର ଶୁଣାଯାଇଛି, "ମୁଁ ଦେବୀ ନୁହେଁ । ରକ୍ତ ମାଂସରୁ ସୃଷ୍ଟି ଏକ ସାଧାରଣ ମାନବୀ । ପ୍ରସ୍ତର ଖୋଦିତ ପ୍ରତିମା ହୋଇଥିଲେ ଏ ସବୁ ଯନ୍ତ୍ରଣା ଅନୁଭବ କରିପାରନ୍ତି ନାହିଁ; ମାତ୍ର ମୁଁ ମର୍ତ୍ତ୍ୟର ଜଣେ ସାଧାରଣ ନାରୀ । ମୋ'ର ହୃଦୟ ଅଛି, ପ୍ରାଣ ଅଛି, ସ୍ପନ୍ଦନ ଅଛି ।"(ପୃ-୧୨୧) ଦେବୀ ପଦକୁ ଅସ୍ୱୀକାର କରିବା ସହିତ ପତ୍ନୀପ୍ରତି ପତିର ଦାୟିତ୍ୱବୋଧ ସଂପର୍କରେ ସୂଚନା ଦେଇଛି । ପୁରୁଷର ଏହ ମନୋବୃତ୍ତି ଏବଂ ଏକ ଉପେକ୍ଷିତ ଜୀବନ ନିର୍ବାହ କରୁଥିବା ନାରୀର ମନସ୍ତତ୍ତ୍ୱ, 'ଉର୍ମିଳା' ଉପନ୍ୟାସରେ ବର୍ଣ୍ଣିତ ।

ଭାରତର ଭକ୍ତି ପରଂପରାରେ ସମସ୍ତ ଜାଗତିକ ସୁଖ ଓ ବନ୍ଧନରୁ ବିଚ୍ଛିନ୍ନ ହୋଇ ନିଜକୁ ଭଗବାନଙ୍କ ସେବିକା ବୋଲି ଭାବି, ମନ୍ଦିରରେ ଥିବା ଦେବଦାସୀ ରାଜା ତଥା ସାମନ୍ତମାନଙ୍କ ବୀଭତ୍ସ ଯୌନ ସଂଭୋଗରେ ଶିକାର ହୋଇଛନ୍ତି । ପୁରୀ ଜଗନ୍ନାଥ ମନ୍ଦିରରେ ଥିବା ଏହି ଦେବଦାସୀମାନଙ୍କ କ୍ଳାନ୍ତିକର ଜୀବନର ମାର୍ମିକ ଚିତ୍ର ପ୍ରକାଶ ପାଇଛି ବିଜୟିନୀ ଦାସଙ୍କ 'ଦେବଦାସୀ' ଉପନ୍ୟାସରେ । ଭଗବତ୍-ଭାବନାରେ ନିଜକୁ ତଲ୍ଲୀନ କରି ସମଗ୍ର ଜୀବନକୁ ଉତ୍ସର୍ଗୀକୃତ କରିଥିବା ଦେବଦାସୀ ମୁକ୍ତାମାହାରୀ ମନରେ ଜାଗତିକ ଜୀବନ ଓ



Source: Author, Digitized by PPRACHIN, SOA

ଦେବଦାସୀ ଜୀବନ ମଧ୍ୟରେ ବହୁବାର ସଂଘର୍ଷ ଘଟିଛି । ପରିଶେଷରେ ଜାଗତିକ ଜୀବନର ବାସ୍ତବତା ବିଜୟ ହୋଇଛି, ଯେଉଁଥିପାଇଁ ବୃନ୍ଦାର ମାତୃତ୍ୱକୁ ସ୍ୱୀକାର କରି କହିଛି, "ମଣିଷ ପାଇଁ ଈଶ୍ୱର ପ୍ରାପ୍ତିର ଏହି ଚୂଡ଼ାନ୍ତ ଯୋଗାବସ୍ଥା ଯଦି ପାପ ହୁଏ, ତେବେ ବୃନ୍ଦା ବାରଂବାର ସେହି ଭୁଲ୍ କରିବ ।"(ପୃ-୩୯) ମନ୍ଦିରର ଅନ୍ଧାରୀ ଇଲାକାରେ ଚାଲିଥିବା କାର୍ଯ୍ୟପ୍ରତି ସେ ସର୍ବଦା ବିମୁଖ । ତତ୍‌କାଳୀନ ଓଡ଼ିଶାର କୃଷକ ଆନ୍ଦୋଳନର ପ୍ରବକ୍ତା ନରୋତ୍ତମ ଭୂଇଁମଲଙ୍କୁ ନିଜ ଗୃହରେ ସ୍ଥାନଦେଇ ମୁକ୍ତା ଜାତୀୟତା ବୋଧର ପରିଚୟ ଦେଇଛି । ଦେଶ ସେବା ଓ ଭଗବତ୍ ଆରାଧନାରେ ସେ ଯେପରି ନିଜକୁ ଉତ୍ସର୍ଗ କରିଛି ସେହିପରି ପାଳିତା କନ୍ୟା ମାୟାକୁ ଦେବଦାସୀତ୍ୱରୁ ମୁକ୍ତକରି ସାଂସାରିକ ଜୀବନଯାପନ ଏବଂ ନାରୀ କଲ୍ୟାଣ ପାଇଁ ପ୍ରବର୍ତ୍ତାଇଛି । କାରଣ ସେ ଦେଖିପାରିଛି, ଭବିଷ୍ୟତରେ ଶ୍ରୀମନ୍ଦିରର ରକ୍ଷକମାନଙ୍କ ଦ୍ୱାରା ଏହି ସଂପ୍ରଦାୟଟି ରୂପଜୀବୀ ଓ ରାଜନର୍ତ୍ତକୀରେ ରୂପାନ୍ତରିତ ହେବାର ସମସ୍ତ ଲକ୍ଷଣମାନ । ସେହି ଦୂରଦର୍ଶିତାର ପ୍ରଥମ ଫଳପ୍ରସୂ ନିଦର୍ଶନ ହୋଇଛି ମାୟା । ଠାକୁରଙ୍କ ସେବାପରେ ଚଳନ୍ତିଠାକୁର (ରାଜା)ଙ୍କ ସେବାରେ ମାୟାକୁ ନିୟୋଜିତ କରିବା ପାଇଁ ଯମୁନାବାଈ, ମୀନା ନାହାକଙ୍କ ପ୍ରଚେଷ୍ଟା ଫଳବତୀ ନହେବାରୁ ଗଜପତିଙ୍କ କାକା (ବାଣପୁରର ସାମନ୍ତ ରାଜା) ଦ୍ୱାରା ମାୟା ଧର୍ଷିତା ହୋଇଥିଲା । ସେହି ଅବାଞ୍ଛିତ ଘଟଣାର ପ୍ରତ୍ୟକ୍ଷ ଅନୁଭୂତି ପରେ ମାୟା ମନରେ ବିପ୍ଳବ ସୃଷ୍ଟି ହୋଇଛି, "ସେ ବିପ୍ଳବ ପାରଂପରିକ ଦେବଦାସୀ ବିରୁଦ୍ଧରେ, ସେ ବିଦ୍ରୋହ ଧର୍ମନାମରେ ଧର୍ମ ପୂଜାହାରୀମାନଙ୍କର ପାପାଚାରର ବିରୁଦ୍ଧରେ, ସେ ଅଭିଯୋଗ ଅନୁଯୋଗ ନାରୀତ୍ୱର ଚରମ ଲାଞ୍ଛନା ବିରୁଦ୍ଧରେ ।" (ପୃ-୨୨୯) ତା'ମନର ଏହି ପରିବର୍ତ୍ତନ ତାକୁ ଆଇନଜ୍ଞ ମୁକ୍ତା ବୋଷରେ ପରିଣତ କରିଛି । ମୁକ୍ତାମାହାରୀର ପ୍ରେରଣାରେ ଆଇନଜ୍ଞ ଆଦିତ୍ୟ ବୋଷକୁ ବିବାହ କରି ନାରୀ ଜାତିର ପ୍ରଗତି ନିମନ୍ତେ କାର୍ଯ୍ୟ କରିଛି ମାୟା ।" ସେ ଅନୁଭବ କରିଥିଲା ଯେତେଦିନ ଯାଏ ନାରୀ, ଶିକ୍ଷାର ଆଲୋକରୁ ଦୂରେଇ ରହିଥିବ ସେତେଦିନ ଯାଏ ସେ ଏହିପରି ଭାବରେ ନିର୍ଯ୍ୟାତିତ ହେଉଥିବା ସ୍ୱାମୀ ଦ୍ୱାରା, ସମାଜ ଦ୍ୱାରା ବା ସମାଜ ପତିମାନଙ୍କ ଦ୍ୱାରା । ନାରୀ ସ୍ୱାବଲମ୍ବନଶୀଳ ନ ହେଲେ ଏ ପୁରୁଷ ଜାତି ତାକୁ କ୍ରୀଡ଼ା ପୁତ୍ତଳିକା କରି ରଖିଥିବ ଚିରଦିନ ।"(ପୃ-୨୩୧) କେବଳ ଓଡ଼ିଶା ନୁହେଁ ସମଗ୍ର ଭାରତର ପ୍ରସିଦ୍ଧ ମନ୍ଦିରମାନଙ୍କରେ ଏହି ଦେବଦାସୀ ପ୍ରଥାଟି ରହିଥିଲା । କିନ୍ତୁ, "ସେଇ ପବିତ୍ର ଦେବ ଭୋଗ୍ୟା ହେଲା ଗଣ ଭୋଗ୍ୟା ଗଣିକା । ରୀତିମତ ଧର୍ମନାମରେ Sexual exploitation ।"(ପୃ-୨୨୯) ଧର୍ମ ନାମରେ ନାରୀକୁ ଅବଦମିତ କରିବା ପାଇଁ ପୁରୁଷର ଯୌନାଚାର ବିରୁଦ୍ଧରେ ଲେଖିକାଙ୍କ ବକ୍ତବ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ପ୍ରଥା ବିରୁଦ୍ଧରେ ଦକ୍ଷିଣ ଭାରତରେ ପ୍ରଥମେ ଜନ ସଚେତନତା ସୃଷ୍ଟି ହୋଇଛି ଏବଂ ଏହାର ପ୍ରଭାବ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଅନୁଭୂତ ହୋଇଛି ।



Source: Author, Digitized by PPRACHIN, SOA

ପୁରାଣ, କିମ୍ବଦନ୍ତୀ ତଥା ପାରଂପରିକ ପ୍ରଥା ମଧ୍ୟରେ ଥିବା ନାରୀର ଜୀବନ ଚର୍ଯ୍ୟାଙ୍କୁ ଲେଖିକା ଯେପରି ବିଶ୍ଳେଷଣ କରିଛି ସେହିପରି ଇତିହାସ ପୃଷ୍ଠାରେ ବର୍ଣ୍ଣିତ ନାରୀର ଜୀବନ-ଦୃଷ୍ଟିକୁ ଉପନ୍ୟାସରେ ଚିତ୍ରିତ କରିଛି । ଐତିହାସିକମାନବୀର ମୋହର ଲଗାଇଥିବା ସତ୍ତ୍ୱେ ନାରୀ ଜୀବନ ଇତିହାସର ବାସ୍ତବ ଅନୁଭୂତିକୁ ପ୍ରକାଶ କରିନାହିଁ ଲେଖକ । ନାରୀର ମନ ଅପେକ୍ଷା ସୌନ୍ଦର୍ଯ୍ୟ ଓ ଯୌନଚିତ୍ତର ପ୍ରବଣତାକୁ ଗୁରୁତ୍ୱ ଦେଇଛି । ଇତିହାସ ଲେଖିଛି ଲେଖକ ତେଣୁ ତା' ଦୃଷ୍ଟିରେ ଇତିହାସର ସୃଷ୍ଟିକର୍ତ୍ତା ; ନାରୀ ନୁହେଁ ପୁରୁଷ । ଇତିହାସରେ ପୁରୁଷର ଭୂମିକାକୁ ଗୁରୁତ୍ୱଦେବା ହେତୁ ଇତିହାସ ପୃଷ୍ଠାରେ ଅଦ୍ୟାବଧି କେବଳ ଉପଲ୍ୟଟିଏ ହୋଇପଡିରହିଛି । ଓଡ଼ିଆ ଐତିହାସିକ ଉପନ୍ୟାସ ରଚନାର ପ୍ରଥମ ଲେଖିକା ଶାନ୍ତିମହାପାତ୍ରଙ୍କ "ବୁଦ୍ଧଂଶରଣଂ ଗଚ୍ଛାମି" (୧୯୬୮) ଇତିହାସର କଙ୍କାଳ ଭିତରେ ଜୀବନ୍ତ ହୋଇଥିବା ନଗରବଧୂ ଆମ୍ରପଲ୍ଲୀର ଯନ୍ତ୍ରଣାକ୍ଲିଷ୍ଟ ଜୀବନ ଯାତ୍ରା ଉପରେ ପର୍ଯ୍ୟବସିତ । ରାଜ୍ୟର ସାଧାରଣ ଜନତାଠାରୁ ରାଜକର୍ମଚାରୀ ଏବଂ ତଥା କଥିତ ବୁଦ୍ଧିଜୀବୀମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଆମ୍ରପଲ୍ଲୀର ରୂପ ସୌନ୍ଦର୍ଯ୍ୟକୁ ! ଉପଭୋଗ କରିବା ପାଇଁ ପ୍ରତିଯୋଗିତା କରିଛନ୍ତି । ରୂପ-ତୃଷ୍ଣାରେ ମତ୍ତ ପୁରୁଷ ସମାଜ ତାକୁ ଗଣଭୋଗ୍ୟାରେ ପରିଣତ କରିଛନ୍ତି । ପୁରୁଷର ଯୌନ କ୍ଷୁଧା ଏବଂ ପୁରୁଷ ସମାଜ ପ୍ରତି ଆମ୍ରପଲ୍ଲୀର କ୍ଷୁବ୍‌ଧ ମନୋଭାବ ଏହି ଉପନ୍ୟାସରେ ଚିତ୍ରିତ । ଶାନ୍ତିମହାପାତ୍ରଙ୍କ 'ନୁର୍ ଜାହାନ' ଏବଂ କଳ୍ପନାକୁମାରୀଙ୍କ 'ଆଗ୍ରାର ଆକାଶ ଲାଲ' ଉପନ୍ୟାସ ଦୁଇଟିର କଥାବସ୍ତୁ ସମାନ ଥିଲେ ମଧ୍ୟ ଶାନ୍ତି ମହାପାତ୍ର ଐତିହାସିକ ତଥ୍ୟ ଉପରେ ଗୁରୁତ୍ୱ ଦେଇଛନ୍ତି ଏବଂ କଳ୍ପନା କୁମାରୀ ତଥ୍ୟ ଅପେକ୍ଷା କଳ୍ପାର ସାହାଯ୍ୟ ନେଇ ମେହ୍ରୁନିସାର ଆବେଗାୟିତ ଜୀବନକୁ ବିଶ୍ଳେଷଣ କରିଛନ୍ତି । ମେହରୁନ୍ନସା (ପରବର୍ତ୍ତୀ ସମୟରେ ନୁରଜାହାନ୍ ଭାବେ ପରିଚିତ)ଙ୍କ ପ୍ରେମ, କ୍ଷମତା ଲିପ୍‌ସା, ଅହଂକାର ପ୍ରଭୃତି ଉପରେ ପର୍ଯ୍ୟବସିତ ଏହି ଦୁଇଟି ଉପନ୍ୟାସର ଭାବ-ବସ୍ତୁ । ଜାହାଙ୍ଗୀରଙ୍କ ଦୁର୍ବଳ ଅବସ୍ଥାରେ ନୁର୍‌ଜାହାନ ନିଜର ଶାହାଜାଦୀ କ୍ଷମତାକୁ ପ୍ରତିଷ୍ଠା କରିବାର ଚେଷ୍ଟା ଓ ଆକାଙ୍କ୍ଷା ଏହି ଉପନ୍ୟାସରେ ବର୍ଣ୍ଣିତ । ମିହରି କୁମାରୀ ମହାନ୍ତିଙ୍କ 'ହିରାବାଈ' ଉପନ୍ୟାସଟି ଆଉରଙ୍ଗଜେବ ଏବଂ ହୀରାବାଈଙ୍କ ପ୍ରେମ ଏବଂ ତତ୍‌କାଳୀନ ଭାରତୀୟ ରାଜନୈତିକ ସଂଘର୍ଷ ଉପରେ ପର୍ଯ୍ୟବସିତ । ସୁକାମିନୀ ନନ୍ଦଙ୍କ 'କୋୟେଲ'ରେ ମେହର, ମିର୍ଜାଗାଲିବ୍ ଏବଂ କୋୟେଲ ମଧ୍ୟରେ ପ୍ରେମର ତ୍ରିଭୁଜ ସଂପର୍କ ଭିତରେ ତିକ୍ତତା ଓ ଆନ୍ତରିକତା ପ୍ରକାଶ ପାଇଛି । ମେହେର ମିର୍ଜାଙ୍କୁ ବିବାହ କରିଛି କିନ୍ତୁ ମିର୍ଜା ଓ କୋୟେଲ ମଧ୍ୟରେ ଥିବା ଶାଶ୍ୱତ ପ୍ରେମଧାରାଟିକୁ ସେ ଅସ୍ୱୀକାର କରିପାରିନି । ସାରାଜୀବନ ପ୍ରେମକୁ ଆଧାର କରି ବଞ୍ଚିବାର ନାରୀ ମାନସିକତା କୋୟେଲଠାରେ ଲେଖିକା ପ୍ରତିପାଦିତ କରିଛନ୍ତି ।



Source: Author, Digitized by PPRACHIN, SOA

ତଥ୍ୟ ଓ ତତ୍ତ୍ୱ ଦୃଷ୍ଟିରୁ ଲେଖିକାଙ୍କ ଐତିହାସିକ ଉପନ୍ୟାସରେ ତ୍ରୁଟି ରହିଥିଲେ ମଧ୍ୟ ରହିଥିଲେ ସମାଜ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତିମାନଙ୍କ ହୀନ ଚକ୍ରାନ୍ତରେ ନାରୀ ହୃଦୟର ବିପନ୍ନ ପ୍ରେମ ଓ ବ୍ୟକ୍ତି-ସତ୍ତା ପ୍ରତିଷ୍ଠା ଏହାର ମୁଖ୍ୟ ଉପଜୀବ୍ୟ । ଲେଖକ ତା'ର ଐତିହାସିକ ଉପନ୍ୟାସରେ ଇତିହାସର ଶ୍ରେଷ୍ଠ ବୀର ପୁରୁଷ ଏବଂ ଘଟଣାବଳୀକୁ ଗୁରୁତ୍ୱ ଦେଇଥାଏ, କିନ୍ତୁ ଲେଖିକାର ଉପନ୍ୟାସରେ ଘଟଣାକୁ ଗୁରୁତ୍ୱଦିଆଯାଇନି ନାରୀ ଜୀବନ ଚର୍ଯ୍ୟା ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ଯେଉଁ ନାରୀ ଚରିତ୍ରକୁ ଗୁରୁତ୍ୱ ଦେଇନାହିଁ ଲେଖକ, ,ସେହି ନାରୀ ଚରିତ୍ରର ବିଶେଷତାକୁ ଉପଲବ୍ଧି କରିବା ପାଇଁ ଲେଖିକା ଏହି ଧରଣର ଉପନ୍ୟାସ ରଚନା କରିଛି । ନାରୀର ବ୍ୟକ୍ତି ଜୀବନର ଅନୁଭୂତିର ପ୍ରକାଶ ଏବଂ ଇତିହାସ ସେଇ ନାରୀକୁ କିପରି ମହିୟମସୀରେ ପରିଣତ କରିଛି ତା'ର ବିରୋଧ ପୂର୍ବକ ନାରୀକୁ ବିଭିନ୍ନ ମାଧ୍ୟମରେ ଅବଦମିତ କରୁଥିବା ପୁରୁଷର ମନୋଭାବକୁ ଲେଖିକା ପ୍ରକାଶ କରିଛି । ଏଠାରେ ଇତିହାସ ମୁଖ୍ୟ ନୁହେଁ, ଇତିହାସର କଂକାଳ ଉପରେ ବଂଚିରହିଥିବା ନାରୀର ବ୍ୟକ୍ତି-ସତ୍ତାକୁ ଆଧୁନିକ ମାନସିକତା ମାଧ୍ୟମରେ ବିଶ୍ଳେଷଣ କରାଯାଇଛି । ତେଣୁ ନାରୀର ବ୍ୟକ୍ତିମାନସ ହୋଇଛି ମୁଖ୍ୟ କେନ୍ଦ୍ରବିନ୍ଦୁ ଏବଂ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଚରିତ୍ର ବା ଘଟଣା କେବଳ ଆନୁସଂଗିକ ଭାବେ ଗ୍ରହଣ କରାଯାଇଛି ।

(୩)

ପାଶ୍ଚାତ୍ୟ ଲେଖିକାଙ୍କ ଉପନ୍ୟାସରେ ବହୁବିଧ ପରୀକ୍ଷା ନିରୀକ୍ଷା କରାଯାଉଛି । ସାଧାରଣତଃ ଉପନ୍ୟାସର ଭାବ-ବସ୍ତୁ କହିଲେ ଯାହା ଆମେ ବୁଝୁ ତା'ଠାରୁ ବିଚ୍ଛିନ୍ନ ହୋଇ କିଛି ନୂତନ କାଳ୍ପନିକ ତଥ୍ୟ ଓ ତତ୍ତ୍ୱ ପ୍ରୟୋଗ କରି ଭିନ୍ନ ଧରଣର ଉପନ୍ୟାସ ରଚନାରେ ପାଶ୍ଚାତ୍ୟ ଲେଖିକା ବ୍ରତୀ । ସେଗୁଡ଼ିକ ହେଲା Feminist science fiction, Feminist Fantasy, Feminist- Utopia, Feminist Detctive fiction, Feminist Romance (Feminist Fiction, Anne Oranny Francis, 1990) ଏହି ସବୁ ଉପନ୍ୟାସରେ ଅବାସ୍ତବ ତଥା ଅତିକଳ୍ପନା ସଂପର୍କିତ ବିଷୟବସ୍ତୁ ଅବତାରଣା ପଛରେ ଯେଉଁ କାରଣମାନ ଦେଖାଦେଇଛି ସେଥିମଧ୍ୟରୁ ମୁଖ୍ୟ ହେଉଛି ବହୁ ଯୁଗରୁ ଚଳିଆସୁଥିବା ପୁରୁଷ ତାନ୍ତ୍ରିକ ସମାଜ ଏବଂ ତତ୍ ସଂପର୍କିତ ବିଚାରଭୂମି ଯାହା ସାଂପ୍ରତିକ ସମାଜରେ ନାରୀକୁ ଅବଦମିତ କରି ରଖିବାରେ ସହାୟକ ହୋଇଛି । ଏଥି ସହିତ ପୁରୁଷର ପ୍ରଚଣ୍ଡ ଯୌନ ପ୍ରବୃତ୍ତି ହେତୁ ଗୃହୀ ତଥା ସାମାଜିକ ଜୀବନରେ ନାରୀ ସୁରକ୍ଷିତ ହେଉନାହିଁ ବୋଲି ଚିନ୍ତା କରିଥାଏ । ତା'ର ଏହି ଚିନ୍ତାଟିକୁ ପ୍ରଶମିତ କରିବାପାଇଁ ଏବଂ ଅନୁରୂପ ବାୟୁମଣ୍ଡଳ ନିମନ୍ତେ ସେ ସବୁର ଆବଶ୍ୟକତା ଉପନ୍ୟାସରେ ଦର୍ଶାଯାଇଛି । ତେଣୁ ପାଶ୍ଚାତ୍ୟ ନାରୀ କୈନ୍ଦ୍ରିକ ଭାବଧାରାଟି ଏହି ଜାତୀୟ ଉପନ୍ୟାସରେ ଦେଖିବାକୁ ମିଳେ । ଉପନ୍ୟାସରେ ବର୍ଣ୍ଣିତ ସମୟ, ପାତ୍ର, ପାତ୍ରୀ ଏବଂ ପରିବେଶ ବାସ୍ତବ ଦୁନିଆଠାରୁ ବିଚ୍ଛିନ୍ନ ହୋଇ ଗୋଟିଏ ନୂତନ ପୃଥିବୀର ଅନ୍ୱେଷଣ ଏବଂ ସେହି ପୃଥିବୀରେ ବାସକରୁଥିବା ନରନାରୀଙ୍କ ଭିତରେ



Source: Author, Digitized by PPRACHIN, SOA

ସୃଷ୍ଟି ହେଉଥିବା ନୂତନ ଚିନ୍ତା ଚେତନାର ପ୍ରକାଶ ଘଟିଛି – "So readers and writers are freed from the restrictions of a realist reading which tends to restrict representation to an intimation of contemporary social practice." (Feminist fiction, P-193) ଏହି ସବୁ ଉପନ୍ୟାସରେ ନାରୀ ଏବଂ ପୁରୁଷ ଚରିତ୍ରକୁ ସମାନ ଭାବେ ଚିତ୍ରଣ କରାଯାଇଥିଲେ ମଧ୍ୟ ନାରୀର ଚିନ୍ତାଧାରା ଓ କାର୍ଯ୍ୟକରିବାର ପ୍ରଣାଳୀକୁ ଅଧିକ ଗୁରୁତ୍ୱ ଦିଆଯିବା ସହିତ ନାରୀର ସ୍ୱାଧୀକାରବୋଧକୁ ସ୍ୱୀକୃତି ତଥା ସମ୍ମାନ ଜଣାଇବା ପାଇଁ ଅନୁରୂପ ପୁରୁଷ ଚରିତ୍ର ସୃଷ୍ଟି କରାଯାଇ ଏକ ସ୍ୱତନ୍ତ୍ର ପ୍ରଭାଗ (gener) ଗଠନ ନିମନ୍ତେ ଲେଖିକା ଉଦ୍ୟମ କରିଛି । ସମାଜରେ ଦେଖାଦେଉଥିବା ନାରୀ ନିର୍ଯ୍ୟାତନା, ଅସହାୟତା ବୋଧ ପ୍ରଭୃତି ପାରଂପରିକ ବାମାବାଦୀ ସ୍ୱର ଏଥିରେ ଦେଖାଦେଇନାହିଁ । ଯୌନ ପ୍ରବୃତ୍ତିକୁ ନାରୀ ନିଜ ଅଧୀନରେ ରଖିବା କମ୍ୱା ଏହାର ସ୍ଥିତିକୁ ସଂପୂର୍ଣ୍ଣ ବିଲୁପ୍ତ ନାରୀ ନିଜ ଅଧୀନରେ ରଖିବା କିମ୍ବା ଏହାର ସ୍ଥିତିକୁ ସଂପୂର୍ଣ୍ଣ ବିଲୁପ୍ତ କରି ଯୌନ ଜୀବନ ହୀନ ସମାଜ ଗଠନ ନିମନ୍ତେ ଏହି ଧରଣର ଉପନ୍ୟାସରେ ଲେଖିକା ଅନୁରୂପ ଚରିତ୍ର ସୃଷ୍ଟି କରିଛି । ବିଶେଷ କରି ବିଜ୍ଞାନ ଭିତ୍ତିକ ଉପନ୍ୟାସରେ ଏହାକୁ ଗୁରୁତ୍ୱ ଦିଆଯାଇଛି ।

ବିଜ୍ଞାନର ମୂଳସୂତ୍ରକୁ ଆଧାର କରି ଲେଖାଯାଉଥିବା ଉପନ୍ୟାସ ଏବଂ ବିଜ୍ଞାନକୁ ଅତିକଳ୍ପନା ସ୍ତରକୁ ନେଇ ଲେଖାଯାଉଥିବା ଉପନ୍ୟାସ ମଧ୍ୟରେ ଅନେକ ତଫାତ୍ ଦେଖିବାକୁ ମିଳେ । ପ୍ରଥମ ଧରଣର ଉପନ୍ୟାସର ମୂଳ ଲକ୍ଷ୍ୟ ହେଉଛି, ଉଦ୍ଭାବିତ ବୈଜ୍ଞାନିକ ସିଦ୍ଧାନ୍ତକୁ ସରଳ ଭାବେ ବୁଝାଇ ସାଧାରଣ ଲୋକଙ୍କ ମଧ୍ୟରେ ପରିଚିତ କରାଇବା ଏବଂ ଦ୍ୱିତୀୟଟି ହେଉଛି ଅସ୍ୱାଭାବିକ ଅନୁଭବକୁ ବିଜ୍ଞାନର ଛଟା ମାଧ୍ୟମରେ ପ୍ରକାଶ କରିବା । ପାଶ୍ଚାତ୍ୟ ଉପନ୍ୟାସରେ ଏହି ଦ୍ୱିତୀୟ ପ୍ରକାର ଶୈଳୀ, ଲେଖିକା ଦ୍ୱାରା ବେଶ୍ ଆଦୃତ । ଲେଖିକାଙ୍କ ଏପରି ଉପନ୍ୟାସ ରଚନା ପଛରେ ରହିଛି ଏକ ପ୍ରକାର ବିଚ୍ଛିନ୍ନତା ବୋଧ । ପୁରୁଷ ଯେତେ ଆଦର୍ଶବାଦୀ ହୁଅନ୍ତୁନା କାହିଁକି ବାସ୍ତବ କ୍ଷେତ୍ରରେ ନାରୀକୁ ଦ୍ୱିତୀୟ ଶ୍ରେଣୀ ମଣିଷ ଭାବେ ଦେଖିବାକୁ ଚାହେଁ । ନାରୀ ପ୍ରତି ପୁରୁଷର ଦୃଷ୍ଟିଭଙ୍ଗୀ ଯୌନ ବିଚାର ଉପରେ ପର୍ଯ୍ୟବସିତ ହେଉଥିବାରୁ ନାରୀ ଗୋଟିଏ ଯୌନ ଉପାଦାନ ଭାବେ ଗୃହୀତ ହୋଇଥାଏ । ତେଣୁ ଏହି ପୁରୁଷ ଶାସିତ ସମାଜରେ ନାରୀ ସ୍ୱେଚ୍ଛାରେ ଜୀବନ ନିର୍ବାହ କରିପାରେ ନାହିଁ । ନାରୀ ପାଇଁ ବଂଚିବାର ପୃଥିବୀଟି କ୍ରମଶଃ ସଂକୁଚିତ ହୋଇପଡୁଥିବାରୁ ସେ ଭିନ୍ନ ଏକ ଜଗତର ଅପ୍ରତ୍ୟାଶିତ ଜୀବନ ଧାରା ପ୍ରତି ଆକୃଷ୍ଟ ହୋଇପଡ଼େ । ଲେଖିକାଙ୍କ ବିଜ୍ଞାନ ଭିତ୍ତିକ ଉପନ୍ୟାସରେ ଏହି ସବୁ ଭାବଧାରା ସନ୍ନିବେଷ୍ଟିତ । ଟିପ୍‌ଟ୍ରେଙ୍କ: 'The women men Donot see'. (1975) ଉପନ୍ୟାସରେ, ପୃଥିବୀକୁ ତ୍ୟାଗ କରି ରଥ୍ ପାର୍‌ସନ୍‌ସ, ଆଲ୍‌ଥିଆ ଏବଂ ଫେଟ୍‌ନମ ଅନ୍ୟ ଏକ ଗ୍ରହରେ ରହିବା ପାଇଁ ବାହାରିଛନ୍ତି, ଯେଉଁଠି ପୁରୁଷ ଏବଂ ନାରୀ ଭିତରେ ଥିବା ଯୌନ ସଂବନ୍ଧଟି ସଂପୂର୍ଣ୍ଣ ରୂପେ ଲୋପ ପାଇଛି । "In rejecting



Source: Author, Digitized by PPRACHIN, SOA

entirely the sexist ideology of their own society they are of necessity. forging totally new identities which will not be legitimated by patrichal order" ( Feminist fiction, 37) ଲିଙ୍ଗଭେଦ ବାଛବିଚାରକୁ ଏଡ଼ାଇ ଏକ ନୂତନ ଅପ୍ରତ୍ୟାଶିତ ପୃଥିବୀରେ ବାସିନ୍ଦାର ପରିକଳ୍ପନା କରିବା ଏବଂ ପୁରୁଷତନ୍ତ୍ର ସମାଜପ୍ରତି ବିମୁଖ ଦୃଷ୍ଟିଭଙ୍ଗୀ ଏହି ଜାତୀୟ ଉପନ୍ୟାସର ମୁଖ୍ୟ ବକ୍ତବ୍ୟ । ତେଣୁ ଏଥିରେ, "All the certainties of life were being questioned : class positions and class loyality, the roles of women & men in society,the nature of God, the nature of self." (Feminist fiction, P-39) ପ୍ରବୃତ୍ତିକୁ ବିଶ୍ଲେଷଣ କରାଯାଇଛି । ଏତଦ୍ ବ୍ୟତୀତ "Science fiction is to challenge the conventions of 'Past-literature' which palce woemen or female characters in unremarkable roles." (feminist fiction, P-43) ବିଜ୍ଞାନ ଭିତ୍ତିକ ଉପନ୍ୟାସରେ ଲେଖିକା ବିଶେଷ ଭାବେ ସନ୍ତାନ ଉତ୍ପାଦନ ପାଇଁ ଶାରୀରିକ ସମ୍ବନ୍ଧକୁ ଗୁରୁତ୍ୱନଦେଇ ଭିନ୍ନ ଉପାୟରେ ତା'ର ସମାଧାନ କରିଛି । ତେଣୁ ଏହି ଧରଣର ଉପନ୍ୟାସରେ ସମାଜକୁ ନାରୀ କିମ୍ବା ପୁରୁଷ କୈନ୍ଦ୍ରିକ ନକରି ମାତୃତ୍ୱର ସୁରକ୍ଷା ପାଇଁ ଲେଖିକା ଏକ ଉପସଂସ୍କୃତ ଗଠନରେ ପ୍ରୟାସୀ । ପାଶ୍ଚାତ୍ୟ ଉପନ୍ୟାସରେ ଲେଖିକା ଯେପରି ଏହି ଧରଣର ଉପନ୍ୟାସ ରଚନା କରି ଖ୍ୟାତି ଅର୍ଜନ କରିଛି, ଓଡ଼ିଆ ଉପନ୍ୟାସରେ ଲେଖିକା ସେପରି ସଫଳତା ପୂର୍ଣ୍ଣ ଉପନ୍ୟାସ ରଚନା କରିନଥିଲେ ମଧ କିଛିମାତ୍ରାରେ ସେହି ଭାବାଦର୍ଶକୁ ପ୍ରକାଶ କରିବାରେ ଉଦ୍ୟମ କରିଛି । ବୈଜ୍ଞାନିକ ସିଦ୍ଧାନ୍ତକୁ ଗୋଟିଏ ସରଳ କାହାଣୀ ମାଧମରେ ଉପନ୍ୟାସ ଭାବରେ ରଚନା କରି ଗୋକୁଳାନନ୍ଦ ଏକ ନୂତନ ପ୍ରାରମ୍ଭ ସୃଷ୍ଟି କରିଛନ୍ତି । ତାଙ୍କ ଉପନ୍ୟାସରେ ନାରୀ ଏବଂ ପୁରୁଷ ଗୁରୁତ୍ୱପୂର୍ଣ୍ଣ ନୁହେଁ, ବିଜ୍ଞାନ ହିଁ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ପ୍ରଜନନ କ୍ଷେତ୍ରରେ ଉଦ୍ଭାବିତ ବୈଜ୍ଞାନିକ ପ୍ରଣାଳୀକୁ ଆଧାର କରି, ଏହି ବିଜ୍ଞାନ ଭିତ୍ତିକ ଉପନ୍ୟାସ ରଚନା କରିବାରେ ପ୍ରତିଭାରାୟ ପ୍ରଥମ ଲେଖିକା । ପ୍ରଜନନ ବ୍ୟବସ୍ଥା ପ୍ରତି ଭାରତୀୟ ନାରୀ ଯେତେ ଉଦାସୀନ ହେଲେ ମଧ୍ୟ ମାତୃତ୍ୱ ପ୍ରତି ସର୍ବଦା ଦୁର୍ବଳତା ପ୍ରକାଶ କରିଛି, ଏହା ସ୍ୱତଃସ୍ଫୂର୍ତ୍ତ ଏବଂ ପ୍ରବୃତ୍ତି ବଶତଃ । ତେଣୁ ପ୍ରଜନନ କ୍ଷେତ୍ରରେ ନାରୀର ପ୍ରତ୍ୟକ୍ଷ ଭୂମିକା ଏବଂ ମାତୃତ୍ୱ ଲାଭର ପରିତୃପ୍ତି ଭାରତୀୟ ନାରୀକୁ ପାଶ୍ଚାତ୍ୟ ନାରୀ ଠାରୁ ପୃଥକ କରିଛି । ପାଶ୍ଚାତ୍ୟ ବୈଜ୍ଞାନିକ ଉପନ୍ୟସାରେ ଲେଖିକା ନିଜକୁ ସଂପୂର୍ଣ୍ଣ ରୂପେ ଜୀବବିଜ୍ଞାନ ଠାରୁ ଦୂରେଇଯିବା ନିମନ୍ତେ ଯେଉଁ ଚିନ୍ତାସବୁ ପ୍ରକଟ କରିଛି ପ୍ରତିଭାରାୟ ସେପରି କରିନାହାନ୍ତି । 'ଅରଣ୍ୟ' ଉପନ୍ୟାସରେ ମାତୃତ୍ୱର ଅଧିକାର ସ୍ପଷ୍ଟ । ବାଲ୍ୟାବସ୍ଥାରୁ ପୁରୁଷ ପ୍ରତି ସର୍ବଦା ଉଦାସୀନ ଲିପ୍ସା ପରିଶେଷରେ ବିବାହ କରିଛି ସିଦ୍ଧାର୍ଥକୁ । ସନ୍ତାନ ଜନ୍ମଦେବାରେ ସିଦ୍ଧାର୍ଥର ଅକ୍ଷମତା ଲିପ୍ସାକୁ ବିଚଳିତ କରିଛି । ମାତୃତ୍ୱ ଲାଭ ପାଇଁ ଲିପ୍ସାର ମାନସିକ ବିଚଳନକୁ ଡାକ୍ତର ବର୍ମା ଅନୁଭବ କରିଛନ୍ତି । କୃତ୍ରିମ ଶୁକ୍ରାଣୁ ପ୍ରୟୋଗ



Source: Author, Digitized by PPRACHIN, SOA

(Artificial insemination) ଫଳରେ ଲିପ୍‌ସା ମାତୃତ୍ୱର ଲାଭ କରିଛି । ଏଥିପାଇଁ ଲିପ୍‌ସାର ବନ୍ଧୁ ଅର୍ଣ୍ଣବର ଶୁକ୍ରାଣୁକୁ ଗୁପ୍ତରେ ବ୍ୟବହାର କରିଛନ୍ତି ଡାକ୍ତର ବର୍ମା । ପରମୁହୂର୍ତ୍ତରେ ଏସବୁ ତଥ୍ୟ ଜଣା ପଡିଯିବାପରେ ପୁତ୍ର ସାର୍ଥକକୁ ପରିତ୍ୟାଗ କରିବା ପାଇଁ ସିଦ୍ଧାନ୍ତ ନିଷ୍ପତ୍ତି ନେଇଛି । ଲିପ୍‌ସାର ମାତୃତ୍ୱ ଏହି ନିଷ୍ପତ୍ତିରେ କ୍ଷତାକ୍ତ ହୋଇଥିଲେ ମଧ ବନ୍ଧୁ ଅର୍ଣ୍ଣବ ହାତରେ ସାର୍ଥକକୁ ସମର୍ପି ଦେବା ପାଇଁ ବାଧ ହୋଇଛି । ଏହି ଉପନ୍ୟାସରେ ପ୍ରକଟିତ ଅନେକ ଅନ୍ତର୍ନିହିତ କାରଣ, ନାରୀକୁ ପୁରୁଷତନ୍ତ୍ର ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ବାଧ କରିଥାଏ । ପ୍ରଥମତଃ ସନ୍ତାନ ଜନ୍ମଦେବା ପାଇଁ ପୁରୁଷର ଅକ୍ଷମତା ଏବଂ ଅନ୍ୟ ପଟରେ ମାତୃତ୍ୱ ଲାଭପାଇଁ ଆତ୍ମତୃପ୍ତି ଅନୁଭବ କରୁଥିବା ସମୟରେ ପୁରୁଷର ହୀନମନ୍ୟତା ଭିତରେ ଥିବା ଅହଂ ସେଇ ମାତୃତ୍ୱକୁ ସହଜରେ ଗ୍ରହଣ କରିପାରେ ନାହିଁ । ଏଠାରେ ପୁରୁଷ ନିଜର ପୌରୁଷତ୍ୱକୁ ଅସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ, ଏବଂ ତା'ର ସେହି ଅହଂ ସନ୍ତାନ ସୃଷ୍ଟିପାଇଁ ପ୍ରତିବନ୍ଧକ ସୃଷ୍ଟି କରେ । ଅନେକ କ୍ଷେତ୍ରରେ ନାରୀ ପକ୍ଷରେ ସନ୍ତାନ ସୃଷ୍ଟି ଅସମ୍ଭବ ହେଲାବେଳେ ପୁରୁଷ ଏକାଧିକ ସ୍ତ୍ରୀ ଗ୍ରହଣକରିବାର ଦୃଷ୍ଟାନ୍ତ ରହିଛି; ମାତ୍ର ପୁରୁଷ ଏ କ୍ଷେତ୍ରରେ ଅନୁପଯୁକ୍ତ ହେଲେ ଅନ୍ୟ ପୁରୁଷର ସାହଚର୍ଯ୍ୟ ଲୋଡ଼ା ଯାଇଥିବାର ଯେଉଁ ପୌରାଣିକ ଦୃଷ୍ଟାନ୍ତ ରହିଛି ତାହା Fantasy ପର୍ଯ୍ୟାୟଭୁକ୍ତ । କାରଣ ବାସ୍ତବ କ୍ଷେତ୍ରରେ ସନ୍ତାନ ସୃଷ୍ଟି ପାଇଁ ନିଜ ସ୍ତ୍ରୀ ସହ ଅନ୍ୟପୁରୁଷର ସଂପର୍କକୁ କୌଣସି ପୁରୁଷ ଇଚ୍ଛା ପ୍ରକାଶ କରିନଥାଏ, ସ୍ୱୀକୃତ ଦେଇନଥାଏ । ନାରୀ ଭିତରେ ମାତୃତ୍ୱ ଲାଭର ଯେଉଁ ଆକାଙ୍‌କ୍ଷାଟି ରହିଛି, ସେହି ଆକାଙ୍‌କ୍ଷାର ପରିପୂର୍ତ୍ତି ପାଇଁ ଏବଂ ସ୍ତ୍ରୀର ଅଧିକାରକୁ ଗୁରୁତ୍ୱ ଦେବା ପାଇଁ, ପ୍ରତିଭାରାୟଙ୍କ ଉକ୍ତ ଉପନ୍ୟାସଟି ରଚିତ । ସନ୍ତାନ ସୃଷ୍ଟି ପାଇଁ ପୁରୁଷର ଅକ୍ଷମତା ଏବଂ ମାତୃତ୍ୱ ଲାଭ ପାଇଁ ନାରୀର ଅବଦମିତ ସ୍ପୃହା ଭିତରେ ଥିବା ଅନ୍ତର୍ଦ୍ୱନ୍ଦ୍ୱ ଏହି ଉପନ୍ୟାସର ମୁଖ୍ୟ କେନ୍ଦ୍ର ବିନ୍ଦୁ । ବିଜ୍ଞାନର ଅବଦାନରେ ଲିପ୍‌ସା ମାତୃତ୍ୱ ଲାଭ କରି ପରିତୃପ୍ତା କିନ୍ତୁ ସାମାଜିକ ବ୍ୟବସ୍ଥା ଏବଂ ପୁରୁଷର ହୀନମନ୍ୟତା ଲିପ୍‌ସାର ମାତୃତ୍ୱର ଅଧିକାରକୁ ପ୍ରତ୍ୟାଖ୍ୟାନ କରିଛି ।

ପ୍ରତିଭାରାୟଙ୍କ 'ସମୁଦ୍ରର ସ୍ୱର' ଅନ୍ୟ ଏକ ବିଜ୍ଞାନ ଭିତ୍ତିକ ଉପନ୍ୟାସ । ତୃଷ୍ଣାର ସ୍ୱାମୀ ବୈଜ୍ଞାନିକ ତିମିର, ମନୁଷ୍ୟ ମନ ବିଶ୍ଳେଷଣକାରୀ ବ୍ରେନୋଗ୍ରାଫ୍‌ର ନାମକ ଏକ ଯନ୍ତ୍ର ଉଦ୍ଭାବନ କରିଛି । ଏହା ଦ୍ୱାରା, "ଏହି ପୃଥିବୀ ସୁସ୍ଥ, ସୁନ୍ଦର ଓ ସୁଖମୟ ହେବ । ଛଳନା, ପ୍ରବଞ୍ଚନା, ପ୍ରତାରଣା, ଷଡ଼ଯନ୍ତ୍ର,ହିଂସା, ଦ୍ୱେଷ, କୁତ୍ସିତ କାମନା ସବୁକିଛି ଏହି ଯନ୍ତ୍ରରେ ଲିପିବଦ୍ଧ ହୋଇଯିବ । ସେହି ଭୟରେ ଅପରାଧ ମୂଳକ କୌଣସି ଭାବନାକୁ ମଣିଷ ମନରେ ସ୍ଥାନ ଦେବ ନାହିଁ । ତେଣୁ ଏ ପୃଥିବୀ ହୋଇଯିବ ସ୍ୱର୍ଗପୁରୀ ଆଉ ମଣିଷ ପାଲଟିବ ଦେବତା ।" (ପୃ-୨୦୯) ଏହି ଯନ୍ତ୍ର ସୃଷ୍ଟି ପଛରେ ତୃଷ୍ଣା ଦେଖିପାରିଛି ସୁନ୍ଦର ପୃଥିବୀ । କିନ୍ତୁ ଏହା ଦ୍ୱାରା ପରିବାର, ଦେଶ ଦେଶ ଭିତରେ ଥିବା ମଣିଷର ସଂପର୍କ ଭାଙ୍ଗିଯିବ ବୋଲି ତୃଷ୍ଣା ଚିନ୍ତା କରିଛି । ତୃଷ୍ଣାର ଏପରି ମାନସିକତାକୁ ଲକ୍ଷ୍ୟ କଲେ,



Source: Author, Digitized by PPRACHIN, SOA

ଲେଖିକାଙ୍କ ମନସ୍ତାତ୍ତ୍ୱିକ ଦିଗଟି ସ୍ପଷ୍ଟ ହୋଇଉଠେ । ସୁସ୍ଥ ସୁନ୍ଦର ପୃଥିବୀ ସ୍ୱାଭାବିକ ରୂପେ ଗଠିତ ହେବା ଉଚିତ୍ କୌଣସି କୃତ୍ରିମ ଉପାୟରେ ନୁହେଁ, ମଣିଷ ପରି ମଣିଷ ବଂଚିବା ଉଚିତ୍, ଜଡ଼ ପରି ନୁହେଁ । ଯଦିଓ ସେ ବୈଜ୍ଞାନିକ ଯନ୍ତ୍ରର ଆବଶ୍ୟକତାକୁ ଅନୁଭବ କରିଛନ୍ତି, ତଥାପି ମଣିଷର ଆବେଗ ପ୍ରବଣ ନାନ୍ଦନିକତା ଯେପରି ଏହାଦ୍ୱାରା ବିନିଷ୍ଟ ନ ହୁଏ ସେଥିପ୍ରତି ଲେଖିକା ଗୁରୁତ୍ୱ ଦେଇଛନ୍ତି, ଯାହା ଫଳରେ ତୃଷ୍ଣା ସେହି ଯନ୍ତ୍ରଟିକୁ ବିରେରପତିଙ୍କ ନିକଟରେ ସମର୍ପଣ କରିଛି । ଭାରତୀୟ ନାରୀମାନସ ଜଡ଼ବାଦୀ ନ ହୋଇ ଆଧ୍ୟାତ୍ମବାଦୀ ହେବା ଏବଂ ଏହି ମାନସିକତାରୁ ପ୍ରସୂତ ପୃଥିବୀରେ ମଣିଷର ଉପଯୁକ୍ତ ମୂଲ୍ୟାୟନ ହିଁ ଉକ୍ତ ଉପନ୍ୟାସର ମୂଳ ଲକ୍ଷ୍ୟ । ତେଣୁ ବିଜ୍ଞାନକୁ ଉପଯୁକ୍ତ ଭାବେ ବ୍ୟବହାର କରି ମନୁଷ୍ୟ ଭିତରେ ଥିବା ଚିରନ୍ତନ ମୂଲ୍ୟବୋଧ ଏବଂ ସମ୍ବନ୍ଧକୁ ଲେଖିକା ଗୁରୁତ୍ୱ ଦେଇଛନ୍ତି । ଉପନ୍ୟାସରେ ଲେଖିକାର ଏହି ବକ୍ତବ୍ୟ ଯେପରି ପାଶ୍ଚାତ୍ୟ ଲେଖିକା ଠାରୁ ପୃଥକ କରିଛି ସେହିପରି ଲେଖକଠାରୁ ସ୍ୱତନ୍ତ୍ର କରିଛି ।

(୪)

ବାମାବାଦୀ ସାହିତ୍ୟ ଲେଖିବା, ପଢ଼ିବା ବା ସେ ସମ୍ପର୍କିତ ତତ୍ତ୍ୱ ପ୍ରକ୍ଷାପନ କରିବା ଅଥବା ତାର ଏକ ଅଂଶ ବିଶେଷ ହେବା ମୂଳରେ ରହିଛି ବ୍ୟକ୍ତିଗତ ଏବଂ ସାମାଜିକ ରୂପାନ୍ତରୀକରଣ ପ୍ରକ୍ରିୟା । ତେଣୁ ବାମାବାଦୀ ପଦ୍ଧତି ବିଦ୍ୟାରେ ନାରୀ ଜୀବନ ହେଉଛି ମୂଳକେନ୍ଦ୍ର । ବିଘଟନ ପ୍ରକ୍ରିୟାରେ ନାରୀର ମାନବ ସଭ୍ୟତା ପ୍ରତି ଅବଦାନ ଯାହା ବହୁ ପୂର୍ବର ଭାବାବାଦୀ ଦର୍ଶନ ଓ ଦାର୍ଶନିକମାନେ ଅସ୍ୱୀକାର କରିଥିଲେ ସେହି ବିଧି ବ୍ୟବସ୍ଥାକୁ ଖଣ୍ଡନ କରିବା ସହ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ତା'ର ଭୂମିକାକୁ ସ୍ୱୀକାର କରିବା ହେଉଛି ସାମ୍ପ୍ରତିକ ବାମାବାଦୀ ଆଲୋଚନାର ମୁଖ୍ୟ ପ୍ରସଂଗ ।

ବାମାବାଦୀ ଚିନ୍ତା ଓ କାର୍ଯ୍ୟପ୍ରକରଣ ମଧ୍ୟରେ ପ୍ରଥମ ତରଙ୍ଗ ଆସିଥିଲା ସାମାଜିକ, ଆର୍ଥନୀତିକ, ରାଜନୀତିକ କ୍ଷେତ୍ରରେ ନାରୀର ଅଧିକାର ପ୍ରସଂଗକୁ ଭିତ୍ତିକରି । ୧୯୪୮ରୁ ଆରମ୍ଭ ହୋଇ ୧୯୬୦ରୁ ୧୯୯୦ ମଧ୍ୟରେ ଯେଉଁ ୨ୟ ତରଙ୍ଗର ସୂତ୍ରପାତ ହୋଇଥିଲା ତାହା ନାରୀ ଅବଦମନର ମୂଳ କେନ୍ଦ୍ର ଆବିଷ୍କାରକୁ ଭିତ୍ତିକରି । ସମସ୍ତ ଅଧିକାର ସତ୍ତ୍ୱେ ନାରୀକୁ ଏକ ଭିନ୍ନ ଅର୍ଥାତ୍ ୨ୟ ଶ୍ରେଣୀ ନାଗରିକ ଭାବେ ବିବେଚନା କରୁଥିବା ପିତୃକୈନ୍ଦ୍ରିକ ସମାଜର ତର୍ଜମା କରାଗଲା ଏହି ୨ୟ ପର୍ଯ୍ୟାୟରେ । ନାରୀ ସଶକ୍ତିକରଣ ପ୍ରକିୟା ମାଧ୍ୟମରେ ବିଶ୍ୱର ସମସ୍ତ ନାରୀକୁ ଏକ ସୂତ୍ରରେ ବାନ୍ଧ (Sisterhood) । ସାଂସ୍କୃତିକ ପଟ୍ଟପରିବର୍ତ୍ତନ କରିବା ଥିଲା ମୁଖ୍ୟ ପ୍ରସଙ୍ଗ । କିନ୍ତୁ ୧୯୯୦ ପରେ ବାମାବାଦୀ ଚିନ୍ତା ଜଗତରେ ଯେଉଁ ନୂତନ ତରଙ୍ଗଟି ସୃଷ୍ଟି ହୋଇଥିଲା ତାହା ୨ୟ ପର୍ଯ୍ୟାୟର ଚିନ୍ତାକୁ ପରିତ୍ୟାଗ କରିବା ସହ ବିବିଧ ଆତ୍ମପରିଚିତି ଓ ଅନ୍ତର୍ନିହିତ ବ୍ୟକ୍ତିସତ୍ତାର ଗୁଣାବଳୀକୁ ଗୁରୁତ୍ୱ ଦିଆଗଲା । ଚିନ୍ତା ଓ ଭାଷାରେ ସେ ଅବଦମନର ରୂପରେଖର ସ୍ୱରୂପ ଉଦ୍‌ଘାଟିତ ହେଲା । ପୁରୁଷତନ୍ତ୍ର ନିର୍ମିତ



Source: Author, Digitized by PPRACHIN, SOA

ବିବିଧ ପ୍ରାରୂପକୁ ବିଗ୍ରର ବିଶ୍ଲେଷଣ କରି ଯେଉଁ ନୂତନ ଉପାଦାନମାନ ଲୋକଲୋଚନକୁ ଆସିଛି ତାହା ନାରୀର ବ୍ୟକ୍ତିଗତ ଜୀବନ ନୁହେଁ ପରନ୍ତୁ ତା'ର ସାଂସ୍କୃତିକ ଅବଧାରଣାକୁ ପରିବର୍ତ୍ତନ କରିଛି । ବର୍ତ୍ତମାନର କେହି କେହି ବାମାବାଦୀମାନେ କୁହନ୍ତି ଯେ ସାଂପ୍ରତିକ ସମୟରେ ଯେଉଁ ବାମାବାଦର ଅବତରଣ ଘଟିଛି ତାହା ଶାରୀରିକ ପାରିଦର୍ଶିତା ଉପରେ ପର୍ଯ୍ୟବସିତ । ଅର୍ଥାତ୍ ଖେଳ କସରତଠାରୁ ଆରମ୍ଭ କରି ବ୍ୟବସାୟିକ ଅଭିବୃଦ୍ଧି ପାଇଁ ନାରୀ ନିଜକୁ ଦକ୍ଷତାର ସହ ପ୍ରଦର୍ଶନ କରୁଛି ଯାହା ଉତ୍ତର ବାମାବାଦ ଭାବେ ପରିଚିତ । ସେହି ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ଲେଖିକାମାନେ ନାରୀ ସଂପର୍କିତ ମିଥ୍‌କୁ ବିରୋଧ କରିବା ସହ ନିଜର ଏକ ସ୍ୱତନ୍ତ୍ର ସାଂସ୍କୃତିକ ଉପନିବେଶ ପ୍ରତିଷ୍ଠା ପାଇଁ ଉଦ୍ୟମ କରୁଛନ୍ତି ।

ସହାୟକ ଗ୍ରନ୍ଥ ପଞ୍ଜିକା


1. Marx (Karl) & Engels (Friedrich). The communist Manifesto, 2010, Arcturus publishing Ltd ; London.
2. Bagchi (Jasodhara). Ed. Indian Women ; Myth and Reality, 1995, Sangam Books (India) Ltd ; Hydrabad.
3. Daly (Marry). Beyond God the Father : Towards a Philosophy of women's liberation 1973, Beacon press; Bostan.
4. Craft (Marry Wollstone). A Vindication of the rights of women, 2004, Penguin Books. London.
5. Woolf (Virginia). A room of one's own, 1945, Penguin Books, London.
6. Beauvoir (Simone De) . The second sex, 1988, Trans & edt by it H. M. Parshley, Picador, Great britain.
7. Scholz (Sally T). Feminism, 2011, viva, chhenai.
8. Mill (John Stuart). The subjection of women. 1966, oxford university press ; London.
୨. କପୁର (ପ୍ରମିଳା). କଲଗାର୍ଲ ( ଭାଷାନ୍ତର, ବାସବ ଦତ୍ତ), ୧ ୯ ୯ ୫ ପପୁଲାର ପବ୍ଲିକେଶନ୍‌ସ, କଟକ ।
10. ମହାନ୍ତି (ଶରତ କୁମାର). ବିବର୍ତ୍ତନଶୀଳ ମଣିଷର ସଂଗ୍ରାମ, ୧ ୯ ୯ ୦, ଅଗ୍ରଦୂତ, କଟକ ।
11. ଭଟ୍ଟାଚାର୍ଯ୍ୟ (ସୂତପା). ସେ ନହି ନହି : ରବୀନ୍ଦ୍ର ସାହିତ୍ୟେ ନାରୀମୁକ୍ତି ଭାବନା, ୧ ୯ ୯ ୦, ବିଶ୍ୱଭାରତୀ ଗବେଷଣା ପ୍ରକାଶନ ବିଭାଗ, ଶାନ୍ତିନିକେତନ ।




Source: Author, Digitized by PPRACHIN, SOA

# ଲେଖିକାଙ୍କ ଉପନ୍ୟାସ :
# ଭାଷା ପ୍ରୟୋଗର ବୈଶିଷ୍ଟ୍ୟ ବିଚାର

ବିଶ୍ୱର ବହୁ ସମ୍ପ୍ରଦାୟରେ ନାରୀ ଓ ପୁରୁଷ ଗୋଟିଏ ଭାଷାର ଦୁଇଟି ଭିନ୍ନ ରୂପ ବ୍ୟବହାର କରିବାର ଦୃଷ୍ଟାନ୍ତ ରହିଛି । ଏହି ଭାଷାର ଦୁଇ ରୂପ ମଧ୍ୟରେ ବ୍ୟାକରଣଗତ ପାର୍ଥକ୍ୟ ପରିଲକ୍ଷିତ । ଏପରିକି ଇଂରାଜୀ ଓ ହିନ୍ଦୀ, ପରି ବିଶିଷ୍ଟ ଭାଷାରେ ଲିଙ୍ଗଗତ ପାର୍ଥକ୍ୟ ରହିଛି । ତେଣୁ ଲିଖିତ ବା ସାହିତ୍ୟିକ ରୂପରେ ଏହା ପ୍ରକାଶ ପାଇପାରେ । ତେବେ ଭାଷା ପ୍ରୟୋଗ କ୍ଷେତ୍ରରେ ନାରୀ ଏବଂ ପୁରୁଷର ଭିନ୍ନତା ସ୍ୱାଭାବିକ ବୋଲି ପ୍ରତ୍ୟୟ ସୃଷ୍ଟି ହେଉଥିଲେ ମଧ୍ୟ ତାହା ବିଶେଷ ଭାବେ କଥିତ ପର୍ଯ୍ୟାୟରେ ସୀମିତ । ତେଣୁ ଲିଖିତ ଏବଂ କଥିତ ଭାଷା ମଧ୍ୟରେ ଯେଉଁ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ, ତାହା ବ୍ୟକ୍ତି ବିଶେଷର ଭାଷା ପ୍ରୟୋଗ ସମୟରେ ସଚେତନତା ଉପରେ ନିର୍ଭର କରିଥାଏ । ସମଗୋଷ୍ଠୀ ଅନ୍ତର୍ଭୁକ୍ତ (ଅଞ୍ଚଳ ଭିତ୍ତିରେ) ପୁରୁଷ, ନାରୀ ଭିତରେ ବ୍ୟବହୃତ ଭାଷା ଅଲଗା ନ ହୋଇପାରେ, ପରନ୍ତୁ ସେହି ଭାଷାରେ ବିବିଧ ଶବ୍ଦଚୟନରେ ସେମାନେ ପରସ୍ପର ଠାରୁ ପୃଥକ । ଅପର ପକ୍ଷରେ ଗୋଟିଏ ଭାଷାର ବିଭିନ୍ନ ଉପଭାଷା ଥିବାରୁ, ବିବାହ ପ୍ରଭୃତି ସାଂସ୍କୃତିକ ଆଦାନ ପ୍ରଦାନ ହେତୁ ଭାଷା ବ୍ୟବହାରରେ ତାରତମ୍ୟ ପରିଲକ୍ଷିତ ହୁଏ । କଥିତ ଭାଷା ଏବଂ ସୃଜନଶୀଳ ସାହିତ୍ୟ କ୍ଷେତ୍ରରେ ବ୍ୟବହୃତ ମାନକ ଭାଷା ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେବା ହେତୁ ଆହରଣ ଓ ପ୍ରତ୍ୟାହାର ସମୟରେ ଲେଖିକା, ଲେଖିକା ସଚେତନତା ଅବଲମ୍ବନ କରିଥାନ୍ତି । ଏହି ସଚେତନତା ସୃଷ୍ଟି ହେବା ପଛରେ ଅନୁଭବ ସିଦ୍ଧ ଅଭିଜ୍ଞତା କାର୍ଯ୍ୟକରେ । ସାଧାରଣ ଭାବେ ପର୍ଯ୍ୟାଲୋଚନା କଲେ ହୃଦବୋଧ ହୁଏ ଯେ ନାରୀ ଅପେକ୍ଷା ପୁରୁଷ ବାହ୍ୟ ଜଗତ ସହିତ ଅଧିକ ସଂଶ୍ଳିଷ୍ଟ ହେବା ଏବଂ ଅଭିଜ୍ଞତା ହାସଲ କରିବା ହେତୁ ତା'ର ଭାଷା, ବୈଚିତ୍ର୍ୟମୟ ଏବଂ ବ୍ୟାପ୍ତି ସମୃଦ୍ଧ । ତେଣୁ ଭାଷାର ଗାମ୍ଭୀର୍ଯ୍ୟ ଓ ଶବ୍ଦ ପ୍ରୟୋଗର ଯାଦୁକାରୀ ଶକ୍ତି ଲେଖିକା ଅପେକ୍ଷା ଲେଖକଠାରେ ଯଥେଷ୍ଟ ପରିମାଣରେ ରହିଛି । ଲେଖିକା ସାଧାରଣତଃ କଥୋପକଥନ ଶୈଳୀ (ଉକ୍ଟଭଙ୍ଗରକ୍ୱଶ୍ୱବଶ୍ୱସକ୍ଟଭବକ୍ଷ ଝଶ୍ୱଛକ୍ଷର)ରେ ସାହିତ୍ୟ ରଚନା କରୁଥିବା ବେଳେ ପ୍ରାୟତଃ ପ୍ରତକ୍ଷୋକ୍ତି ବ୍ୟବହାର କରିଥାଏ । ନିଜ ସ୍ଥିତି ପ୍ରତି ଅଧିକ ସଚେତନ ଥିବାରୁ ତାର ଯୁକ୍ତି ଧୀରେ ଧୀରେ ପୁରୁଷ ସମାଜ ବିପକ୍ଷରେ ଗତିକରିଥାଏ । ପୁରୁଷ ବ୍ୟବହୃତ ଭାଷା (Masculine Language) ପ୍ରତି ଲେଖିକାରେ



Source: Author, Digitized by PPRACHIN, SOA

ଯେପରି ଆପତ୍ତି ଥାଏ ସେହିପରି ଆଗ୍ରହ ନଥିବାରୁ ପୁରୁଷ ବ୍ୟବହୃତ ଭାଷା ପରିବର୍ତ୍ତେ ନିଜ ଭାଷାକୁ ଗୁରୁତ୍ୱ ଦିଏ । ଏପରି କେତେକ ଶବ୍ଦ, ବାକ୍ୟାଂଶ ରହିଛି ଯାହା ନାରୀ ବ୍ୟବହାର କରେ ନାହିଁ ବା ତା' ପାଇଁ ଏ ସବୁ ସମ୍ପୂର୍ଣ୍ଣ ନିଷିଦ୍ଧ । ଯେଉଁଗୁଡିକ ସମାଜରେ ପ୍ରଚଳିତ ବିଶ୍ୱାସ କିମ୍ବା ମୂଲ୍ୟବୋଧ ସହିତ ଜଡ଼ିତ, ଧର୍ମ ଏବଂ ଯୌନ ଜୀବନ ସମ୍ପର୍କୀତ ସେ ସବୁର ନୀତିଗତ ଅବଧାରଣାକୁ ଜଣେ ଲେଖିକା ମୁକାବିଲା କଲା ଭଳି ଦୃପ୍ତ ଭାବପୂର୍ଣ୍ଣ ଭାଷା ବ୍ୟବହାର କରିପାରେ ନାହିଁ । ସେଥିପାଇଁ ବୋଧହୁଏ ୧୯୨୩ରୁ ୧୯୭୦ ମସିହା ପର୍ଯ୍ୟନ୍ତ ଲିଖିତ ଓଡ଼ିଆ ଉପନ୍ୟାସରେ ଲେଖିକାମାନେ ନାରୀର ଯୌନ ଜୀବନ ସମ୍ପର୍କୀତ ପ୍ରସଙ୍ଗ ଉତ୍‌ଥାପନ କରିବାକୁ ପଶ୍ଚାତ୍‌ପଦ ହୋଇଛନ୍ତି ।

କେତେକ ଲେଖିକା ବିଶେଷ କରି ପ୍ରଫୁଲ୍ଲତା ମହାପାତ୍ର, ଶାନ୍ତି ମହାପାତ୍ର, ସୁଧାଂଶୁ ବାଳା ପଣ୍ଡା, କବିତା ବାରିକ, ରୋଜାଲିନ ନନ୍ଦ, ସୁକାମିନୀ ନନ୍ଦ ଆଦିଙ୍କ ଉପନ୍ୟାସରେ ନମନୀୟ ଭାଷା ପ୍ରୟୋଗର ନିଦର୍ଶନ ମିଳିଥାଏ । ଖୁବ୍ ଗୁରୁତ୍ୱପୂର୍ଣ୍ଣ ଏପରିକି ଐତିହାସିକ, ପୌରାଣିକ ବିଷୟ ବସ୍ତୁର ଅବତାରଣା ସମୟରେ ଭାଷାରେ ଯେଉଁ ଗାମ୍ଭୀର୍ଯ୍ୟ ରହିବା କଥା ତାହା ରକ୍ଷା କରିବା ଦିଗରେ ଲେଖିକା ଅସମର୍ଥ ହୋଇଛି । ତାହା ହୁଏତ ଲେଖିକା ଭିତରେ ଅହରହ କାର୍ଯ୍ୟ କରୁଥିବା ନାରୀ ସୁଲଭତା (Femininity)ର ପ୍ରଭାବ । ଜୈବିକ କ୍ରିୟାକଳାପ ତଥା ଶାରୀରିକ ଗଠନ ସମ୍ପର୍କୀୟ ଭିନ୍ନତା ସମ୍ଭବତଃ ନାରୀକୁ ଯେଉଁ କେତେକ ନିର୍ଦ୍ଦିଷ୍ଟ ଅନୁଭବ ଏବଂ ଅଭିଜ୍ଞତା ପ୍ରଦାନ କରିଥାଏ ତା'ର ବଶବର୍ତ୍ତୀ ହେବା ହେତୁ ସ୍ୱଭାବତଃ ପରୋକ୍ଷରେ ଏହି ପ୍ରକାର ଭାଷା ପ୍ରୟୋଗ ନିମନ୍ତେ ସେ ପ୍ରରୋଚିତ ହୋଇଥାଏ । କିନ୍ତୁ ପାଶ୍ଚାତ୍ୟ ଶିକ୍ଷା ଏବଂ ସଂସ୍କୃତିଗତ ପ୍ରଭାବ ସହିତ ଜ୍ଞାନ ଆହରଣର ସୀମାବୃଦ୍ଧି ହେତୁ ପ୍ରତିଭା ରାୟ, ଶାନ୍ତା ନାୟକ, ଅଳକାନନ୍ଦ ଦାଶ, ବୀଣାପାଣି ମହାନ୍ତି ପ୍ରଭୃତି ଲେଖିକା ଉପନ୍ୟାସରେ ଯେପରି ସମସ୍ତ ନିଷିଦ୍ଧ ଭାବ ସମ୍ପର୍କିତ ଭାଷା, ଶବ୍ଦ ପ୍ରୟୋଗ କରିଛନ୍ତି ତାହା ବ୍ୟବହାରରେ ଲିଙ୍ଗଗତ ତାରତମ୍ୟକୁ ଅସ୍ୱୀକାର କଲା ପରି ମନେହୁଏ, କିନ୍ତୁ ପୁରୁଷାନୁକୃତ ବା ପ୍ରଭାବିତ ଭାଷା ବୋଲି କୁହାଯାଇ ନ ପାରେ । ଏମାନଙ୍କ ଉପନ୍ୟାସରେ ଶାଣିତ ଭାବ ପ୍ରକାଶ ପାଇଁ ଅନୁରୂପ ତୀକ୍ଷ୍ଣ ଶବ୍ଦର ବ୍ୟବହାର ଦେଖାଯାଏ । ଯେଉଁ ଲେଖିକାମାନଙ୍କର ସମାଲୋଚନା ସାହିତ୍ୟରେ ଗଭୀର ପ୍ରବେଶ ରହିଛି, ସେମାନଙ୍କ ସୃଜନଶୀଳ ସାହିତ୍ୟକୁ ଏହା ପ୍ରଭାବିତ କରିଛି । ଏ ସବୁ ସତ୍ତ୍ୱେ ଲେଖକ ଏବଂ ଲେଖିକାଙ୍କ ମଧ୍ୟରେ ଏକ ପ୍ରକାର ଭାଷାଗତ ପାର୍ଥକ୍ୟ ଅନୁଭୂତ ହୋଇଥାଏ । ପୁରୁଷ ନିର୍ଦ୍ଦେଶିତ ସାମାଜିକ, ସାଂସ୍କୃତିକ ବାତାବରଣରେ ଦୀର୍ଘ ଦିନରୁ ପରିଚାଳିତ ହେଉଥିବାରୁ ଏବଂ ତା'କୁ ସହଜରେ ସ୍ୱାଭାବିକ ଭାବେ ଗ୍ରହଣ କରି ପାରୁନଥିବାରୁ ଲେଖକଙ୍କ ପରିମାର୍ଜିତ ତଥା ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷା ସମ୍ଭବତଃ ବ୍ୟବହାର ନିମନ୍ତେ ଲେଖିକା ମାନସିକ କ୍ଷେତ୍ରରେ ପ୍ରସ୍ତୁତ ହୋଇନଥାଏ । ଅନେକ ସମୟରେ ଏମାନଙ୍କ ଦ୍ୱାରା ବ୍ୟବହୃତ କଥିତ ଭାଷା ମଧ୍ୟ



Source: Author, Digitized by PPRACHIN, SOA

ସେହି ସ୍ତରକୁ ଯାଇପାରେ ନାହିଁ ଯେଉଁ ସ୍ତରରେ କାହ୍ନୁ ଚରଣ, ଚିତ୍ତରଞ୍ଜନ ଦାସ ଆଦିଙ୍କ ସମାଲୋଚନା ସାହିତ୍ୟ ବା ସୃଜନଶୀଳ ସାହିତ୍ୟ ପହଞ୍ଚି ପାରିଛି । ଏମାନଙ୍କର କଥିତ ଭାଷା ପ୍ରୟୋଗ ସ୍ୱମଗ୍ର ସୃଷ୍ଟିକୁ ଗାମ୍ଭୀର୍ଯ୍ୟ, ମାର୍ଜିତ କରିବା ସହ ପରିବେଷିତ ଭାବକୁ ବଳିଷ୍ଠ କରିଥାଏଁ ।

ନାରୀର ବଞ୍ଚିବା ଶୈଳୀ, ଚିନ୍ତା କରିବା ତଥା ତା'ର ଜୀବନକୁ ନିୟନ୍ତ୍ରଣ କରିବା ପାଇଁ ଆବଶ୍ୟକ ନୀତି ପ୍ରଣୟନ କରିଛି ଆମ ସଂସ୍କୃତି । ତେଣୁ ମାନବ ବାଦ, ମନୁଷ୍ୟତ୍ୱ, ମଣିଷ ଜାତି କହିଲେ ଆମେ ନାରୀ ଅପେକ୍ଷା ପୁରୁଷକୁ ଅଧିକ ଭାବେ ଆମ ଅବଚେତନ ମନରେ ଗୁରୁତ୍ୱ ଦେଉ । ତେଣୁ ଭାଷା-ସାହିତ୍ୟ କହିଲେ ପୁରୁଷାନୁକୃତ ଭାଷା-ସାହିତ୍ୟକୁ ବୁଝାଏ । ସଂସ୍କୃତିଗତ ପ୍ରଭାବ ହେତୁ ଭାଷା ପ୍ରୟୋଗରେ ଲେଖିକା ସମ୍ଭବତଃ ସଚେତନତା ପରିବର୍ତ୍ତେ ଦୁଃଖ ବର୍ଣ୍ଣନାରେ ଆବେଗ, ଅଭିମାନପୂର୍ଣ୍ଣ, କୋମଳ ଅଥଚ ମର୍ମସ୍ପର୍ଶୀ ଶବ୍ଦ ତଥା ବାକ୍ୟ ବ୍ୟବହାରର ଆଧିକ୍ୟ ଲେଖିକାଙ୍କ ଉପନ୍ୟାସରେ ଦେଖାଯାଏ । ତେଣୁ ତତ୍‌ସମ ଓଜଗୁଣ ବିଶିଷ୍ଟ ଶବ୍ଦର ପ୍ରୟୋଗ କ୍ୱଚିତ୍ । ଅନେକ କ୍ଷେତ୍ରରେ ଭାବଟି ଯେତେ ଗୁରୁତ୍ୱପୂର୍ଣ୍ଣ ତଥା ବୀର ବୀଭତ୍ସ, ରୌଦ୍ର ରସ ଯୁକ୍ତ ହେଉନା କାହିଁକି, ଭାଷା ପ୍ରୟୋଗରେ ଅନୁରୂପ ଶବ୍ଦ ସମୂହ ପରିବର୍ତ୍ତେ ସେ ଯେଉଁ ଶବ୍ଦ ବ୍ୟବହାର କରେ ତା'ର ଅନ୍ତର୍ନିହିତ ଭାବ ଖୁବ୍ ଶାଣିତ । ଅର୍ଥାତ୍ ଶବ୍ଦଗୁଣ ସମାନ ଭାବରେ ସୁରକ୍ଷିତ ନ ହେଲେ ହେଁ ଭାବ-ଅବବୋଧ ଦୃଷ୍ଟିରୁ ତାହା ସବଳ ହୋଇଥାଏ । ଲେଖିକାର ଭାଷା ପ୍ରୟୋଗରେ ଏପରି ପରିସ୍ଥିତି ସୃଷ୍ଟି ହେବା ମୂଳରେ ସାମ୍ଭାବ୍ୟ କାରଣ ରହିଛି, "x x x Women's domestic role, particularly their tendency not to work outside the home , or to wor part time, or to work in isolation(Home working, clearing and so on). Arguably cuts down an women's contact with other people" (Feminism and.Linguistic Theory 2nd Edition - Page - 69). ତେଣୁ ଲେଖିକା ନାରୀ ସୁଲଭ ଉପାଦାନ (ମାତୃବୋଧ, ବାତ୍ସଲ୍ୟ ମନୋଭାବ, ପାରିବାରିକ ସଂହତି, ହିଂସା ଦ୍ୱେଷ ପ୍ରତି ବିତୃଷ୍ଣା ଆଦି)କୁ ଲେଖକ ତୁଳନାରେ ଅଧିକ ଗୁରୁତ୍ୱ ଦେବା ହେତୁ ତଦନୁରୂପ ଭାଷା ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରୟୋଗ କରିଥାଏ । ନାରୀର ଏହି ପରିମଣ୍ଡଳୀୟ ଭାଷା ସମ୍ପର୍କରେ ଉପରୋକ୍ତ ଧାରଣାକୁ ଟ୍ରଡ଼ଗିଲ ସ୍ପଷ୍ଟ କରି କୁହନ୍ତି, "Man and Woman are socially difrferent in that society lays down different social roles for them and excepts different behaviour patterns among them" (So ciolinguistics, page-94). ହେଲେନ୍ ସିକସସ୍, ଲୁସୀ ଇରିଗାରୀ, ଜୁଲିଆ କ୍ରିଷ୍ଟୋଭା ଆଦି ପୋଷ୍ଟ ମଡ଼ର୍ଣ୍ଣ ଫେମିନିଜିମର ପ୍ରବକ୍ତାଗଣ, ଜାକ୍ୟୁସ ଡେଭିଡ଼ ଏବଂ ଜାକ୍ୟୁସ୍ ଲାକାନ, ସଂସ୍କୃତି ସହିତ ଭାଷାର ସମ୍ବନ୍ଧ



Source: Author, Digitized by PPRACHIN, SOA

ସମ୍ପର୍କରେ ଦେଇଥିବା ମନ୍ତବ୍ୟର ବିରୋଧ କରିଛନ୍ତି । "Women Sexuality" କିମ୍ବା "Feminine" ଗୁଣଟିକୁ ସେମାନେ ଭିନ୍ନ ଏକ ଦୃଷ୍ଟିରୁ ବିଚାର କରିଛନ୍ତି । ସିକ୍ସସ୍ କୁହନ୍ତି ଯେ ନାରୀର ଯୌନ ଜୀବନ (Feminine Sexuality) ଏବଂ (Female Body) ହେଉଛି ନାରୀବାଦୀ ଲେଖା (Feminine writing)ର ମୂଳ ଉତ୍ସ । ଲାକାଁଙ୍କ ମତରେ ଗୋଟିଏ ବାଳକ ତା'ର ଓଡ଼ିପାଲଫେଜ୍ (Oedipal Phase)କୁ ସଫଳ ଭାବେ ଅତିକ୍ରମ କରି ସାରିଲା ପରେ ସେ କଳ୍ପନା ଜଗତରୁ ମୁକ୍ତି ପାଏ ଏବଂ Symbolic order ଅର୍ଥାତ୍ ଭାଷା ଏବଂ ସ୍ୱସ୍ଥିତି ସମ୍ପର୍କିତ ରାଜ୍ୟ ମଧ୍ୟରେ ପ୍ରବେଶ କରିପାରିନଥିବାରୁ ସେ କାଳ୍ପନିକତାର ବ୍ୟୁହ ମଧ୍ୟରେ ରହିଥାଏ, ତେଣୁ ସେ ଅଧିକ ଭାବପ୍ରବଣତା, ସମ୍ବେଦନଶୀଳତା ପ୍ରଭୃତି ଗୁଣ ଗୁଡିକୁ ଧାରଣ କରିଥାଏ । ଏହାର ପ୍ରତିବାଦ ସ୍ୱରୂପ ଇରିଗାରୀ ଦୁଇଟି ଉକ୍ତି ଉପରେ ଗୁରୁତ୍ୱ ଦେଇଛନ୍ତି, ଯଥା (୧) Masculine femininity ଅର୍ଥାତ୍ ପୁରୁଷ ନାରୀସୁଲଭତା ଏବଂ (୨) Feminine femininity ଅର୍ଥାତ୍ ନାରୀର ଅନୁଭବରେ ନାରୀତ୍ୱ । ତେଣୁ 'The sex which is not one' (୧୯୮୫) ପୁସ୍ତକରେ ସେ କୁହନ୍ତି – ଯେତେବେଳେ ପୁରୁଷ ନାରୀକୁ ଦେଖେ ସେ ନାରୀଠାରେ ପୁରୁଷର ପ୍ରତିବିମ୍ବକୁ ଦେଖେ When men look at women, they see not women but refelection or images and likeness of men । ସିକ୍ସସ୍ ଏବଂ ଇରିଗାରୀଙ୍କ ଜୀବ ବିଜ୍ଞାନ ସହ ଭାଷାର ସମନ୍ୱୟବାଦୀ ମନ୍ତବ୍ୟ ଠାରୁ ଜୁଲିଆ କ୍ରିଷ୍ଟୋଭାବଙ୍କ ମନ୍ତବ୍ୟ ସମ୍ପୂର୍ଣ୍ଣ ଭିନ୍ନ । ତାଙ୍କ ମତରେ ପ୍ରାରମ୍ଭିକ ଅବସ୍ଥାରୁ ଲିଙ୍ଗଭେଦ ଦୃଷ୍ଟିରୁ ପୁଅ, ଝିଅଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନରଖି ଯଦି ସେମାନଙ୍କୁ ସିମ୍ବଲିକ୍ ଅର୍ଡର (Symbolic Order) ମଧ୍ୟରେ ଗତି କରାଇ ଦିଆଯାଏ, ତେବେ ସେମାନେ ବାପା, ମା'ଙ୍କ ସହିତ ସ୍ୱାଭାବିକ ସମ୍ପର୍କ ରଖି ପାରିବେ ଏବଂ ଭାଷା ପ୍ରୟୋଗ କ୍ଷେତ୍ରରେ କୌଣସି ପାର୍ଥକ୍ୟ ଦୃଷ୍ଟିଗୋଚର ହେବ ନାହିଁ । କ୍ରିଷ୍ଟୋଭାଙ୍କ ଏହି ତତ୍ତ୍ୱକୁ ସିକ୍ସସ୍ ବିରୋଧ କରିଛନ୍ତି । ତାଙ୍କ ମତରେ, କାର୍ଯ୍ୟକ୍ଷେତ୍ରରେ କିମ୍ବା ସୃଜନଶୀଳ କ୍ଷେତ୍ରରେ ଯେଉଁ ଯୁଗ୍ମୋକ୍ତି ବିଶିଷ୍ଟ ଶବ୍ଦ (ଭଲ-ମନ୍ଦ, ସୁନ୍ଦର-କୁତ୍ସିତ ଇତ୍ୟାଦି) ବ୍ୟବହାର କରାଯାଉଛି ତାହା ନାରୀକୁ ଅବଦମିତ କରି ରଖିବାର ଏକ ସୁଚିନ୍ତିତ କୌଶଳ ।

ଲିଙ୍ଗଗତ ପାର୍ଥକ୍ୟ ହେତୁ ଭାଷା ପ୍ରୟୋଗ କ୍ଷେତ୍ରରେ ଯେଉଁ ମନସ୍ତତ୍ତ୍ୱଟି କାର୍ଯ୍ୟକରେ ତାହା ସମ୍ପୂର୍ଣ୍ଣ ଗୋଟିଏ ସଂସ୍କୃତି ଉପରେ ନିର୍ଭର କରିଥାଏ । ସଂସ୍କୃତିର ପ୍ରଭାବକୁ ଏଡ଼ାଇବା ଏବଂ ଭାଷା କ୍ଷେତ୍ରରେ ସମାନତାକୁ ସ୍ୱୀକାର କରିବା ପାଇଁ ଉପରୋକ୍ତ ପ୍ରବକ୍ତାମାନଙ୍କ ମନ୍ତବ୍ୟ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ବାସ୍ତବତଃ ତାହା ସମ୍ଭବ ନୁହେଁ ବୋଲି ମନେହୁଏ । କାରଣ ନାରୀକୁ ଅନ୍ୟା (Otherness) ଆଖ୍ୟା ଦେଇ ତାକୁ ଅବଦମିତ କରିବାର ଯୋଜନା ପୁରୁଷ ତନ୍ତ୍ର ସମାଜର କ୍ରୋମାଜମ୍‌ରେ ସଞ୍ଚିତ ହୋଇ ସାରିଛି । ଉଭୟ ଭାଷା



Source: Author, Digitized by PPRACHIN, SOA

ଏବଂ ଶାରୀରିକ ଶକ୍ତି ପ୍ରୟୋଗ କରି ନାରୀର ସ୍ଥିତିକୁ ଅସ୍ୱୀକାର କରିବାର ଯୋଜନା ପୁରୁଷ ତନ୍ତ୍ର ସମାଜରେ ଉପଲବ୍ଧ । ସାମ୍ପ୍ରତିକ ଲେଖିକା ନିଜ ବ୍ୟକ୍ତି-ସତ୍ତାର ପ୍ରତିଷ୍ଠା ପାଇଁ ସାହିତ୍ୟ କ୍ଷେତ୍ରରେ ଯେଉଁ ପଦକ୍ଷେପମାନ ନେଉଛନ୍ତି ତାହା ବିଷୟବସ୍ତୁ ନିର୍ବାଚନ ଦୃଷ୍ଟିରୁ ଯେପରି ଗୁରୁତ୍ୱପୂର୍ଣ୍ଣ, ଭାବ ପ୍ରକାଶ ପାଇଁ ଭାଷାର ବ୍ୟବହାର ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ତେଣୁ ଅନେକ ସମୟରେ ଲେଖକ, ଲେଖିକାଙ୍କ ଭାଷା ପ୍ରୟୋଗଗତ ପାର୍ଥକ୍ୟ ନିର୍ଣ୍ଣୟ କରିବା କଷ୍ଟକର ବ୍ୟାପାର । ଶରତ ଚନ୍ଦ୍ର, କାହ୍ନୁ ଚରଣ ଆଦି ଲେଖକଙ୍କ ଉପନ୍ୟାସରେ ନାରୀ ସୁଲଭ ଭାଷା ଅନୁଭବ କରାଯାଇପାରେ । ପୁଣି ପ୍ରତିଭା ରାୟ, ବୀଣାପାଣି ମହାନ୍ତି ଆଦି ଲେଖିକାଙ୍କ ରଚନାରେ ପୁରୁଷ ସୁଲଭ ଭାଷାର ପ୍ରୟୋଗ ଦେଖିବାକୁ ମିଳେ । ବିଷୟ ଅନୁସାରୀ ଭାଷା ଏବଂ ଅନୁରୂପ ଭାବ ଉଦ୍ରେକକାରୀ ଶବ୍ଦ ଚୟନ ଏମାନଙ୍କ ଉପନ୍ୟାସରେ ପରିଲକ୍ଷିତ ହୁଏ । ତେଣୁ ଲେଖକ ଏବଂ ଲେଖିକାର ଉପନ୍ୟାସ ପଠନ ପରେ ଯେଉଁ ପାର୍ଥକ୍ୟ ବା ସ୍ୱାତନ୍ତ୍ର୍ୟ ଅନୁଭୂତ ହୁଏ ତାହା ନାରୀର ମାନସିକ ସଂଘର୍ଷ ଦୃଷ୍ଟିରୁ ବିଚାର କରିବା କଥା – ଭାଷା ପ୍ରୟୋଗ ଦୃଷ୍ଟିରୁ ନୁହେଁ । କିନ୍ତୁ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ ତାହା ଲେଖିକାର ସାମାଜିକ ସ୍ଥିତି ସହିତ ସମ୍ପୂର୍ଣ୍ଣ ଜଡ଼ିତ । ବ୍ୟକ୍ତିର ଭିତ୍ତିରେ ଚିନ୍ତନ - ପ୍ରକ୍ରିୟା, ସାମାଜିକ ସ୍ଥିତି ଏବଂ ଏ ସବୁର ସୁରକ୍ଷା ସମ୍ପର୍କିତ ସମସ୍ତ ବିଧି ବ୍ୟବସ୍ଥା ନାରୀକୁ ଏକ ନିର୍ଦ୍ଦିଷ୍ଟ ମାନଦଣ୍ଡରେ ଉପସ୍ଥାପିତ କରେ । ଏଣୁ ସେ ସବୁର ସୂକ୍ଷ୍ମ ବିଚାରବୋଧ ଲେଖିକାଙ୍କ ଉପନ୍ୟାସରେ ପ୍ରକାଶ ପାଇଥାଏ ।

ସହାୟକ ଗ୍ରନ୍ଥ :


୧. SICHTERMANN (Barbara), Feminity : The politics of the personal - 1986, Basil Black well ; UK.

୨. TRUDGILL (Peter), Sociolinguistics : An Introduction - 1974, Penguin Book - USA.

୩. VERSHNEY (Radhey. L) An Introduction Text book of Linguistics and Phonetics, 7th Ed. 1993, Student Store, Bareily.

୪. CAMERON (Deborah), Feminism and Linguistic Theory 2nd Ed.1992, Machmilla Press, Hound Mills.





Source: Author, Digitized by PPRACHIN, SOA

# ସୁଲୋଚନା ଦେବୀ : ବିସ୍ମୃତ ପରଂପରାରେ ବିସ୍ମୃତ ପ୍ରତିଭା

## (ଏକ)

ଓଡ଼ିଆ ସାହିତ୍ୟର ନାରୀ-ପ୍ରତିଭାଙ୍କୁ ଅନ୍ୱେଷଣ କରିବା ଏକ ଦୁଷ୍କର ବ୍ୟାପାର । ଏଇ ଦୃଷ୍ଟିରୁ ଏହା କଷ୍ଟସାଧ ଯେ ଦୀର୍ଘ ଦୁଇଶହ ବର୍ଷ ଧରି ଯେଉଁ ଲେଖିକାମାନେ ନିଜ ସୃଷ୍ଟିର ଅଭିଯାନ ଆରମ୍ଭ କରିଛନ୍ତି ସେମାନଙ୍କ ଉପରେ ବିଧିବଦ୍ଧ ଆଲୋଚନା ହେଇନାହିଁ କିମ୍ବା ସେଭଳି ପରମ୍ପରା ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସୃଷ୍ଟି ହୋଇନାହିଁ, ଯାହା ଅନବରତ ହେଇଆସିଛି ଇଂରାଜୀ କିମ୍ବା ପଡ଼ୋଶୀ ବଙ୍ଗଳା ସାହିତ୍ୟରେ । ଯେହେତୁ ନାରୀ ସଶକ୍ତିକରଣ ଉପରେ ଯେଉଁ ଆବହାଓ୍ୱା ବର୍ତ୍ତମାନ ସମଗ୍ର ଭାରତବର୍ଷରେ ଏକ ଚାଞ୍ଚଲ୍ୟକର ପରିସ୍ଥିତି ସୃଷ୍ଟି କରିଛି ସେଇହେତୁ ସଂପ୍ରତି ଗବେଷକମାନେ ଲେଖିକାମାନଙ୍କ କୃତିସମୂହକୁ ବିଚାର ଆଲୋଚନାର ପର୍ଯ୍ୟାୟଭୁକ୍ତ କରିବାର ଉପକ୍ରମଟି ଆରମ୍ଭ କରିଛନ୍ତି । ପାଶ୍ଚାତ୍ୟ ବାମାବାଦୀ ଆନ୍ଦୋଳନ ବିଶେଷକରି ଭର୍ଜିନିଆ ଉଲ୍‌ଫ, ଓ୍ୱେଲଷ୍ଟନ କ୍ରାଫ୍‌ଟଙ୍କ ଠାରୁ ଆରମ୍ଭ କରି ସାଇମନ ଦି ବେଭୋର, ଟୋନି ମୋରିସନ ପ୍ରଭୃତି ଲେଖିକାମାନେ ଯେପରି ସାହିତ୍ୟ, ଦର୍ଶନ, ରାଜନୀତି ତଥା ସମାଜ ନୀତି ସଂପର୍କୀୟ ଯେଉଁ ବୌଦ୍ଧିକ ପରମ୍ପରା ସୃଷ୍ଟି କରିଛନ୍ତି ସେସବୁକୁ ପର୍ଯ୍ୟାଲୋଚନା କରିବା ସହିତ ତାର ଅନୁସରଣରେ ଦେଶୀୟ ଚିନ୍ତାଶୀଳ ଲେଖିକାଙ୍କ ଉପରେ ଆଲୋଚନା ହେବା ସ୍ୱାଭାବିକ । କାରଣ ଏହି ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ହିଁ ଉଭୟ ସମାଜର ଅବସ୍ଥାପିତ ନାରୀ କୈନ୍ଦ୍ରିକ ଅନୁଚିନ୍ତାଟିର ସ୍ୱରୂପକୁ ପ୍ରତ୍ୟକ୍ଷମାଣ କରିଥାଏ । ଓଡ଼ିଆ ସାହିତ୍ୟରେ ଅନୁରୂପ ପ୍ରତିକ୍ରିୟା ଖୁବ୍ ବିଳମ୍ବରେ ହେଲେ ମଧ୍ୟ ପ୍ରକାଶ ପାଉଛି । ପରିମାଣ ଦୃଷ୍ଟିରୁ ସ୍ୱଳ୍ପ ଏବଂ ଗତି ଅତୀବ ମନ୍ଥର ।

କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ଡଃ ସଚ୍ଚିଦାନନ୍ଦ ମହାନ୍ତିଙ୍କ ଦ୍ୱାରା ସଂଗୃହୀତ "ବିସ୍ମୃତ ପରମ୍ପରା : ଓଡ଼ିଆ ସାହିତ୍ୟରେ ନାରୀପ୍ରତିଭା (୧୮୯୮-୧୯୫୦)" (୨୦୦୨) ପୁସ୍ତକଟି ପ୍ରକାଶିତ ହୋଇଛି । ଏହି ଉଦ୍ୟମ ପାଇଁ ସେ ପ୍ରଶଂସାର ପାତ୍ର । ଓଡ଼ିଶାରେ ନାରୀ ପ୍ରଗତିମୂଳରେ ଥିବା ପ୍ରାରମ୍ଭିକ ପ୍ରଚେଷ୍ଟାର ଅନେକ ଉପାଦେୟ ତଥ୍ୟ ଏହି ପୁସ୍ତକରେ ସନ୍ନିବେଶିତ ହୋଇଥିଲେ ମଧ୍ୟ ପୂର୍ଣ୍ଣାଙ୍ଗ ନୁହେଁ । ଉକ୍ତ ପୁସ୍ତକଟିର ପ୍ରାକ୍‌କଥନ ଠାରୁ ସଂଗୃହୀତ ଲେଖିକାମାନଙ୍କ ସୃଷ୍ଟି ତଥା ସୂଚୀ ସମୂହକୁ ବିଚାର ଆଲୋଚନା କଲେ ଅନେକ ଅଭାବବୋଧ ପରିଲକ୍ଷିତ ହୋଇଥାଏ । ପ୍ରଥମତଃ ଏଥିରେ



Source: Author, Digitized by PPRACHIN, SOA

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରୁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଆ ଲେଖିକାମାନଙ୍କର ଏକ ସାମଗ୍ରିକ ଚିତ୍ରର ସୂଚନା ଦିଆଯାଇ ନାହିଁ । ଦ୍ୱିତୀୟତଃ ଉପକୂଳବର୍ତ୍ତୀ ଅଞ୍ଚଳ ବା ତଥାକଥିତ ଓଡ଼ିଶା କହିଲେ କଟକ, ପୁରୀ, ବାଲେଶ୍ୱର ବୋଲି ଯେଉଁ ଅବଧାରଣାଟି ରହିଆସିଛି ସେଇ ଉପନିବେଶବାଦୀ ମନ ଦେଇ ଲେଖକ ତାଙ୍କ ଦୃଷ୍ଟିକୋଣକୁ ସୀମିତ କରିଛନ୍ତି । ତୃତୀୟତଃ ପଶ୍ଚିମ ଓଡ଼ିଶାକୁ ପ୍ରତିନିଧିତ୍ୱ କରୁଥିବା 'ସମ୍ବଲପୁର ହିତୈଷିଣୀ' (୧୮୮୯-୧୯୨୩) ପରି ପ୍ରଖ୍ୟାତ ପତ୍ରିକା ସହିତ ସଂଶ୍ଳିଷ୍ଟ ଥିବା ପଶ୍ଚିମ ଓଡ଼ିଶାର ଲେଖିକାମାନଙ୍କୁ ଆଲୋଚନା ପରିସର ମଧ୍ୟକୁ ଆଣିନାହାନ୍ତି । ଚତୁର୍ଥତଃ ଲେଖକ ଯେଉଁ ବିନୟଭାବ ପ୍ରକାଶ ପୂର୍ବକ 'ଗୃହିଣୀ ସାହିତ୍ୟିକ' ପରମ୍ପରା ଭିତରୁ ନାରୀତ୍ୱବୋଧକୁ ପ୍ରକାଶ କରିବା ପ୍ରଚେଷ୍ଟା କରିଛନ୍ତି, ଦୁଃଖର ବିଷୟ ସେଥିରେ ନିର୍ବାଚନ କରାଯାଇଥିବା ଅଧିକାଂଶ କବିତା ଲେଖକଙ୍କର ଉଦ୍ଦେଶ୍ୟକୁ ଫଳପ୍ରସୂ କରୁନାହିଁ । ଉକ୍ତ ପୁସ୍ତକଟିର ପ୍ରକାଶନର ଦୁଇବର୍ଷ ପୂର୍ବରୁ ଡିଭାଇନ୍ ବୁକଷ୍ଟୋର, ବାଲେଶ୍ୱର, ସାତଶହ ପୃଷ୍ଠାରୁ ଅଧିକ ବିଶାଳକାୟ 'ସୁଲୋଚନାଦେବୀ' ଗ୍ରନ୍ଥାବଳୀ କିପରି ଲେଖକଙ୍କ ଦୃଷ୍ଟିପଥାରୁଢ଼ କରିନାହିଁ ଆଶ୍ଚର୍ଯ୍ୟର ବିଷୟ । ଏହି ସବୁ ଦୃଷ୍ଟିରୁ ବିଚାର କଲେ ମନେହୁଏ ଲେଖକ କୃଷ୍ଣଗହ୍ୱର ସଦୃଶ ଏକ କେନ୍ଦ୍ରାଭିମୁଖୀ ଅପ୍ରତିହତ୍ ଶକ୍ତି ସ୍ରୋତଦ୍ୱାରା ଗଭୀର ଭାବେ ପ୍ରଭାବିତ ଏବଂ ଆକ୍ରାନ୍ତ । କେନ୍ଦ୍ର ବିଚ୍ୟୁତି ମନନଶୀଳତାର ଅଭାବ ହେତୁ ଓଡ଼ିଶାର 'ଗୃହିଣୀ ସାହିତ୍ୟ' ପରମ୍ପରାରେ ଉପେକ୍ଷିତ ହୋଇ ପଡିଛନ୍ତି ସୁଲୋଚନା ଦେବୀଙ୍କ ପରି ଅନ୍ୟାନ୍ୟ ଲେଖିକା ।

ଅବହେଳିତ ନାରୀ ପ୍ରତିଭା ସୁଲୋଚନା ଦେବୀ (୧୮୯୫-୧୯୪୭) ଦୀର୍ଘ ବର୍ଷ ଧରି କବିତା, ପ୍ରବନ୍ଧ, ନାଟକ ଏବଂ ଅନୁବାଦ ମଧ୍ୟରେ ନିଜର ସାହିତ୍ୟିକ ପ୍ରାଣଟିକୁ ସମର୍ପିତ କରିଛନ୍ତି । ତାଙ୍କର ଆଧ୍ୟାତ୍ମିକ ଓ ରହସ୍ୟବାଦୀ ଚେତନା ମଧ୍ୟରେ ସ୍ୱବ୍ୟକ୍ତିତ୍ୱ ତଥା ନାରୀର ଆବେଗ ସଂପର୍କିତ ସୃଷ୍ଟିସମୂହ ତତ୍କାଳୀନ ସାହିତ୍ୟିକଙ୍କ ମହଲରେ ବେଶ୍ ଚର୍ଚ୍ଚିତ ହୋଇଥିଲା । ଫକୀରମୋହନ ସେନାପତି, ଗଙ୍ଗାଧର ମେହେର, ନୀଳମଣି ବିଦ୍ୟାରତ୍ନ, ଗୋପାଳ ଚନ୍ଦ୍ର ପ୍ରହରାଜ ତଥା ରାଜକବି ତ୍ରିଭୁବନ ଦେବ ପ୍ରଭୃତି ପ୍ରତିଷ୍ଠିତ ସାହିତ୍ୟିକମାନଙ୍କ ଠାରୁ ଲେଖିକା ପ୍ରଭୂତ ପ୍ରେରଣା ପାଇଥିଲେ ।

ସୁଚ୍ଛଳ ଦେବଙ୍କ ସମୟରୁ ଆରମ୍ଭ ହୋଇଛି ବାମଣ୍ଡାର ଏକ ଅଭିନବ ସାଂସ୍କୃତିକ ଆନ୍ଦୋଳନ । ଶିକ୍ଷା ତଥା କୃଷିର ଅଭିବୃଦ୍ଧି, ଏକ ସୁସମାଜ ଗଠନ ପାଇଁ ବିଜ୍ଞାନ ଭିତ୍ତିକ ତାଙ୍କର ନିରନ୍ତର ସଯତ୍ନ ପ୍ରୟାସ ଏବଂ ମାତୃଭାଷା ତଥା ସାହିତ୍ୟର ଉନ୍ନତି ପାଇଁ ତାଙ୍କର ବଳିଷ୍ଠ ପଦକ୍ଷେପମାନ ଓଡ଼ିଶା ଇତିହାସରେ ଅବିସ୍ମରଣୀୟ । "ବାମଣ୍ଡାର ସୁଚ୍ଛଳ ପ୍ରେସର ପ୍ରତିଷ୍ଠା (୧୮୮୪) ଓ ସମ୍ବଲପୁର ହିତୈଷିଣୀ (୧୮୮୯) ସମ୍ବାଦପତ୍ରର ପ୍ରକାଶ ମାଧ୍ୟମରେ ଏକ ନୂତନ ଲେଖକ ଶ୍ରେଣୀ ଅଭ୍ୟୁଦୟ ଲାଭ କରିବାର ବାତାବରଣ ସେ ତିଆରି କରିଥିଲେ ।" (ନଟବର ସାମନ୍ତରାୟ, ପୃ-୫୭୦)[୧] ଏତଦ୍ବ୍ୟତୀତ ସେ ଥିଲେ



Source: Author, Digitized by PPRACHIN, SOA

"ଯୁକ୍ତିନିଷ୍ଠ ସତ୍ୟ ପଥର ପଥିକ । ଅଯଥା କୁସଂସ୍କାରକୁ ସେ ପ୍ରଶୟ ଦେଉନଥିଲେ । ନାରୀମାନଙ୍କୁ ଶିକ୍ଷାଦେବା ସେ ଯୁଗର ପାପ ରୂପେ ଗୃହୀତ ହେଉଥିଲା । କିନ୍ତୁ ବାସୁଦେବ ପ୍ରଥମେ ରାଜକୁମାରୀମାନଙ୍କ ଶିକ୍ଷାର ବ୍ୟବସ୍ଥା କରି ପରେ ଅନ୍ୟାନ୍ୟ କୁମାରୀମାନଙ୍କୁ ଶିକ୍ଷାପ୍ରଦାନର ସୁଯୋଗ ସୃଷ୍ଟି କରିଥିଲେ ।"(୨) (ବାସୁଦେବ ଗ୍ରନ୍ଥାବଳୀ, ପୃ-୪୦) ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାକୁ ଯାଇ ସୁଦ୍ଧଳ ଦେବ ଘୋଷଣା କରିଥିଲେ ଯେ, ଏକ ନିର୍ଦ୍ଦିଷ୍ଟ ବୟସ ହେବା ପରେ ପ୍ରତ୍ୟେକ ଅଭିଭାବକ ସେମାନଙ୍କ ପିଲାମାନଙ୍କୁ ଯେପରି ସ୍କୁଲ ପଠାନ୍ତି; ଏଥିରେ ବ୍ୟତିକ୍ରମ ହେଲେ ଅଭିଭାବକମାନଙ୍କ ଉପରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ସୁଦ୍ଧଳଦେବଙ୍କ ନିର୍ଦ୍ଦେଶ ହେଉ କିମ୍ବା ଆଧୁନିକ ମନ ନେଇ ଆଧୁନିକ ଶିକ୍ଷା, ସଂସ୍କୃତି ପ୍ରସାର ନିମନ୍ତେ ପ୍ରୟାସ ହେଉ, ଏ ସବୁର ଏକ ସମ୍ମିଶ୍ରଣ ରୂପ ବାମଣ୍ଡାର ସାମଗ୍ରିକ ଜୀବନଧାରା ଉପରେ ଗଭୀର ପ୍ରଭାବ ପକାଇଥିଲା । ପାରିପାର୍ଶ୍ୱିକ ବୌଦ୍ଧିକ ପ୍ରକ୍ରିୟା ସୁଲୋଚନା ଦେବୀଙ୍କୁ ଶିକ୍ଷା ପ୍ରଦାନ ତଥା ସର୍ଜନଶୀଳ ମନୋଭାବ ସୃଷ୍ଟି କରିବାରେ ପ୍ରମୁଖ ଭୂମିକା ନେଇଛି । "ସାହିତ୍ୟିକ ପିତା ଦୀନବନ୍ଧୁ ଗଡ଼ନାୟକଙ୍କ ତତ୍ତ୍ୱାବଧାନରେ ଶୈଶବରୁ ସାହିତ୍ୟିକ ଅଭିରୁଚି ଗଢ଼ିଉଠେ । ହିତୈଷିଣୀର ଗଦାଗଦା ପ୍ରାଚୀନ ସଂଖ୍ୟା, ଓଡ଼ିଆ, ବଙ୍ଗଳା, ଇଂରାଜୀ, ସଂସ୍କୃତ ପୁସ୍ତକର ସ୍ତୂପ, ଉତ୍କଳ ସାହିତ୍ୟ, ଉତ୍କଳ ଦୀପିକା, ଉତ୍କଳ ମଧୁପର ବାଲିଘର ଭିତରେ ସୁଲୋଚନାଙ୍କ ଶୈଶବ ସ୍ୱପ୍ନିଳ ହୋଇଉଠିଥିଲା । ଏମିତି ଏକ ପୃଷ୍ଠଭୂମି ଏ ନାରୀ କବିଙ୍କର ସୃଷ୍ଟିକୁ କରିଥିଲା ସ୍ୱାଭାବିକ ଓ ଆବେଗପୂର୍ଣ୍ଣ ।"(୩) (ଫଣୀନ୍ଦ୍ର ଭୂଷଣ ନନ୍ଦ, ପୃ-୧୪୨) । ସୁଲୋଚନା ଦେବୀଙ୍କ ପିତା ଦୀନବନ୍ଧୁ ଗଡ଼ନାୟକ (୧୮୭୬-୧୯୩୨) ଥିଲେ ଜଣେ ସଚ୍ଚା ସାହିତ୍ୟିକ । ପିତା (ଶ୍ରୀପତି ଗଡ଼ନାୟକ) ଏବଂ ବଡ଼ ଭାଇ (ଜଗନ୍ନାଥ ଗଡ଼ନାୟକ)ଙ୍କ ଆଦର୍ଶରେ ଅନୁପ୍ରାଣିତ ଦୀନବନ୍ଧୁ ସାହିତ୍ୟ ସେବା ପରି ପବିତ୍ର କର୍ମକୁ ଜୀବନରେ ପାଥେୟ କରିଥିଲେ । ସାହିତ୍ୟ ଓ ସଂସ୍କୃତି ପ୍ରତି ଗଭୀର ଅନୁରକ୍ତ ଦୀନବନ୍ଧୁ ୨୮.୮.୧୯୦୯ ଠାରୁ ଶେଷ ପର୍ଯ୍ୟନ୍ତ ସମ୍ବଲପୁର ହିତୈଷିଣୀର ସଙ୍କଟମୟ ପରିସ୍ଥିତିରେ ସଂପାଦକ ହେବା ସହିତ ଏହାର କଳେବର ବୃଦ୍ଧି କରିଥିଲେ । "ଏଥିପାଇଁ ଶିକ୍ଷିତ ବ୍ୟକ୍ତିମାନଙ୍କ ଠାରୁ ସେ ଉତ୍କଟ ରାଜନୀତି ବ୍ୟତୀତ ଅନ୍ୟ ସମସ୍ତ ବିଷୟରେ ଲେଖା ଆହ୍ୱାନ କରୁଥିଲେ ।"(୪) (ଫଣୀନ୍ଦ୍ର ଭୂଷଣ ନନ୍ଦ, ପୃ-୩୫)

ସମାଜରେ ଥିବା ନରବଳି, ପଶୁବଳି, କ୍ରୀତଦାସ ପ୍ରଥା, କନ୍ୟାସୁନା ପ୍ରଥା ଆଦି ନାନାଦି କୁସଂସ୍କାର ତଥା ସାମାଜିକ ବ୍ୟାଧି ବିରୁଦ୍ଧରେ ହିତୈଷିଣୀ ଯେପରି ନିଜର ସ୍ୱର ଉତ୍ତୋଳନ କରୁଥିଲା ସେହିପରି ନାରୀ ଜାତିର ଅନଗ୍ରସରତା ତଥା ଏମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟର ଅବନତିକୁ ଲକ୍ଷ୍ୟକରି ପୁରୁଷ ଶାସିତ ସମାଜକୁ ତୀବ୍ର ସମାଲୋଚନା କରିଛି । "ଏ ଦେଶରେ ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ଅପେକ୍ଷା ଅଧିକତର ଯନ୍ତ୍ରଣା ସହିବାକୁ ପଡୁଛି । ପୁରୁଷମାନେ ତାହା ଦେଖି ନ ଦେଖିଲା ପରି ହେଉଅଛନ୍ତି, କେହି ସେମାନଙ୍କର ଯନ୍ତ୍ରଣା



Source: Author, Digitized by PPRACHIN, SOA

କଥା ଉଲ୍ଲେଖ କଲେ ସମାଜଦ୍ରୋହୀ, ବିଧର୍ମୀ ବୋଲି ତିରସ୍କାର ହେଉଅଛନ୍ତି । ଏହା ପୁରୁଷମାନଙ୍କର ସଂକୀର୍ଣ୍ଣ ସ୍ୱାର୍ଥପରତା ଓ ନିର୍ମମତାର ପରିଚାୟକ ।" (ସମ୍ବଲପୁର ହିତୈଷିଣୀ, ୩/୩) ନାରୀ ଜାତି ଓ ଶକ୍ତିର ଅଭ୍ୟୁତ୍‌ଥାନ, ପୁରୁଷତାନ୍ତ୍ରିକ ସମାଜରେ ନାରୀ ମୁଖରେ ଭାଷା ସୃଷ୍ଟି ପାଇଁ ପ୍ରେରଣା, ରାଷ୍ଟ୍ର ନିର୍ମାଣରେ ନାରୀକୁ ଅଙ୍ଗୀଭୂତ କରିବା ପାଇଁ ସମ୍ବଲପୁର ହିତୈଷିଣୀ ଯେପରି ଅଙ୍ଗୀକାରବଦ୍ଧ ଥିଲା ଏବଂ ଏ ସମ୍ପର୍କରେ ରାଶି ରାଶି ପ୍ରବନ୍ଧମାନ ପ୍ରକାଶ କରୁଥିଲା ସେହିପରି ଅନ୍ୟାନ୍ୟ ପତ୍ର ପତ୍ରିକାମାନଙ୍କ ଭୂମିକାକୁ ମଧ୍ୟ ଅସ୍ୱୀକାର କରାଯାଇନପାରେ । ନାରୀ ସଚେତନତାକୁ ଲୋକାଭିମୁଖୀ କରାଇବା ପାଇଁ ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନ (୧୩/୧୪-୪-୧୯୦୬)ରେ ସଭାପତି ଆସନରେ ଅଳଙ୍କୃତ ହୋଇ ତାଳଚେରର ରାଜା ଶ୍ରୀମାନ କିଶୋର ଚନ୍ଦ୍ର ବୀରବର ହରିଚନ୍ଦନ ତାଙ୍କର ଅଭିଭାଷଣରେ ସ୍ତ୍ରୀ ଶିକ୍ଷାର ଉନ୍ନତି ପାଇଁ ଶ୍ରୀମତୀ ରେବା ରାୟଙ୍କ ଭୂମିକାକୁ ପ୍ରଶଂସା କରିବା ସହିତ ଓଡ଼ିଶାରେ ନାରୀ ଶିକ୍ଷାର ଆବଶ୍ୟକତାକୁ ଉପଲବ୍ଧି କରି ଜନସାଧାରଣଙ୍କୁ ଆହ୍ୱାନ ଦେଇ କହିଥିଲେ, "ଆଜିକାଲି ସାଧାରଣ ସ୍ତ୍ରୀ କଥାର କଥା ଉତ୍ତୋଳନ କଲେ ରକ୍ଷଣଶୀଳ ଦଳ ଖଡ୍ଗ ହସ୍ତ ହୋଇ ଉଠନ୍ତି । ଭାଇମାନେ, ପରମ୍ପରା ରୀତି ଅନୁକରଣ କରିଥିବାରୁ ଆପାତଃ ସ୍ତ୍ରୀ ଶିକ୍ଷା ଅସଙ୍ଗତ ବୋଧ ହେଉଅଛି ବୋଲି କି 'କନ୍ୟା ପ୍ୟେବ ପାଳନୀୟା ଶିକ୍ଷଣିୟାପି ଯତ୍ନତଃ" ଏହି ଉପଦେଶ ବାକ୍ୟକୁ ହୃଦୟରେ ସ୍ଥାନ ଦେବା ନାହିଁ? କନ୍ୟାକୁ ଲାଳନ ପାଳନ କରି ବୟସ୍କା ହେଲାରୁ ପରହସ୍ତ କରିବାହିଁ କି ପିତାର ଏକମାତ୍ର ଧର୍ମ? କନ୍ୟାକ୍‌ ଶିକ୍ଷିତା କରିବା କି ତାହାଙ୍କର କର୍ତ୍ତବ୍ୟ କାର୍ଯ୍ୟ ନୁହେଁ ? ଭାଇମାନେ! ଯଦିଓ ସ୍ତ୍ରୀ ଜାତିକୁ ସୁଲକ୍ଷଣୀ କରିବାର ମାନସ ଥାଏ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦିଅ । ଯଦି ଦେଶରେ ସୁକନ୍ୟା, ସୁଗୃହିଣୀ, ସୁଜନନୀ ଦେଖିବାକୁ ଇଚ୍ଛାକର ତେବେ ସ୍ତ୍ରୀ ଜାତିକୁ ସୁଶିକ୍ଷା ପ୍ରଦାନ କର ।" (ଉତ୍କଳ ଦୀପିକା, ୪୧/୧୬)

ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ, ଏହି ଶହେ ବର୍ଷ ଓଡ଼ିଶାରେ ନାରୀଶିକ୍ଷାର ପ୍ରଚାର ପ୍ରସାର ତଥା ତା'ର ସ୍ୱାଧିକାର ସଂପର୍କରେ ସମାଜର ସଚେତନଶୀଳ ବ୍ୟକ୍ତିବୃନ୍ଦ ବହୁ ଉଦ୍ୟମ କରିଛନ୍ତି । ଅନୁକୂଳ ପରିସ୍ଥିତି ତଥା ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଚେଷ୍ଟା ଫଳରେ ଯେଉଁ କେତେକ ନାରୀ ପ୍ରତିଭା ସେମାନଙ୍କର ବିକଶିତ ପ୍ରଜ୍ଞାକୁ ଆଧାର କରି ସୃଜନଶୀଳ କ୍ଷେତ୍ରରେ ପ୍ରବେଶ କରିଛନ୍ତି ସେମାନଙ୍କ ମଧ୍ୟରୁ ସୁଲୋଚନା ଦେବୀ ଅନ୍ୟତମ ।

ଦେବଗଡ଼ର ନନେଇ ଗ୍ରାମରେ (ବର୍ତ୍ତମାନ ରେଙ୍ଗାଲୀ ନଦୀବନ୍ଧ ପ୍ରକଳ୍ପ ହେତୁ ଜଳମଗ୍ନ) ୧୮୮୫ ମସିହାରେ ସୁଲୋଚନା ଦେବୀ ଜନ୍ମଗ୍ରହଣ କରିଥିଲେ । ଗ୍ରାମ ବିଦ୍ୟାଳୟରେ ଏକବର୍ଷ ଏବଂ କଲିକତାରେ ଛଅବର୍ଷ ରହଣି ଓ ବିଦ୍ୟାଧ୍ୟୟନ ପରେ ପୁନଶ୍ଚ ବାମଣ୍ଡାରେ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଭର୍ତ୍ତି ହୋଇଥିଲେ । ନିମ୍ନ ପ୍ରାଥମିକ



Source: Author, Digitized by PPRACHIN, SOA

ପରୀକ୍ଷାରେ ସମଗ୍ର ଷ୍ଟେଟ୍‌ରେ ପ୍ରଥମ ହୋଇ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଠାରୁ ରୌପ୍ୟପଦକ ପ୍ରାପ୍ତ ହୋଇଥିଲେ । ୧୯୦୯ ମସିହାରେ ବାମଣ୍ଡା ମିଡିଲ ଭର୍ଣ୍ଣାକୁଲାର ପରୀକ୍ଷାର ଦ୍ୱିତୀୟ ବିଭାଗରେ ଉତ୍ତୀର୍ଣ୍ଣ ହୁଅନ୍ତି । ପ୍ରଥମ ଉତ୍ତୀର୍ଣ୍ଣ ବାଳିକା ହିସାବରେ ବାମଣ୍ଡାର ମହାରାଣୀ ତମ୍ବରୁଧର ପ୍ରିୟା ଦେବୀଙ୍କ ଠାରୁ ସ୍ୱର୍ଣ୍ଣପଦକ ପାଇଥିଲେ । ସେହିବର୍ଷ ବାରକୋଟ ପ୍ରଗଣା ଅନ୍ତର୍ଗତ ସଇଡ଼ା ଗ୍ରାମସ୍ଥ ଶ୍ରୀଯୁକ୍ତ କୃତାର୍ଥ ପ୍ରଧାନଙ୍କ ସହିତ ଶୁଭପରିଣୟ ସମାପନ ହୁଏ । ବୈବାହିକ ଜୀବନର ମାତ୍ର ଦଶବର୍ଷରେ କୃତାର୍ଥ ପ୍ରଧାନଙ୍କ ମୃତ୍ୟୁ ହୁଏ । ଉକ୍ତଟ ଆର୍ଥିକ ସମସ୍ୟାକୁ ସୁଧାରିବା ନିମନ୍ତେ ୧୯୨୨ ମସିହାରେ ଦେବଗଡ଼ର ମନ୍ଦାକିନୀ ବାଳିକା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଯୋଗ ଦିଅନ୍ତି । ସଂଘର୍ଷମୟ ସାଂସାରିକ ଜୀବନ ତାଙ୍କ ସର୍ଜନଶୀଳ ମାନସିକତାକୁ ଅଧିକ ଉଦ୍ଦୀପ୍ତ କରେ । ସାହିତ୍ୟ ତଥା ସମାଜ ସଂପର୍କିତ ଅବଧାରଣାର ଜଟିଳ ସୂତ୍ର ଗୁଡ଼ିକ ଧୀରେଧୀରେ ଉନ୍ମୁକ୍ତ ହୁଏ । ପୂର୍ବର ସଂସ୍କାର; ଗଭୀର ଅଧ୍ୟୟନ ତଥା ବୌଦ୍ଧିକ ମନନଶୀଳତାର ଜାଗରଣ ହେତୁ ତାଙ୍କର ସୃଷ୍ଟି ପ୍ରକ୍ରିୟା ହୋଇଛି ଶାଣିତ ରସଯୁକ୍ତ । ଭାରତୀୟ ଜୀବନ ଦର୍ଶନ ତାଙ୍କ ଚିନ୍ତା ଚେତନାର ଭିତ୍ତିଭୂମି । ଭାରତ ଇତିହାସରେ ସ୍ଥାନିତ ଐତିହାସିକ ନାରୀ ଚରିତ୍ରକୁ ସେ ନିଜର ଆଦର୍ଶ ରୂପେ ଗ୍ରହଣ କରିଛନ୍ତି । ଏତଦବ୍ୟତୀତ ଓଡ଼ିଶାର ସାଂସ୍କୃତିକ ପରମ୍ପରା ପ୍ରତି ରହିଛି ତାଙ୍କର ପ୍ରଗାଢ଼ ଅନୁରକ୍ତି । ପାଶ୍ଚାତ୍ୟ ସାହିତ୍ୟ ବିଶେଷ କରି ସେକ୍‌ସପିୟରଙ୍କ ନାଟକ ପ୍ରତି ତାଙ୍କର ଆକର୍ଷଣ ହେତୁ ସେସବୁର ଗଳ୍ପ ରୂପାୟନ କରିଛନ୍ତି ।

ଐତିହାସିକ ଚରିତ୍ର ଉପରେ ପର୍ଯ୍ୟବସିତ 'ପଦ୍ମିନୀ' (୧୯୦୯) ଯଦିଓ ତାଙ୍କର ପ୍ରଥମ ବାକ୍ୟ ତେବେ ନିଜସ୍ୱ ମୌଳିକ ସର୍ଜନଶୀଳତାର ପ୍ରଥମ ଆଲେଖ୍ୟ ହେଉଛି ଗଦ୍ୟପଦ୍ୟ ସମିଶ୍ରିତ 'ଅବକାଶ ମଂଜରୀ' (୧୯୧୪) । ଏହି ପୁସ୍ତକଟି ପ୍ରକାଶ ପାଇବା ପରେ ଗଙ୍ଗାଧର ମେହେର, ଶଶିଭୂଷଣ ରାୟ, ଚିନ୍ତାମଣି ମହାନ୍ତି ପ୍ରମୁଖ ବିଶିଷ୍ଟ ସାହିତ୍ୟିକମାନେ ଏହାର ଭୂୟସୀ ପ୍ରଶଂସା କରିଛନ୍ତି । ଏହି ପୁସ୍ତକଟି ସମୀକ୍ଷା କରି ଗଙ୍ଗାଧର ମେହେର ଲେଖନ୍ତି, "ଏହି ପୁସ୍ତକ ପାଠ କଲେ ଏହା ଜଣେ ୧୫/୧୬ ବର୍ଷର ବାଳିକା ଦ୍ୱାରା ରଚିତ ହୋଇଥିବାର ବିଶ୍ୱାସ ହୁଏ ନାହିଁ, ତେବେ ମାନ୍ଦ୍ରାଜର ଜଣେ କିରାଣୀ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଦୁଃସାଧ ଗଣିତ ପ୍ରଶ୍ନର ସମାଧାନ କରିଥିବା କଥା ଭାବିଲେ ଆଉ ଅବିଶ୍ୱାସ କରିବାର ମାର୍ଗ ଥାଏ ନାହିଁ । ପୁସ୍ତକର ରଚୟିତା ଶ୍ରୀମତୀ ସୁଲୋଚନା ଦେଈ ଅଟନ୍ତି । ସେ ଆପଣାର ବିଜ୍ଞ ପିତା ଶ୍ରୀମାନ ଦୀନବନ୍ଧୁ ଗଡ଼ନାୟକଙ୍କ ଯତ୍ନରେ ଯେଉଁ ନିୟମରେ ଶିକ୍ଷାପ୍ରାପ୍ତ ହୋଇଅଛନ୍ତି ତହିଁରେ ତାଙ୍କର ଜ୍ଞାନର ଉନ୍ନତି ହୋଇଥିବା ସଂପୂର୍ଣ୍ଣ ସମ୍ଭବ । ଈଶ୍ୱରଦତ୍ତ ପ୍ରତିଭା ଅନୁକୂଳ ଅବସ୍ଥା ଲାଭକରି ଶୀଘ୍ର ବିକଶିତ ହୋଇପଡ଼ିଥିବାର ବୋଧହୁଏ । ପୁସ୍ତକର ୨୬ଟି ପଦ୍ୟ ୮ ଗୋଟି ଗଦ୍ୟ ପ୍ରବନ୍ଧ ଅଛି । ସମସ୍ତ ପ୍ରବନ୍ଧ ସୁରୁଚି ସଙ୍ଗତ, ସୁରଚିତ ଓ ସୁପାଠ୍ୟ । ଈଶ୍ୱର ଶ୍ରୀମତୀ ସୁଲୋଚନା ଦେଈଙ୍କୁ



Source: Author, Digitized by PPRACHIN, SOA

ସ୍ୱାସ୍ଥ୍ୟ ଓ ଚିରାୟୁ ପ୍ରଦାନ କରି ଉତ୍କଳର ଜଣେ ଆଦର୍ଶ ନାରୀ କରାନ୍ତୁ ।" (ସମ୍ବଲପୁର ହିତୈଷିଣୀ, ୨୫/୨୪) ସମ୍ବଲପୁର ହିତୈଷିଣୀର ଏହି ସଂଖ୍ୟାରେ ମଧ୍ୟ ଶଶିଭୂଷଣ ରାୟ ନିଜର ମନ୍ତବ୍ୟ ପ୍ରକାଶ କରି ଲେଖିଛନ୍ତି, "ଅବକାଶ ମଞ୍ଜରୀ" ପାଇ ସମସ୍ତ ବହିଖଣ୍ଡ ଦୁଇଥର ପାଠକରି ପୁଣି ଭଲକରି ରଚନାଗୁଡ଼ିକ ୪/୫ ଥର ପଢ଼ି ସୁଦ୍ଧା ତୃପ୍ତ ହୋଇପାରିଲି ନାହିଁ । ଅନ୍ତଃପୁରରେ ରହି ଆପଣ ଯେଉଁ ଅତୁଳନୀୟ ଆଦର୍ଶ ଦେଖାଇଦେଲେ ତାହା ସମଗ୍ର ଉତ୍କଳରେ ବର୍ତ୍ତମାନ ଅନୁକରଣୀୟ । ଆପଣଙ୍କ 'ଗୋଟିଏ ଚିତ୍ର', 'ଶରତ ପ୍ରଭାତେ', 'ବୃଷ୍ଟି ବିନ୍ଦୁର ଉକ୍ତି', 'ଶରତ' ଓ 'ଶିଶିର ହାସ୍ୟ' ପ୍ରଭୃତି କବିତାଗୁଡ଼ିକର ଭାବ ପ୍ରବାହ ଆପଣଙ୍କ ଶ୍ୱଶୁରାଳୟରେ ଉପକଣ୍ଠବର୍ତ୍ତୀ ବ୍ରାହ୍ମୀନଦୀର ସଲିଳ-ପ୍ରବାହବତ୍ ସ୍ୱଚ୍ଛ, ସୁଗଭୀର ଏବଂ ସ୍ନିଗ୍ଧବତ୍ ବୋଧ ହେଲା । ପର୍ବତ ଓ ଅରଣ୍ୟ ସଂକୁଳ ବାମଣ୍ଡା ରାଜ୍ୟରେ ରାଜା ଶ୍ରୀ ସଚ୍ଚିଦାନନ୍ଦଙ୍କ ଉତ୍ସାହ ପ୍ରଭାବରୁ ଆପଣଙ୍କ ଭଳି ପ୍ରକୃତ ପ୍ରତିଭାନ୍ୱିତ ଉତ୍କଳକନ୍ୟାଙ୍କ ଆବିର୍ଭାବ ସମଗ୍ର ଉତ୍କଳରେ ଗୌରବର ବିଷୟ ଏହା ସୁନିଶ୍ଚିତ !.. ବାମଣ୍ଡାର ପ୍ରକୃତି ଦେବୀଙ୍କ କ୍ରୋଡ଼ରେ ବଢ଼ି ସଂସାର ଧର୍ମ ପାଳନ କରି ଆପଣ ଦୀର୍ଘ ଜୀବନୀ ହୋଇଥାଆନ୍ତୁ ଏତିକି ଐକାନ୍ତିକ କାମନା । ଆପଣଙ୍କ ଲେଖନୀରେ ପୁଷ୍ପଚନ୍ଦନ ବୃଷ୍ଟିହେଉ... ଆପଣଙ୍କ କବିତାର ଦୁଇଧାଡ଼ି ଗାଉଅଛି,

"ହାଏ ଏ କଳ୍ପନା କେତେଜଣ ପକ୍ଷେ
ସାର୍ଥକ ବା ହେଇଅଛି
ହୃଦ ଆଶା ନୁହଁ ଫୁଟି ନ ପାରିଣ
ପୁଣି ହୃଦେ ମିଶିଅଛି ।" (ସ.ହି.୨୫/୨୪)

୧୬.୫.୧୯୧୪ରେ 'ଉତ୍କଳ ଦୀପିକା'ରେ ଏହି ପୁସ୍ତକର ଏକ ସମୀକ୍ଷା ପ୍ରକାଶିତ ହୋଇଥିଲା । ସମୀକ୍ଷାଟି ଏହିପରି ଥିଲା, "ଶ୍ରୀମତୀ ସୁଲୋଚନା ଦେବୀ ବହୁକାଳ ଉତ୍କଳରେ କବିତା ଲେଖିବାର ଚେଷ୍ଟା କରୁଅଛନ୍ତି ଏବଂ ତାଙ୍କ ଲେଖା ପ୍ରଥମେ ଯେତେ ଆଦରଣୀୟ ହୋଇନଥିଲେ ହେଁ ସାଧନା ଗୁଣରେ ଏଥିରେ ପ୍ରକାଶିତ ହୋଇଥିବା କବିତାମାନ ଯେମନ୍ତ ମଧୁର ତେମନ୍ତ ସୁରସାଶ୍ରିତ ଅଟେ । 'ସମୟ ଓ ଜୀବନ' କବିତାଟି ଅତୀବ ଉପାଦେୟ ହୋଇଅଛି । 'ଯୌବନର ଅନ୍ତେ ଆସଇ ଅଗ୍ରତେ ପୌଢ଼ ଆଉ ବୃଦ୍ଧକାଳ/ଶିଥିଳ ହୁଅଇ ଶରୀରର ପେଶୀ ଛିଡ଼ିଯାଏ ଆଶା ଜାଲ ।' ପ୍ରଭୃତି ସରଳ କବିତା ସ୍ତ୍ରୀମାନଙ୍କ ପକ୍ଷେ ବିଶେଷ ଉପଯୋଗୀ ଓ ଉପଦେଶପୂର୍ଣ୍ଣ । ବସନ୍ତାଦି କେତେଗୁଡ଼ିଏ ବଙ୍ଗଳା ସୁନ୍ଦର କବିତା ମଧ୍ୟ ଅନୁବାଦିତ ହୋଇ ଏଥିରେ ପ୍ରକାଶିତ ହୋଇଅଛି ଏବଂ ଶେଷକୁ ସ୍ତ୍ରୀମାନଙ୍କ ଜ୍ଞାତବ୍ୟ ନାନା ପ୍ରକାର ଉପଦେଶ ଦିଆଯାଇଥିବାରୁ ଗ୍ରନ୍ଥଖଣ୍ଡି ବ୍ୟବହାର୍ଯ୍ୟ ହୋଇଥିବା ବିଷୟରେ ସନ୍ଦେହ ନାହିଁ । ନାନା ସ୍ଥାନରେ ଛାପା ଓ ଭାଷା ଦୋଷ ରହିଯାଇଅଛି ଏବଂ କବିତାର କେତେକ ସ୍ଥଳରେ ଯତିଯାତ ଦୋଷ ମଧ୍ୟ ଅଛି । ଏଥିପ୍ରତି ଭବିଷ୍ୟତକୁ ସାବଧାନ ହେବା



Source: Author, Digitized by PPRACHIN, SOA

ବାଞ୍ଛନୀୟ । ଏହା ସ୍ତ୍ରୀମାନଙ୍କ ପକ୍ଷେ ବିଶେଷ ପଠନୋପଯୋଗୀ ହୋଇଥିବାରୁ ସକଳ ସ୍ତ୍ରୀ ହାତରେ ରହିବା ଉଚିତ ।" (ଉ.ଦୀ.-୪୯/୨୦)ତତ୍‌କାଳୀନ ସାମାଜିକ ତଥା ସାଂସ୍କୃତିକ ପରିବେଶ ସୁଲୋଚନା ଦେବୀଙ୍କ ଜୀବନ ଉପରେ ଯେପରି ପ୍ରଭାବ ବିସ୍ତାର କରିଛି ତାର ପ୍ରତିକ୍ରିୟା ତାଙ୍କ ସୃଜନ ପ୍ରକ୍ରିୟାରେ ଉପଲବ୍ଧ । ଜୀବନ ସଂଗ୍ରାମ ସହିତ ତାଙ୍କ ସୃଷ୍ଟିସମୂହ କେତେବେଳେ ଭାରାକ୍ରାନ୍ତ, କେତେବେଳେ ଉଚ୍ଛ୍ୱସିତ । ଗ୍ରାମୀଣ ସଂସ୍କୃତି ଭିତରେ ଲାଳିତପାଳିତ ତାଙ୍କ ସୃଷ୍ଟିଶୀଳ ମନୋଭାବକୁ ଅତି ଯତ୍ନ ସହକାରେ କବିତା, ପ୍ରବନ୍ଧ ତଥା ନାଟକ ମାଧ୍ୟମରେ ପ୍ରକାଶ କରିଅଛନ୍ତି । ପାଶ୍ଚାତ୍ୟ ସାହିତ୍ୟର ରୂପ ଓ ଶୈଳୀ ପ୍ରତି ଦୁର୍ବଳତାକୁ ପରିହାର କରି ନିଜ ଭାବ ପ୍ରକାଶ ପାଇଁ ସେ ଏକାତ୍ମ ଭାବେ ଓଡ଼ିଶୀ ମାଟି, ପାଣି, ପବନର କଥା କହିଛନ୍ତି ଏବଂ ପ୍ରଚଳିତ ଧାରା ଭିତର ଦେଇ ନିଜ ସାହିତ୍ୟିକ ରୂପ ରଚନାକୁ ପ୍ରକାଶ କରିଛନ୍ତି । ଯେଉଁଥିରେ ନାରୀମୁକ୍ତି ଭାବନା ରହିଛି, ନାରୀ ସ୍ୱାଧୀନତାର କଥା ରହିଛି କିନ୍ତୁ ସେସବୁ ସାଂପ୍ରତିକ ନାରୀର ସ୍ୱେଚ୍ଛାଚାରୀର ମନୋଭାବ ଠାରୁ ବହୁ ଉର୍ଦ୍ଧ୍ୱରେ । ସାମାଜିକ କୁସଂସ୍କାର ତଥା ଶିକ୍ଷା ସଚେତନତାର ଅଭାବ ଭିତରେ ବଞ୍ଚିଥିବା ନାରୀ ସମାଜର ପୁନରୁତ୍ଥାନ ପାଇଁ ସୁଲୋଚନା ଦେବୀ କିପରି ମାନସିକ ସ୍ତରରେ ସଂଗ୍ରାମରତା ଥିଲେ ତାହା ତାଙ୍କର ସୃଷ୍ଟିସମୂହକୁ ଆକଳନ କରିପାରିବା ।

ସମାଜରେ ପୁରୁଷ ଓ ନାରୀର ସମାନ ଅଧିକାର ରହିଛି । ସେଇ ଆକାଂକ୍ଷିତ ଜୀବନ କିପରି ନାରୀ ପ୍ରତି ଅନୁକୂଳ ହେବ ତାହା 'ବାମା ହିତାର୍ଥୀର ଆଶା' କବିତାରେ ପ୍ରକଟିତ । ସେଥିପାଇଁ ନାରୀ ନିଜ ରୂପ ସୌନ୍ଦର୍ଯ୍ୟକୁ ଗୁରୁତ୍ୱ ନଦେଇ 'ଗୁଣର ଗୌରବ' ନେଇ ବଞ୍ଚିବା ଦରକାର । ସାଂସାରିକ କର୍ମ ସହିତ ଅର୍ଥ ପିପାସୁ ନହୋଇ ଜଗତର କଲ୍ୟାଣ ପାଇଁ ଉତ୍ସର୍ଗୀକୃତ ମନୋଭାବ ପୋଷଣ କରିବା ଉଚିତ୍ ବୋଲି ଲେଖିକା ଦର୍ଶାଇଛନ୍ତି । 'ଶୁଭ ସମାଚାର' କବିତାଟି ବାମଣ୍ଡାର ନରପତି ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଯେମାମଣି ମିଡଲ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ୧ମ ବିଭାଗରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିବା ହେତୁ ତାଙ୍କ ଉଦ୍ଦେଶ୍ୟରେ ରଚିତ ହେଲେ ହେଁ ଶିକ୍ଷା କ୍ଷେତ୍ରରେ ଉତ୍କଳ ନାରୀର ପ୍ରବେଶ ପାଇଁ ଏହା ଏକ ପ୍ରେରଣାମୂଳକ କବିତା । ଯେମାମଣିଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ଲେଖିକା କୁହନ୍ତି –

"ଯେ ଅଧ୍ୟବସାୟେ ଯେମା ସୁକୁମାରୀ
ବିଦ୍ୟା ସାଧିଲେ ଯତ୍ନରେ,
ଏ ଆଦର୍ଶ ସଦା ଉତ୍କଳ ନାରୀଟିଏ
ରଖିବେ ପ୍ରାଣ ପଣରେ ।" (ପୃ-୪୧)

'ଚିତ୍ତବିକାଶ' (୧୯୨୭) ସୁଲୋଚନା ଦେବୀଙ୍କର ଅନ୍ୟ ଏକ ଗଦ୍ୟ ପଦ୍ୟ ମିଶ୍ରିତ ପୁସ୍ତକ । ଏଥିରେ ୪୯ଟି କବିତା ଏବଂ ୫ଟି ପ୍ରବନ୍ଧ ସ୍ଥାନିତ । ଅନୁଭୂତିର ବିବିଧତା



Source: Author, Digitized by PPRACHIN, SOA

ଏହି କବିତା ସମୂହରେ ପରିଲକ୍ଷିତ । ବିବିଧ ଋତୁ ବର୍ଣ୍ଣନାଠାରୁ ଆରମ୍ଭ କରି ଦେଶାତ୍ମବୋଧକ କବିତା ଗୁଡିକ ଯେପରି ମନ ମୁଗ୍ଧକର ସେହିପରି ନାରୀ ପ୍ରଗତିର କଥା ବେଶ୍ ମର୍ମସ୍ପର୍ଶୀ । 'ଶ୍ରୀମତୀ ମୃଣାଳିନୀ ଦେବୀ' ଏବଂ 'ନାରୀ ଜାତି' ଶୀର୍ଷକ ଦୁଇଟି କବିତା ଲେଖିକାଙ୍କ ଆଶା, ଆକାଂକ୍ଷା ଏବଂ ଆହ୍ୱାନର ଏକ ସମ୍ମିଶ୍ରଣ ରୂପ ।

ଶିକ୍ଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ନାରୀମାନଙ୍କର ଯତ୍ନପର ସହଯୋଗ ହେତୁ ବାମଣ୍ଡାରେ ନାରୀ ସମାଜରେ ଏକ ନୂତନ ଆଲୋଡ଼ନ ସୃଷ୍ଟି ହୋଇଥିଲା । ବିଶେଷକରି ରାଜଜେମା ମାନଙ୍କର ଏଥିରେ ପ୍ରତ୍ୟକ୍ଷ ଅଂଶଗ୍ରହଣ ଅନ୍ୟ ନାରୀମାନଙ୍କୁ ଉତ୍ସାହ ପ୍ରଦାନ କରିଥିଲା । ଏଥିପାଇଁ 'ଶ୍ରୀମୀତ ମୃଣାଳିନୀ ଦେବୀ' ଶୀର୍ଷକ କବିତାରେ ସୁଲୋଚନା ଦେବୀ ରାଜଜେମାଙ୍କୁ ଅଭିନନ୍ଦନ ଜଣାଇବା ସହିତ ନାରୀ ଜାତିର ପ୍ରଗତି ପାଇଁ କାମନା କରିଛନ୍ତି ।

"ସହଧରମିଣୀ ବାଚ୍ୟା ହୋଇବ ରମଣୀ;
ଅନ୍ଧକାର ବିନାଶିବେ ଜ୍ଞାନ ଦିନମଣି ।
ଅନ୍ତଃପୁରେ ହେବ ପୁଣି ନାରୀର ସମାଜ,
ପଳାଇବ କୁ-ସଂସ୍କାର ମନେ ପାଇ ଲାଜ ।" (ପୃ-୧୩)

'ନାରୀଜାତି' ସୁଲୋଚନା ଦେବୀଙ୍କ ନାରୀ ଜାଗୃତିର ଏକ ବଳିଷ୍ଠ କବିତା । ଉତ୍କଳ ନାରୀ ସମାଜକୁ ଆହ୍ୱାନ ଦେଇ କବି କହନ୍ତି –

"ନବୀନ ପ୍ରଭାବେ ଲାଗିଲାଣି ଧରା
ଜାଗ ଉତ୍କଳ ଲଳନା
ଅର୍ଦ୍ଧଯାମ ଭଳି ଶୋଇ ରହିଅଛ
ଏକି ଘୋର ବିଡ଼ମ୍ବନା । (ପୃ-୫୯)

ନାରୀର ଅନ୍ୟନାମ 'ଅବଳା'କୁ ସେ ଅସ୍ୱୀକାର କରିଛନ୍ତି । ତାଙ୍କ ମତରେ ନାରୀ ଯଦି ଜ୍ଞାନ ଓ କର୍ମ ବଳରେ ମହୀୟାନ ଏବଂ ଶକ୍ତିଶାଳୀ ହୋଇଉଠେ ତେବେ ସେ ପୁରୁଷ ସମକକ୍ଷ ହୋଇପାରିବ । ଉପଯୁକ୍ତ ଶିକ୍ଷା ଗ୍ରହଣ କରି ନିଜର ଉନ୍ନତି ସହିତ ବିଶ୍ୱର କଲ୍ୟାଣ କରିପାରିବ । ନାରୀର ଅଧିକାର ପ୍ରସଙ୍ଗରେ ସେ କୁହନ୍ତି –

"ନାରୀତ ଅଟଇ ବିଶ୍ୱର ଜନନୀ
ନାରୀ ସିନା ଅର୍ଦ୍ଧାଙ୍ଗିନୀ;
ନାରୀ ଅଧିକାର ରହିଛି ସର୍ବତ୍ର
ନାରୀ ଶକ୍ତି ସ୍ୱରୂପିଣୀ । (ପୃ-୫୯)

ନାରୀ ବ୍ୟତୀତ ପୁରୁଷର କୌଣସି ଅସ୍ତିତ୍ୱ ନାହିଁ । ନାରୀକୁ ପଛରେ ପକାଇ ସମାଜର ଅଗ୍ରଗତି ଅସମ୍ଭବ । ଏହି ପ୍ରସଙ୍ଗରେ ସେ ପୌରାଣିକ ନାରୀ ଚରିତ୍ର ଲକ୍ଷ୍ମୀ, ଶ୍ରୀରାଧା, ସୀତାଙ୍କୁ ଗୁରୁତ୍ୱ ଦେବା ସହିତ ରାଜନୀତି କ୍ଷେତ୍ରରେ ରାଣୀ ଭିକ୍ଟୋରିଆ, ଦୁର୍ଗାବତୀ,



Source: Author, Digitized by PPRACHIN, SOA

ଚାନ୍ଦବିବି ଏବଂ ପ୍ରଜ୍ଞାବତୀ ଭାବେ ଗାର୍ଗୀ, ଲୀଳାବତୀଙ୍କୁ ସ୍ମରଣ କରିଛନ୍ତି । ନାରୀର ପ୍ରଗତି ପାଇଁ ପୁରୁଷର ସହଯୋଗ ହସ୍ତ ପ୍ରସାରିତ ହେବା ଉଚିତ୍ ବୋଲି ସେ ଅନୁଭବ କରିଛନ୍ତି ।

ନାରୀ ପ୍ରଗତି ପାଇଁ ସୁଲୋଚନା ଦେବୀଙ୍କ ସ୍ୱର ଉଗ୍ର ନୁହେଁ – ଅଭିମାନପୂର୍ଣ୍ଣ । ତତକାଳୀନ ସାମାଜିକ ବ୍ୟବସ୍ଥା ମଧ୍ୟରେ ନାରୀଶିକ୍ଷା ଏବଂ ବିବିଧ କର୍ମକ୍ଷେତ୍ରରେ ନାରୀର ଅନଗ୍ରସର ମାନସିକତାକୁ ସେ ଉପଲବ୍ଧି କରିଛନ୍ତି । ତେଣୁ ପ୍ରାଥମିକ ସ୍ତରରେ ସ୍ୱ-ଅଧିକାର ସ୍ଥାପନ ପାଇଁ ନାରୀକୁ କିପରି ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ପ୍ରବେଶ କରିବାର ପଥ ଉନ୍ମୁକ୍ତ କରାଯିବ ଏବଂ ସମାଜର ମୁଖ୍ୟ ଧାରା ସହିତ ସାମିଲ କରାଯିବ ସେଥିପାଇଁ ସେ ଥିଲେ ଚିନ୍ତାମଗ୍ନ । କେବଳ ଗୃହିଣୀ ହୋଇ ରହିଗଲେ ନାରୀଜାତି ତଥା ସମାଜର କୌଣସି ପ୍ରଗତି ଘଟିବ ନାହିଁ ବୋଲି ସେ ଅନୁଭବ କରୁଥିଲେ । ବିବିଧ ରୂପରେ ନାରୀ ତା'ର କର୍ତ୍ତବ୍ୟ ଉପଯୁକ୍ତ ଭାବେ ସଂପାଦନ କରିବା ସହିତ ସମାଜ ତଥା ରାଷ୍ଟ୍ରର ଉନ୍ନତି ପାଇଁ ତାର ଭୂମିକା ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତାହା ସେ ଉପଲବ୍ଧି କରିଥିଲେ ।

ଶିକ୍ଷା ଉଭୟ ସାମାଜିକ ଏବଂ ମାନସିକ ଅନଗ୍ରସରତାକୁ ଦୂରେଇ ଏକ ପ୍ରଗତିଶୀଳ ରାଷ୍ଟ୍ର ଗଠନ ନିମନ୍ତେ ସହାୟ ହୋଇଥାଏ । ଉନ୍ନତ ରାଷ୍ଟ୍ର ଗଠନ ପାଇଁ ନାରୀ ଏକ ପୁରୁଷ କିପରି ଉପଯୁକ୍ତ ଶିକ୍ଷା ପାଇପାରିବେ ସେ ନେଇ ଅତୀତରୁ ଅଦ୍ୟାବଧି ବହୁ ବିଜ୍ଞ ମନିଷୀଙ୍କର ଯୁକ୍ତିସିଦ୍ଧ ମନ୍ତବ୍ୟ ଗୁରୁତ୍ୱପୂର୍ଣ୍ଣ । ପରିସଂଖ୍ୟାନ ଦୃଷ୍ଟିରୁ ବିଚାର କଲେ ପୁରୁଷ ଅପେକ୍ଷା ନାରୀ ଶିକ୍ଷାର ହାର ଖୁବ୍ ନୈରାଶଜନକ । ବିଶେଷକରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧକୁ ବିଚାର କଲେ ଓଡ଼ିଶାରେ ନାରୀଶିକ୍ଷାର ମାନ ଉଭୟ ପରିମାଣାତ୍ମକ ତଥା ଗୁଣାତ୍ମକ ଦୃଷ୍ଟିରୁ ଅତି ସଂକଟପୂର୍ଣ୍ଣ ଥିଲା । ଗୃହାଙ୍ଗନରୁ ବାହାରି କ୍ୱଚିତ ନାରୀ ବିଦ୍ୟାଳୟ ପରିସରକୁ ଆସୁଥିଲେ । ଗୋଟିଏ ପ୍ରଗତିଶୀଳ ମନ ନେଇ ଶିକ୍ଷା ସମାପ୍ତି ପରେ ଯେଉଁ କେତେଜଣ ନାରୀ ସମାଜର ମୂଳ ସ୍ରୋତରେ ସାମିଲ ହୋଇଥିଲେ ସେମାନଙ୍କ ମଧ୍ୟରୁ ସୁଲୋଚନା ଦେବୀ ଅନ୍ୟତମ । କବିତା ରଚନାରୁ ସାହିତ୍ୟକ ଜୀବନ ଆରମ୍ଭ କରିଥିଲେ ମଧ୍ୟ ସମାନ୍ତରାଳ ଭାବେ ନିଜ ଭାବର ଗଭୀରତାକୁ ପ୍ରକାଶ କରିବା ପାଇଁ ପ୍ରବନ୍ଧକୁ ଚୟନ କରିଛନ୍ତି । କବିତା ଅପେକ୍ଷା ପ୍ରବନ୍ଧର ଯେ ଏକ ପ୍ରଭାବଶାଳୀ ଦିଗ ରହିଛି ଏବଂ ତାର ପ୍ରତିକ୍ରିୟା ଜନମାନସରେ ତୀବ୍ର ଭାବେ ଆଲୋଡ଼ନ ସୃଷ୍ଟି କରିପାରିବ ସେଥିପାଇଁ ସେ ପୂର୍ଣ୍ଣ ସଚେତନ ଥିଲେ । 'ସେକ୍ସପିଅର' (୧୯୩୩-ନାଟକର ଅନୁବ ଦିତ ଗଦ୍ୟୀକରଣ), ସଂସାର ଚିତ୍ର (ନାଟକ), ସାବିତ୍ରୀ (୧୯୨୮-ନାଟକ) 'ଦମୟନ୍ତୀ' (୧୯୩୦-ମୂଳକାବ୍ୟର ଗଦ୍ୟୀକରଣ)କୁ ବାଦଦେଲେ ପ୍ରକାଶିତ ତିନୋଟି କବିତା ସଂକଳନର ପ୍ରବନ୍ଧର ସଂଯୋଗୀକରଣ ତାଙ୍କ ଗଦ୍ୟ ରଚନା ପ୍ରତି ଅହେତୁକ ଆକର୍ଷଣକୁ ସୂଚିତ କରେ, ଯେଉଁଠି ନିଜର ପ୍ରଜ୍ଞାବୋଧକୁ ଅଧିକ ପ୍ରକାଶୋନ୍ମୁଖୀ କରିବାର ମାଧ୍ୟମଟିଏ ପାଲଟି ଯାଇଛି ।



Source: Author, Digitized by PPRACHIN, SOA

ଗଦ୍ୟ ପଦ୍ୟ ମିଶ୍ରିତ ସଂକଳନ 'ଅବକାଶ ମଂଜରୀ' ପୁସ୍ତକରେ ମାତା, କନ୍ୟାପ୍ରତି ମାତାର ଉପଦେଶ ଶୀର୍ଷକ ଶିରୋନାମାରେ ନାରୀଶିକ୍ଷାର ଆବଶ୍ୟକତା, ଶିକ୍ଷା ଓ କାର୍ଯ୍ୟ, ପରିଷ୍କାର ଓ ପରିଚ୍ଛନ୍ନତା, କୃତଜ୍ଞତା, ପ୍ରତାରଣା ଓ ମିଥ୍ୟା, ଶାନ୍ତି, ସମୟ ଓ ଈଶ୍ୱର ନିର୍ଭରତା, ଅର୍ଥ ଓ ବାକ୍ୟ ବ୍ୟୟ ଏବଂ କୁସଂସ୍କାର, ନାରୀର ଆଭରଣ ଓ କର୍ତ୍ତବ୍ୟ ପ୍ରବନ୍ଧ ଗୁଡ଼ିକ ସ୍ଥାନ ପାଇଛି ।

'ମାତା' ପ୍ରବନ୍ଧରେ ଲେଖିକା ମା'ର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ଅବଗତ କରାଇଛନ୍ତି । ବିଶେଷକରି ଭବିଷ୍ୟତ ବଂଶଧର ପ୍ରତି ମା'ର ଦାୟିତ୍ୱବୋଧକୁ ସୂଚିତ କରିଛନ୍ତି । ସନ୍ତାନମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ, ସେମାନଙ୍କର ଶିକ୍ଷା, ଆଚାର ବିଧି ସଂପୂର୍ଣ୍ଣ ରୂପେ ମା' ଉପରେ ନିର୍ଭର କରେ । ତେଣୁ ମା' ଉଚ୍ଚଶିକ୍ଷାର ଅଧିକାରୀ ହେବା ଉଚିତ ବୋଲି ଲେଖିକା ଦର୍ଶାଇଛନ୍ତି । 'କନ୍ୟାପ୍ରତି ମାତାର ଉପଦେଶ' ଶୀର୍ଷକ ଆଲୋଚନା କାଳରେ ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ ଜୀବନ କ୍ଷେତ୍ରରେ ନାରୀ ପାଇଁ ୭ ଗୋଟି ଉପାଦେୟ ଉପଦେଶାବଳୀ ସ୍ଥାନ ପାଇଛି ବିଭିନ୍ନ ଶୀର୍ଷକରେ ।

'ନାରୀଶିକ୍ଷାର ଆବଶ୍ୟକତା' ପ୍ରବନ୍ଧରେ ନାରୀଶିକ୍ଷାଜନିତ ପୂର୍ବ ପ୍ରଚଳିତ ଅବଧାରଣା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ନାରୀ ଶିକ୍ଷିତା ହୋଇ ପୁରୁଷମାନଙ୍କ ସମତୁଲ୍ୟ ହେଲେ ପୁରୁଷଗୋଷ୍ଠୀ କିପରି ବିଚଳିତ ହୋଇପଡନ୍ତି ତା'ର ସୂଚନା ଦେଇଛନ୍ତି । ଅପରପକ୍ଷରେ ଶିକ୍ଷିତା ରମଣୀଗଣ ସାଂସାରିକ ଦାୟିତ୍ୱବୋଧରୁ ନିବୃତ୍ତ ରହି ବସ୍ତୁବାଦ ଭୋଗବିଳାସ ପ୍ରତି ଆକର୍ଷିତା ହେବା ହେତୁ କିପରି ପାରିବାରିକ ସମସ୍ୟା ସୃଷ୍ଟି କରନ୍ତି ସେ ସଂପର୍କରେ ଲେଖିକା ଦୃଷ୍ଟି ଆକର୍ଷଣ କରିଛନ୍ତି । ତେବେ ଅନ୍ତର୍ବୋଧ ଗୁଣଟିର ବିକାଶ ପାଇଁ ଶିକ୍ଷାର ମହତ ଆବଶ୍ୟକତାକୁ ଲେଖିକା ଗୁରୁତ୍ୱ ଦେଇଛନ୍ତି । ସେ ସମୟରେ ଶିକ୍ଷିତ ଯୁବଗୋଷ୍ଠୀଙ୍କ ନାରୀଶିକ୍ଷା ସଂପର୍କିତ ମାନସିକତାକୁ ଲକ୍ଷ୍ୟକରି ଲେଖିକା କୁହନ୍ତି, "ଆଧୁନିକ ଯୁବକମାନେ ବଡ଼ ଶିକ୍ଷାଭିମାନୀ, ନିଜକୁ ପଣ୍ଡିତ ବୋଲି ପରିଚୟ ଦେବାକୁ ସର୍ବଦା ବ୍ୟସ୍ତ, କିନ୍ତୁ କି ଲଜ୍ଜାର ବିଷୟ ନିଜର ଜୀବନ-ସହଧର୍ମିଣୀକୁ ଶିକ୍ଷିତା କରିବାକୁ ଆଗ୍ରହାନ୍ୱିତ ହୁଅନ୍ତି ନାହିଁ ।" (ପୃ-୪୬)

'ଶିକ୍ଷା ଓ କାର୍ଯ୍ୟ' ପ୍ରବନ୍ଧରେ ଶିକ୍ଷା ସହିତ କାର୍ଯ୍ୟର ସମତୁଲତା କିପରି ରକ୍ଷା କରିବା ଉଚିତ ସେ ବିଷୟରେ ଆଲୋକପାତ କରିଛନ୍ତି । ଶିକ୍ଷା ଏବଂ ଶିକ୍ଷିତମାନଙ୍କ ସମ୍ପର୍କରେ ଲେଖିକା କୁହନ୍ତି, "ଶିକ୍ଷା ଦ୍ୱାରା ଚରିତ୍ର ଓ ମନ ମାର୍ଜିତ ହୁଏ, ନିଜେ ଶିକ୍ଷିତା ବୋଲି ଅନ୍ୟକୁ ତାଚ୍ଛଲ୍ୟ ଭାବରେ ଦେଖିବ ନାହିଁ, ଯଦି ଦେଖ, ତା'ହେଲେ ତୁମର ବିଦ୍ୟା ଶିକ୍ଷାର ଉଦ୍ଦେଶ୍ୟ ସାଧିତ ହେବନାହିଁ, ଅନ୍ୟକୁ ଘୃଣାରେ ଦେଖିବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ, ଫଳ ଭାରରେ ନତ ତରୁସମ ଶିକ୍ଷାପ୍ରାପ୍ତ ପୁରୁଷ ରମଣୀମାନଙ୍କର ନମ୍ର ହେବାର



Source: Author, Digitized by PPRACHIN, SOA

ଉଚିତ ।(ପୃ-୪୭) 'ପରିଷ୍କାର ଓ ପରିଚ୍ଛନ୍ନତା', 'କୃତଘ୍ନତା', 'ପ୍ରତାରଣା ଓ ମିଥ୍ୟା', ଶାନ୍ତି, ସମୟ ଓ ଈଶ୍ୱର ନିର୍ଭରତା' ପ୍ରବନ୍ଧ ତିନୋଟିରେ ନାରୀର ବ୍ୟବହାର ଜ୍ଞାନର ପରିବୃଦ୍ଧି ସମ୍ବନ୍ଧରେ ଉପଦେଶାବଳୀ ଦିଆଯାଇଛି । ବ୍ୟକ୍ତିତ୍ୱର ବିକାଶ ତଥା ଏକ ସୁସ୍ଥ ସୁନ୍ଦର ଜୀବନ ଅତିବାହିତ ନିମନ୍ତେ ନାରୀର ଜ୍ଞାନ ଆହରଣର ଆବଶ୍ୟକତାକୁ ଲେଖିକା ଗୁରୁତ୍ୱ ଦେଇଛନ୍ତି ।

'ଅର୍ଥ ଓ ବାକ୍ୟବ୍ୟୟ ଏବଂ କୁସଂସ୍କାର' ପ୍ରବନ୍ଧରେ ଲେଖିକା ଅର୍ଥର ସମୁଚିତ ବ୍ୟବହାର, ଭାଷା ପ୍ରୟୋଗରେ ଶାଳୀନତା ତଥା ସତର୍କତା ଅବଲମ୍ବନ ପୂର୍ବକ ସମୁଚିତ ବ୍ୟବହାର ଏବଂ ନାରୀ ସଂପର୍କିତ ମଧ୍ୟଯୁଗୀୟ ଭାବଧାରା ସଂପର୍କରେ ଆଲୋଚନା କରିଛନ୍ତି । ନାରୀ ନିଜ ଦେହରେ ଅଧିକ ଚିତା କୁଟାଇଲେ ଯମରାଜ ତାକୁ ପୁଣ୍ୟବତୀ ବୋଲି ଭାବିବା ସଂପର୍କିତ ଯେଉଁ ଅନ୍ଧବିଶ୍ୱାସଟି ରହିଛି ତାକୁ ଲେଖିକା କଟାକ୍ଷ କରିଛନ୍ତି । ଡାହାଣୀ ଲାଗିବା, ଶନିବାର ରାତ୍ରିରେ କାର୍ଯ୍ୟ ଦ୍ୱାରା ବାଳିକାମାନଙ୍କ ଚରିତ୍ର ଓ ମନ କଳଙ୍କିତ ହେବା ଆଦି ନାନାଦି କୁସଂସ୍କାର ଜଡ଼ିତ ମାନସିକତାର ଦାସତ୍ୱରୁ ମୁକ୍ତି ପାଇବା ପାଇଁ ଲେଖିକା ଗୁରୁତ୍ୱ ଦେଇଛନ୍ତି । 'ନାରୀର ଆଭରଣ ଓ କର୍ତ୍ତବ୍ୟ' ପ୍ରବନ୍ଧରେ ନାରୀର ବାହ୍ୟ ସୌନ୍ଦର୍ଯ୍ୟ ଅପେକ୍ଷା ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଉପରେ ଲେଖିକା ଗୁରୁତ୍ୱ ଦେଇଛନ୍ତି । ଶାଢ଼ୀ ଏବଂ ଅଳଙ୍କାର ଆବରଣ ଦ୍ୱାରା ନାରୀର ବାହ୍ୟ ସୌନ୍ଦର୍ଯ୍ୟର ପରିବୃଦ୍ଧି ଘଟିଥାଏ ତେବେ ସ୍ନେହ, ଧୈର୍ଯ୍ୟ, ସହାନୁଭୂତି ଆଦି ଅନ୍ତର୍ନିହିତ ଆବରଣ ମାଧ୍ୟମରେ ନାରୀ ସମ୍ମାନର ଶୀର୍ଷକୁ ଉନ୍ନୀତ ହେଇପାରିବ ବୋଲି ଲେଖିକା ମତବ୍ୟକ୍ତ କରି କୁହନ୍ତି : "ନାରୀର କର୍ତ୍ତବ୍ୟ ଯେ କେବଳ ରନ୍ଧାଶାଳରେ ଢୁକୁଥିବା ତାହା ନୁହେଁ, ପରର ମଙ୍ଗଳ କରିବା, ନିଜର ଅବସ୍ଥା ସ୍ମରଣ ରଖି ବ୍ୟୟ ପ୍ରତି ଦୃଷ୍ଟି ରଖିବା, ସନ୍ତାନର ମାନସିକ ଓ ଶାରୀରିକ ଉନ୍ନତି ଚେଷ୍ଟା ଓ ଲୋକଙ୍କ ଠାରେ ସ୍ନେହଭାବ ରଖିବା ଏକାନ୍ତ କର୍ତ୍ତବ୍ୟ ।(ପୃ-୫୬)

ଗଦ୍ୟପଦ୍ୟ ସଂକଳିତ 'ଚିତ୍ତ ବିକାଶ' ପୁସ୍ତକରେ 'ନାରୀ ଜାତିର ଅଧିକାର' ଗୃହସ୍ଥାଶ୍ରମ, ହିନ୍ଦୁନାରୀର ଶିକ୍ଷା, ଗୃହଣୀର କର୍ତ୍ତବ୍ୟ ଏବଂ ପତିଭକ୍ତି ଶୀର୍ଷକ ପାଞ୍ଚଗୋଟି ପ୍ରବନ୍ଧ ସ୍ଥାନ ପାଇଛି । ଏହି ପ୍ରବନ୍ଧଗୁଡିକ ଖୁବ୍ ବର୍ଣ୍ଣନାତ୍ମକ ନହେଲେ ମଧ୍ୟ ଏହାର ଅନ୍ତରାଳରେ ଥିବା କେତେଗୁଡିଏ ମୌଳିକ ସମସ୍ୟା ତଥା ସେଗୁଡିକର ସମାଧାନର ସଂକ୍ଷିପ୍ତ ସୂତ୍ର ଗ୍ରଥିତ । ଭାରତୀୟ ଧର୍ମଦର୍ଶନକୁ ପାଥେୟ କରିବା ସହିତ ପୌରାଣିକ ଚରିତ୍ର ଗୁଡିକର ବୈଶିଷ୍ଟ୍ୟ ନିରୂପଣ ଏବଂ ତାର ଭିତ୍ତିଭୂମି ଉପରେ ନାରୀର ସାର୍ବଭୌମତ୍ୱକୁ ଜାହିର କରିଛନ୍ତି ଲେଖିକା ।

'ନାରୀ ଜାତିର ଅଧିକାର' ଶୀର୍ଷକ ପ୍ରବନ୍ଧରେ 'ଅବଳା' ଶବ୍ଦଟି ଉପରେ ଘୋର ଆପତ୍ତି ଦର୍ଶାଇ କହିଛନ୍ତି, "ନାରୀ ଅବଳା ନୁହେଁ, ତାହାର ବଳ ଅସୀମ, ନାରୀ ହୃଦୟ ବଳରେ ସଂସାରର ସମସ୍ତ ସୁଖ, ଶାନ୍ତି ; ସୃଷ୍ଟି ଓ ପ୍ରଳୟ କ୍ଷଣେ ଘଟୁଅଛି; ଅତଏବ ନାରୀ



Source: Author, Digitized by PPRACHIN, SOA

ଜାତି ତ୍ରିଗୁଣ ସଂପନ୍ନା ।"(ପ-୯୩) ନାରୀକୁ ପୁରୁଷର ଭୋଗ୍ୟବସ୍ତୁ ବା ଆନନ୍ଦ ଦାୟିନୀ ଉପାଦାନ ଭାବେ ଗ୍ରହଣ କରାଯାଇଥାଏ । ପୁରୁଷତନ୍ତ୍ର ସମାଜରେ ନାରୀପ୍ରତି ଏ ପ୍ରକାର ଦୃଷ୍ଟିଭଙ୍ଗୀକୁ ଲେଖିକା ସମାଲୋଚନା କରି କୁହନ୍ତି, "ସ୍ତ୍ରୀଜାତି ପୁରୁଷର ହିତାକାଂକ୍ଷୀଣୀ ସେମାନଙ୍କର ହୃଦୟାନନ୍ଦ ଦାୟିନୀ ସତ୍ୟ, ମାତ୍ର ବିଳାସର ବସ୍ତୁ ନୁହେଁ । ସଂସାରରେ ସ୍ତ୍ରୀ ଓ ପୁରୁଷ ଉଭୟ ପକ୍ଷରେ ସମାନ ଦାୟିତ୍ୱ ଅଛି । କୌଣସି ପକ୍ଷରେ ତ୍ରୁଟି ଘଟିଲେ ଅନିଷ୍ଟ ହୁଏ ।"(ପୃ-୯୩-୯୪) ଏଇ ପରିପ୍ରେକ୍ଷୀରେ ସେ ପ୍ରାଚୀନ ଭାରତର ନାରୀ କୈନ୍ଦ୍ରିକ ସମାଜର ନିଦର୍ଶନ ଦେଇ ତତ୍‌କାଳୀନ ସମାଜରେ ଥିବା ନାରୀପ୍ରତିଭାଙ୍କ ପ୍ରଜ୍ଞାବୋଧ ଏବଂ କର୍ମଦକ୍ଷତାକୁ ସ୍ମରଣ କରାଇଛନ୍ତି । ଉପସ୍ଥାପିତ ତଥ୍ୟକୁ ଦୃଢ଼ୀଭୂତ କରାଇବା ପାଇଁ ସେ କେତେକ ବଙ୍ଗୀୟ ସମାଲୋଚକ ତଥା କବିଙ୍କ ଦୃଷ୍ଟାନ୍ତମାନ ଉପସ୍ଥାପନ କରିଛନ୍ତି । ସାଂସାରିକ ତଥା ରାଜନୈତିକ ବିଦ୍ୟାରେ ପାରଦର୍ଶିତା ଲାଭ କରିବା ସହିତ ନାରୀ କିପରି ତା'ର ଦକ୍ଷତା ପ୍ରତିପାଦନ କରିପାରିଛି ତାର ଉଦାହରଣ ଦେଇ ପୁରୁଷ ସମାଜକୁ ପ୍ରଶ୍ନ କରିଛନ୍ତି, "ପୁରୁଷ ଜାତି ସମସ୍ତ ଦାୟିତ୍ୱ ମୁଣ୍ଡାଇ ସ୍ୱଅଭିମାନରେ ସପ୍ତମ ସ୍ୱର୍ଗରେ ରହିବାକୁ ଚାହିଁଅଛନ୍ତି, ମାତ୍ର ଦେଖାଯାଉଅଛି, ଅବଳାଗଣଙ୍କର ସେମାନଙ୍କୁ କ୍ରମଶଃ ଟାଣି ପାତାଳ ଦିଗକୁ ନେବାରେ ଶକ୍ତି ଅଛି । ତାହା କ'ଣ ସେମାନେ ଭାବିପାରୁନାହାନ୍ତି ? ନାରୀକୁ ବଞ୍ଚିବା କରି ପୁରୁଷ ନିରୋଳା ସ୍ୱର୍ଗସୁଖ ଉପଭୋଗ କରିନପାରେ ।"(ପୃ-୯୫)

ଭାରତୀୟ ଐତିହ୍ୟ ତଥା ସଂସ୍କୃତିକୁ ଏକ ପରଂପରା ସୂତ୍ରରେ ବାନ୍ଧି ରଖିବାର ଯତ୍ନଶୀଳ ପ୍ରୟାସ ଯୁଗଯୁଗ ଧରି କରିଆସିଛି ନାରୀ । ଭାରତ ତଥା ଉତ୍କଳୀୟ ସଂସ୍କୃତିର ଧାରାବାହିକତାକୁ ନାରୀ ଯେପରି ବଜାୟ ରଖିଛି ସେହିପରି ପୁରୁଷର ସମୁନ୍ନତ ବିକାଶ କ୍ଷେତ୍ରରେ "ନାରୀ ଜାତି ତାହାର ମୂଳଭିତ୍ତି ଓ ବିକାଶର ପ୍ରଧାନ ସହାୟ ଅଟେ" ବୋଲି ଲେଖିକା ମନ୍ତବ୍ୟ ଦେଇଛନ୍ତି । ସୁସମାଜ ଗଠନ ପାଇଁ ନାରୀର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କିନ୍ତୁ ପୁରୁଷପ୍ରଧାନ ସମାଜ ତଥା ପୁରୁଷ ଜାତି କୌଣସି କାଳେ ତାର ପ୍ରଗତି ପାଇଁ ଚିନ୍ତା କରିନାହାନ୍ତି, ପରନ୍ତୁ ନାନାବିଧ ନିୟମ ମାଧ୍ୟମରେ ତା'ର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇଛି ବିବିଧ ପ୍ରବାଦ ଓ ପ୍ରବଚନ ମାଧ୍ୟମରେ । ସମାଜରେ ନାରୀ ଜନିତ ବିଶୃଙ୍ଖଳା ସୃଷ୍ଟି ପାଇଁ ଲେଖିକା ନାରୀକୁ ଦାୟୀ କରିବା ସହିତ ପୁରୁଷର ଦାୟିତ୍ୱହୀନତାକୁ ସୂଚିତ କରି କୁହନ୍ତି, "ତାହାକୁ ତାର ଅଧିକାର ଦେଇନଥିବା ଯୋଗୁଁ ପୁରୁଷ ଜାତିକୁ ମଧ୍ୟ ଦାୟୀ କରିବାକୁ ପଡିବ । ନାରୀ ସଂସାରର ଦାସ ନୁହେଁ, ନାରୀ ଜାତି-ସଂସାର-ସାମ୍ରାଜ୍ୟ ସାମ୍ରାଜ୍ଞୀ ।"(ପୃ-୯୭) ତେଣୁ ତାକୁ ତାର 'ସମ୍ମାନ ଓ ଅଧିକାର ଦେବା ବାଞ୍ଛନୀୟ' ବୋଲି ଲେଖିକା ଦାବି ଉପସ୍ଥାପନ କରିଛନ୍ତି ।

'ଗୃହଶ୍ରମ' ପ୍ରବନ୍ଧରେ ଏକ ସୁସ୍ଥ ପାରିବାରିକ ଜୀବନ ବିଶେଷ କରି ଏକାନ୍ନବର୍ତ୍ତୀ ପରିବାରର ଆବଶ୍ୟକତା ଏବଂ ଏହା ମାଧ୍ୟମରେ କିପରି ଆନନ୍ଦର ଧାରା ପ୍ରକଟିତ



Source: Author, Digitized by PPRACHIN, SOA

ହୋଇଥାଏ ସେ ସଂପର୍କରେ ବିଶଦଭାବେ ଆଲୋଚନା କରିବା ସହିତ ପୃଥକ ପରିବାରର ଅନ୍ଧାରୀ ଦିଗଟିକୁ ଉନ୍ମୋଚିତ କରିଛନ୍ତି । ଏହି ଦୁଇ ପରିବାର ମଧ୍ୟରେ ଥିବା ପାର୍ଥକ୍ୟ ଦର୍ଶାଇ କୁହନ୍ତି, "ପୃଥକ ପରିବାରରେ କେହି କାହାରି ନିମନ୍ତେ ଦାୟୀ ନୁହନ୍ତି, ମାତ୍ର ଏକାନ୍ନବର୍ତ୍ତୀ ପରିବାରରେ ଜଣକ ନିମନ୍ତେ ଅନ୍ୟ ଜଣେ ସ୍ୱାର୍ଥ ବଳିଦାନ କରିବା ପାଇଁ ବାଧ୍ୟ । ଏହି ବାଧ୍ୟବାଧ୍ୟକତାରୁ କ୍ରମେ ଆତ୍ମସଂଯମର କ୍ଷମତା ଜନ୍ମେ । କ୍ଷୁଦ୍ର ସଂସାର ନିମନ୍ତେ ଯେ ସ୍ୱାର୍ଥ ସୁଖ ଇଚ୍ଛା ପ୍ରଭୃତିକୁ ବଳିଦାନ ଦିଆଯାଏ, କ୍ରମେ ତାହା ସମଗ୍ର ବିଶ୍ୱ ନିମନ୍ତେ ଅର୍ପଣ କରିବା ସମ୍ଭବ ହୁଏ ।"(ପୃ-୯୯) ମାନବ ଜୀବନର ପୂର୍ଣ୍ଣତା ପ୍ରାପ୍ତ ହୁଏ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ । ଯାହା ଏକ ଆଦର୍ଶ ଜୀବନ ବଞ୍ଚିବାରେ ସହାୟକ ହୋଇଥାଏ । ଅପର ପକ୍ଷରେ ପୃଥକ ପରିବାରରେ ବ୍ୟକ୍ତିର ସ୍ୱେଚ୍ଛାଚାରିତା ହେତୁ ପାରିବାରିକ ତଥା ବ୍ୟକ୍ତିଗତ ଶାନ୍ତି ବ୍ୟାହତ ହୋଇଥାଏ । ଲେଖିକା ଏହି ପ୍ରବନ୍ଧରେ ସ୍ୱାମୀ ସହିତ ସ୍ତ୍ରୀର ମଧୁର ସଂପର୍କ ତଥା ଗୃହକୁ ଆଧ୍ୟାତ୍ମିକ ଏବଂ ଆତ୍ମିକ ଭିତ୍ତିଭୂମି ଉପରେ ଦଣ୍ଡାୟମାନ ଏକ ଆଶ୍ରମ ବୋଲି ଅଭିହିତ କରିଛନ୍ତି । ଭାରତୀୟ ପରଂପରାରେ ଥିବା ଭୋଗ ଅପେକ୍ଷା ତ୍ୟାଗପୂତ ଜୀବନଧାରାକୁ ସେ ଗୁରୁତ୍ୱ ଦେଇଛନ୍ତି । ବିବାହ ଏବଂ ପତିପତ୍ନୀର ସଂପର୍କରେ ସେ କହନ୍ତି, "ବିବାହ ଗୃହସ୍ଥାଶ୍ରମର ମୂଳ, କାରଣ ଏହି ଠାରେ ପ୍ରେମର ପ୍ରଥମ ବିକାଶ ହୋଇ କ୍ରମେ କ୍ରମେ ସମଗ୍ର ଜଗତରେ ବିସ୍ତାର ଲାଭ କରେ, ପତିପତ୍ନୀ ଜଣେ ଅନ୍ୟର ଭୋଗର ଉପାଦାନ ଓ ବିକାଶର ସହାୟ । ଧର୍ମ ଅବଲମ୍ବନ କରି ଏହି ଭୋଗ ବିକାଶ ହେଲେ ଦମ୍ପତିର ସୁଖ ଓ ଧର୍ମାଚରଣ ହୁଏ ।"(ପୃ-୧୦୧)

'ହିନ୍ଦୁ ନାରୀର ଶିକ୍ଷା' ପ୍ରବନ୍ଧରେ ପୁତ୍ରପରି କନ୍ୟାର ଶିକ୍ଷା ଉପରେ ଗୁରୁତ୍ୱ ଦେଇଛନ୍ତି । ତେବେ ହିନ୍ଦୁ ବାଳିକା ଇଂରାଜୀ ମହିଳାମାନଙ୍କ ପରି ଶିକ୍ଷା ନପାଇ ସ୍ୱସଂସ୍କୃତି ଉପରେ ଆଧାରିତ ଶିକ୍ଷା ଦେବାକୁ ଲେଖିକା ପରାମର୍ଶ ଦେଇଛନ୍ତି । ତାଙ୍କ ବିଶ୍ୱାସ ଯେ ଏହାଦ୍ୱାରା ଶୃଙ୍ଖଳାବୋଧ ଜୀବନ ନିର୍ମାଣ ହେଇପାରିବ ଏବଂ ସାଂସାରିକ ଜ୍ଞାନର ବିକାଶ ସମ୍ଭବ ହୋଇପାରିବ । ଲେଖିକାଙ୍କ ମତରେ, "ଗୃହର ସୁଖ, ଦୁଃଖ ସ୍ତ୍ରୀ ଚରିତ୍ର ଉପରେ ନିର୍ଭର କରେ । ନାରୀମାନେ ସୁଚାରୁ ରୂପେ ଆଚାର ବ୍ୟବହାର, ରୀତି ଶିକ୍ଷା ନକଲେ ସଂସାରର ସର୍ବାଙ୍ଗୀନ ସୁଖର ପ୍ରତ୍ୟାଶା କରାଯାଇନପାରେ । ସ୍ତ୍ରୀ ଜାତି ସଂସାର ଧର୍ମ ପାଳନର ପ୍ରଧାନ ଅବଲମ୍ବନ ଅତଏବ ସେମାନଙ୍କର ହୃଦୟ ସର୍ବତୋଭାବେ ମାର୍ଜିତ ଓ ଶିକ୍ଷିତ କରିବା ପାଇଁ ଚେଷ୍ଟା କରିବା ସାଂସାରିକ ମାନଙ୍କର କର୍ତ୍ତବ୍ୟ ।"(ପୃ-୧୦୩) ଏହି ପ୍ରବନ୍ଧରେ ଲେଖିକା ହିନ୍ଦୁଧର୍ମ ସଂସ୍କୃତି ପରିପ୍ରେକ୍ଷୀରେ ନାରୀଶିକ୍ଷା ଉପରେ ଗୁରୁତ୍ୱ ଦେବା ସହିତ ପୁରୁଷ ସମାଜ ନାରୀକୁ କେବଳ ବିଳାସର ସାମଗ୍ରୀ ବୋଲି ଭାବିବାର ଉପକ୍ରମ ଏବଂ ତଦ୍‌ଜନିତ ନାରୀଶିକ୍ଷାର ଅବହେଳାକୁ କଠୋର ସମାଲୋଚନା କରିଛନ୍ତି । ସର୍ବୋପରି ଶିକ୍ଷା କ୍ଷେତ୍ରରେ ନାରୀର ପ୍ରଭୁତ ଉନ୍ନତି ନ ଘଟିଲେ ଏକ ସୁସ୍ଥ ପାରିବାରିକ ତଥା ସାମାଜିକ



Source: Author, Digitized by PPRACHIN, SOA

ଜୀବନ ସମ୍ଭବ ନୁହେଁ ବୋଲି ସେ ସ୍ପଷ୍ଟ କରି ଦେଇଛନ୍ତି । 'ଗୃହିଣୀର କର୍ତ୍ତବ୍ୟ' ପ୍ରବନ୍ଧରେ ଲେଖିକା ପରିବାରରେ ଗୃହିଣୀର ଭୂମିକାକୁ ତର୍ଜମା କରିବା ସହିତ ପାରିବାରିକ ସୁଖ ସମୃଦ୍ଧି ପାଇଁ ଏମାନଙ୍କର ଗୁରୁ ଦାୟିତ୍ୱବୋଧଟିକୁ ସୂଚାଇ ଦେଇଛନ୍ତି । ପରିବାରର ଆର୍ଥିକ ଅବସ୍ଥା ସମ୍ପର୍କରେ ଗୃହିଣୀ ସଚେତନ ହେବା ଉଚିତ । ଏହାଦ୍ୱାରା ଆୟବ୍ୟୟର ଆକଳନ ହେବା ସହିତ ପାରିବାରିକ ବିଶୃଙ୍ଖଳାକୁ ଏଡ଼ାଇ ଦିଆଯାଇପାରିବ ବୋଲି ଲେଖିକା କହିଛନ୍ତି । ସୁଗୃହିଣୀମାନେ ପ୍ରତ୍ୟହ ସମସ୍ତ ବିଷୟରେ ତତ୍ତ୍ୱ ନେବା, କଳହପ୍ରିୟା ନହେବା, ପରନିନ୍ଦାରେ ସମୟ ଅତିବାହିତ ନ କରିବା, ସହିଷ୍ଣୁତା ଆଚରଣପୂର୍ବକ ଦେଇ ଲେଖିକା କୁହନ୍ତି, "ନାରୀ ଜାତି ବିଶ୍ୱଜନନୀ, ସେମାନଙ୍କର ପର ଆପଣାର ବା ଶତ୍ରୁ ମିତ୍ର ଭାବିବା ଅନୁଚିତ ।"(ପୃ-୧୧୧) ଏଥିପାଇଁ ମଧ୍ୟ ପୁରୁଷମାନେ ସୁଚାରୁ ରୂପେ ସେମାନଙ୍କ କାର୍ଯ୍ୟ ସଂପାଦନ କରିବା ଉଚିତ । ନାରୀର ଉପଯୁକ୍ତ ଶିକ୍ଷା ଅଭାବରେ ପାରିବାରିକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ନଷ୍ଟ ବିନ୍ୟଷ୍ଟ ହୋଇଯାଏ । ତେଣୁ "ପୁରୁଷମାନେ ନିଜେ ଗଠିତ ହୁଅନ୍ତୁ ବା ସ୍ତ୍ରୀ ଶିକ୍ଷାର ସୁବନ୍ଦୋବସ୍ତ କରନ୍ତୁ, ତେବେ ସଂସାରରେ ସୁଖ ଶାନ୍ତି ବିରାଜାମାନ କରିବ ।" (ପୃ-୧୧୪) ଏହି ପ୍ରବନ୍ଧରେ ପ୍ରାଚୀନ ଗୃହିଣୀ ଏବଂ ଅଧୁନା ଗୃହିଣୀ ସମ୍ପର୍କରେ ଏକ ତୁଳନାତ୍ମକ ଅଧ୍ୟୟନ ପୂର୍ବକ ଲୋକୋକ୍ତି, ଭାଗବତ ପୁରାଣରୁ ଉଦ୍ଧୃତି ସହିତ ଏକ ଗଳ୍ପ ମାଧ୍ୟମରେ ଗୃହିଣୀର କର୍ତ୍ତବ୍ୟବୋଧକୁ ଲେଖିକା ଅତି ପ୍ରାଞ୍ଜଳ ଭାବରେ ଉପସ୍ଥାପନ କରିଛନ୍ତି ।

'ପତିଭକ୍ତି' ପ୍ରବନ୍ଧଟି ଭାରତୀୟ ଧର୍ମଶାସ୍ତ୍ର ଆଧାରିତ ତଥା ନିର୍ଦ୍ଦେଶିତ । ସ୍ୱାମୀ ପ୍ରତି ସ୍ତ୍ରୀର ଦାୟୀତ୍ୱବୋଧ, କର୍ତ୍ତବ୍ୟପରାୟଣତା, ନାରୀର ନୀତିବୋଧ ପ୍ରଭୃତି ପ୍ରଚଳିତ ଧାରା ଉପରେ ପର୍ଯ୍ୟବସିତ । ସାଂସାରିକ ଜୀବନ କ୍ଷେତ୍ରରେ ସ୍ୱାମୀପ୍ରତି ସ୍ତ୍ରୀର ବିଶ୍ୱସ୍ତବୋଧଟିକୁ ଲେଖିକା ଗୁରୁତ୍ୱ ଦେଇଛନ୍ତି । ଲେଖିକା ପୁରୁଷ ପ୍ରତି ନାରୀର କର୍ତ୍ତବ୍ୟକୁ ଯେପରି ଗୁରୁତ୍ୱ ଦେଇଛନ୍ତି ନାରୀ ପ୍ରତି ପୁରୁଷର କର୍ତ୍ତବ୍ୟକୁ ଗୁରୁତ୍ୱ ଦେଇନାହାନ୍ତି । ଆଧୁନିକ ଶିକ୍ଷା ସଭ୍ୟତା ପ୍ରତି ବୀତସ୍ପୃହ ନହେଲେ ସମସ୍ତ ଆଧୁନିକତା ଉର୍ଦ୍ଧ୍ୱରେ ଭାରତୀୟ ଧର୍ମ ଓ ସଂସ୍କୃତି ପରିପ୍ରେକ୍ଷୀରେ ନାରୀର କର୍ତ୍ତବ୍ୟବୋଧକୁ ଏକତରଫା ଭାବେ ଆଲୋଚନା କରିଛନ୍ତି ।

'ବଣମଲ୍ଲୀ' (୧୯୩୧) ସୁଲୋଚନ ଦେବୀଙ୍କ ତୃତୀୟ ଗଦ୍ୟ ପଦ୍ୟ ସଂକଳିତ ପୁସ୍ତକ । ଏଥିରେ 'ନାରୀ ସମସ୍ୟା ଓ ଶିକ୍ଷା', 'ଦେଶ ସେବା', 'ଧନ ଓ ଧନୀ' ଏବଂ 'ସ୍ୱାମୀ ବଶୀକରଣ' ଶୀର୍ଷକ ଚାରିଗୋଟି ପ୍ରବନ୍ଧ ସ୍ଥାନିତ । 'ନାରୀ ସମସ୍ୟା ଓ ଶିକ୍ଷା' ପ୍ରବନ୍ଧରେ ଲେଖିକା ନାରୀର ଅବସ୍ଥା ଅପେକ୍ଷା ନାରୀର ସ୍ୱଭାବ ପରିବର୍ତ୍ତନ ପ୍ରତି ଗୁରୁତ୍ୱାରୋପ କରିଛନ୍ତି । ନାରୀ ଭିତରେ ଥିବା ରକ୍ଷଣଶୀଳ ମନୋଭାବ ଏକ ଦୁର୍ଗ ସ୍ୱରୂପ ସମାଜରେ ଦଣ୍ଡାୟମାନ । ଏତଦ୍‌ବ୍ୟତୀତ "ନାରୀ ଜାତିର ଅଧୀନତା ଦ୍ୱାରା ପୁରୁଷ ଜାତି ଯେ ଅପ୍ରତିହିତ ସୁଖ ଓ ସୁବିଧା ଭୋଗ କରୁଛନ୍ତି, ତାହା ଠିକ୍ ନୁହେଁ । ଅଧୀନରେ ରହି



Source: Author, Digitized by PPRACHIN, SOA

ସର୍ବପ୍ରକାର ଦାୟିତ୍ୱ ଓ ଭାରମୁକ୍ତା ନାରୀ ପୁରୁଷ ଉପରେ ଯଥେଷ୍ଟ ଭାର ଦେଇ ବସିଛନ୍ତି ।" (ପୃ-୧) ନାରୀର ସ୍ୱାଧିକାର ସଂପର୍କରେ ଲେଖିକା କୁହନ୍ତି, "ନାରୀ ଜୀବନର ଗୋଟିଏ ସ୍ୱାଧୀନ ବ୍ରତର ସ୍ୱାଧୀନ ଅନୁଷ୍ଠାନ ସେହିଦିନ ହେବ – ଯେଉଁଦିନ ନାରୀ ଆପଣାକୁ ସମଗ୍ର ରୁପେ ବୁଝିବ, ଆପଣାକୁ ପରିପୂର୍ଣ୍ଣ ରୂପେ ପାଇବ । ଏହାର ନାମ ପ୍ରକୃତରେ ସ୍ତ୍ରୀ ସ୍ୱାଧୀନତା, ନଚେତ୍ ନାରୀ ସମସ୍ୟା ସମାଧାନର ଫଳ ଆକାଶ କୁସୁମ ।"(ପୃ-୨) ଲେଖିକା ନାରୀକୁ ଏକ ବ୍ୟକ୍ତିସତ୍ତା ଭାବରେ ଗ୍ରହଣ ନକରି ଏକ ଅନୁଷ୍ଠାନ ଭାବରେ ଗ୍ରହଣ କରିଛନ୍ତି । ସମାଜର ଉନ୍ନତି ପାଇଁ ଏହି ଅନୁଷ୍ଠାନର ଦାୟିତ୍ୱବୋଧ ଉପରେ ସେ ଗୁରୁତ୍ୱ ଦେଇଛନ୍ତି । ନାରୀର ଶିକ୍ଷା ତାକୁ ଉପଯୁକ୍ତ ସ୍ୱାଧୀନତା ଦେବ । କିନ୍ତୁ ଆଧୁନିକ ଶିକ୍ଷାପ୍ରାପ୍ତି ପରେ ଯଦି ଏହି ସ୍ୱାଧୀନତା ସ୍ୱେଚ୍ଛାଚାରିତା ଉପରେ ରୁପାନ୍ତରିତ ହେବ ନାରୀ ତାର ଆତ୍ମମର୍ଯ୍ୟାଦା ଓ ନୈତିକ ଶକ୍ତି ହରାଇ ସାମାଜିକ ତଥା ବୃକ୍ତିଗତ ଜୀବନରେ ସମସ୍ୟା ସୃଷ୍ଟି କରିବ ବୋଲି ଲେଖିକା ସଂଶୟ କରିଛନ୍ତି । ତେଣୁ ଶିକ୍ଷାର ଅନ୍ତରାୟ ହେଉଥିବା ଉପାଦାନଗୁଡ଼ିକୁ ସେ ତିବ୍ର ଭାବେ ସମାଲୋଚନା କରିଛନ୍ତି । ନାରୀ ଶିକ୍ଷାର ଆବଶ୍ୟକତାକୁ ଉପଲବ୍ଧି କରି ଲେଖିକା କୁହଁନ୍ତି, "ସ୍ତ୍ରୀ ଶିକ୍ଷାର ପ୍ରଚଳନ ଦ୍ୱାରା ସମାଜକୁ ଭାଙ୍ଗିବା ନିମନ୍ତେ ଚେଷ୍ଟା ହେଉନାହିଁ, ବରଂ ପୁନର୍ଗଠନ ଏ ଚେଷ୍ଟାର ମୁଖ୍ୟ ଉଦ୍ଦେଶ୍ୟ ।"(ପୃ - ୩)

'ଦେଶସେବା' ପ୍ରବନ୍ଧରେ ସହର ଏବଂ ଗ୍ରାମ ମଧ୍ୟରେ ବାସ କରୁଥିବା ଲୋକ ମାନସିକତାକୁ ଲେଖିକା ପ୍ରକାଶ କରିଛନ୍ତି । ସହରରେ ଦେଶସେବା ପ୍ରବୃତ୍ତିଟି ବଳବତ୍ତର ଥିବାବେଳେ ସରୀ ଲୋକେ କିପରି ଗ୍ରାମ୍ୟ ଜନସମାଜକୁ ହେୟ ଦୃଷ୍ଟିରେ ଦେଖିଥାନ୍ତି ତା'ର ସ୍ୱରୂପ ଉଦ୍‌ଘାଟନ କରି ଲେଖିକା କୁହାନ୍ତି, "ଏହି ଉଚ୍ଚ ନିଚ୍ଚଭ୍ରମରେ ପଡ଼ି ଆମ୍ଭେମାନେ ଆପଣା ଭାଇମାନଙ୍କ ପ୍ରତି ଅବିଚାର କରିଅଛୁଁ ।"(ପୃ-୪) ସମାଜରେ ଥିବା ସ୍ପୃଶ୍ୟ, ଅସ୍ପୃଶ୍ୟ ସମାଜରେ ଥିବା ସ୍ପୃଶ୍ୟ, ଅସ୍ପୃଶ୍ୟ ତଥା ଜାତିପ୍ରଥା ନେଇ ଲେଖିକା ଉଦ୍‌ବେଗ ପ୍ରକାଶ କରିଛନ୍ତି । ଏସବୁର ଉର୍ଦ୍ଧ୍ୱରେ କର୍ମ ଏବଂ ଶିକ୍ଷାକୁ ଲେଖିକା ଗୁରୁତ୍ୱ ଦେଇଛନ୍ତି । ଶିକ୍ଷା ସମ୍ବନ୍ଧରେ ଲେଖିକା ମତଦେଇ କହିଛନ୍ତି, "ପ୍ରକୃତ ଶିକ୍ଷା ଦରକାର, ଯେଉଁ ଶିକ୍ଷା ଆତ୍ମସମ୍ଭ୍ରମ ଜଗାଏ ନାହିଁ, ସେ ଶିକ୍ଷାକୁ ଶିକ୍ଷା, ଯେଉଁ ଶିକ୍ଷାରେ ସ୍ୱତନ୍ତ୍ର ବୁଦ୍ଧିର ବିକାଶ ହୁଏନାହିଁ ସେ ଶିକ୍ଷା ଅସଂପୂର୍ଣ୍ଣ । ଯେଉଁ ଶିକ୍ଷାରେ ପରମୁଖାପେକ୍ଷିତା ଘୁଞ୍ଚେ ନାହିଁ, ସେ ଶିକ୍ଷା ବ୍ୟର୍ଥ ।"(ପୃ-୫) ଉପଯୁକ୍ତ ଶିକ୍ଷାପ୍ରାପ୍ତି ଏବଂ କଠୋର ନିଷ୍ଠା ବଳରେ ତଥା ସ୍ୱାର୍ଥଚିନ୍ତା ତ୍ୟାଗପୂର୍ବକ ଅନୁନ୍ନତ ଶ୍ରେଣୀରେ ଉନ୍ନତି ଚିନ୍ତା ହିଁ ପ୍ରକୃତ ଦେଶସେବା ବୋଲି ଲେଖିକା ମତପୋଷଣ କରିଛନ୍ତି ।

'ଧନ ଓ ଧନୀ' ପ୍ରବନ୍ଧରେ ପ୍ରକୃତ ଧନୀର ସ୍ୱରୂପ ବିଶ୍ଳେଷଣ କରିଛନ୍ତି ଲେଖିକା । ଯିଏ ଅନ୍ୟର ଧନ ଅନ୍ୟାୟ ଉପାୟରେ ଅପହୃତ କରି ଧନୀ ଏବଂ ଦାନୀ ବୋଲି ନିଜକୁ ପରିଚିତ କରାଏ ସିଏ ସମାଜ ପକ୍ଷରେ ଏକ କଳଙ୍କିତ ବ୍ୟକ୍ତି । ଧମ ଅର୍ଥରେ ଧନ ସଞ୍ଚୟ



Source: Author, Digitized by PPRACHIN, SOA

ପଛରେ ମାତିବା ତଥା ଧନକୁ କେବଳ ନିଜ ପରିସରଭୁକ୍ତ କରିବା ଏ ଦୁଇଟି ଆଦୌ ଗ୍ରହଣୀୟ ନୁହେଁ । ଲେଖିକାଙ୍କ ମତରେ, "ଯେଉଁ ଅର୍ଥ ମନୁଷ୍ୟକୁ ଚିନ୍ତାରେ ପାଗଳ କରାଏ ଓ ଯଦି ନିଜର ହୃଦୟ ମନର ଉନ୍ନତି ବା ଅପରର ମଙ୍ଗଳ କରିବା ଦ୍ୱାରା ପରମାନନ୍ଦ ନ ମିଳେ, ତେବେ ସେ ଅର୍ଥକୁ ଶତବାର ଧିକ୍ ଓ ସେଭଳି ଧନୀକୁ ଶତ ସହସ୍ରବାର ଧିକ୍ ।" (ପୃ୭-୮)

'ସ୍ୱାମୀବଶୀକରଣ' ପ୍ରବନ୍ଧରେ ଲେଖିକା ସତ୍ୟଭାମା ଏବଂ ଦ୍ରୌପଦୀଙ୍କ ସ୍ୱାମୀପରିଚର୍ଯ୍ୟା ସଂପର୍କୀୟ କଥୋପକଥୋନ, ସ୍ତ୍ରୀର ଚାରିତ୍ରିକ ଗୁଣ ତଥା ରୁଚିପୂର୍ଣ୍ଣ ବ୍ୟବହାର ସ୍ୱାମୀକୁ କିପରି ଉତ୍ତମ ରାସ୍ତା ଦେଖାଏ ଏବଂ ଉଭୟଙ୍କର କିପରି ମଧୁର ସଂପର୍କ ସ୍ଥାପିତ ହୁଏ ସେ ସଂପର୍କରେ ସୂଚନା ଦେଇଛନ୍ତି ।

ନାଟକ ରଚନା କରି ସୁଲୋଚନା ଦେବୀ ଭାରତୀୟ ପରମ୍ପରା, ଧର୍ମବୋଧ ଏବଂ ସାମାଜିକ ଅବବୋଧକୁ ଖୁବ୍ ଯତ୍ନ ସହକାରେ ଉପସ୍ଥାପନା କରିଛନ୍ତି । 'ସାବିତ୍ରୀ'(୧୯୨୮), 'ସଂସାରଚିତ୍ର' (୧୯୩୩) ଏହି ଦୁଇଖଣ୍ଡ ନାଟକ ତାଙ୍କ ନାଟ୍ୟମାନସର ପରିଚୟ ବହନ କରିଥାଏ । 'ସାବିତ୍ରୀ' ନାଟକ ପୌରାଣିକ ଆଖ୍ୟାନ ଉପରେ ପର୍ଯ୍ୟବସିତ ଯେଉଁଥିରେ ପତିଭକ୍ତି ଉପରେ ଗୁରୁତ୍ୱ ଦିଆଯାଇଛି । 'ସଂସାର ଚିତ୍ର'ରେ ତତ୍କାଳୀନ ସମାଜରେ ପ୍ରଚଳିତ ଜମିଦାରୀ ପ୍ରଥାର କୁତ୍ସିତ ରୂପରେଖ, ଶିକ୍ଷିତ ଯୁବକ ପଥଭ୍ରଷ୍ଟ ମାନସିକତା ଏବଂ ସ୍ୱାମୀ ପ୍ରତି ସ୍ତ୍ରୀର ଐକାନ୍ତିକ କର୍ତ୍ତବ୍ୟବୋଧକୁ ଲେଖିକା ଖୁବ୍ ପ୍ରାଞ୍ଜଳ ଭାବେ ଉପସ୍ଥାପନ କରିଛନ୍ତି । ଉଚ୍ଚଶିକ୍ଷିତ ନାୟକ ମଦନ ବେଶ୍ୟା ଶାନ୍ତି ସହିତ ପ୍ରେମ ପଣୟରେ ଲିପ୍ତ ହୋଇ ସ୍ୱାଧ୍ୱୀ ସ୍ତ୍ରୀ ସରଳା ପ୍ରତି ଚରମ ଅବହେଳା ପ୍ରଦର୍ଶନ, ସମୟକ୍ରମେ ଶାନ୍ତିକୁ ହତ୍ୟା ଅପରାଧରେ ଜେଲଦଣ୍ଡ, ସ୍ୱାମୀ ମଦନକୁ ରକ୍ଷା କରିବାକୁ ଯାଇ ସରଳା ନିଜକୁ ଦୋଷୀ ସାବ୍ୟସ୍ତ କରିବା ଏବଂ ଫାଶୀ ପାଇବାର ଅବ୍ୟହିତ ପୂର୍ବରୁ ଶାନ୍ତିର ଅନୁପ୍ରବେଶ ତଥା ନିଜକୁ ଜୀବିତ ବୋଲି କର୍ତ୍ତୃପକ୍ଷଙ୍କ ନିକଟରେ ସ୍ୱୀକାରୋକ୍ତି ହେତୁ ସରଳା ମୃତ୍ୟୁଦଣ୍ଡରୁ ରକ୍ଷା ପାଇବା ଏବଂ ପରିଶେଷରେ ମଦନ ସମସ୍ତ ଭୁଲକୁ ସ୍ୱୀକାର ପୂର୍ବକ ଏକ ସୁନ୍ଦର ସଂସାର ଗଢ଼ିବାର ପରିକଳ୍ପନାରେ ନାଟକର ପରିସମାପ୍ତି ଘଟିଛି ।

ଏହି ନାଟକ ଦୁଇଟିରେ ଲେଖିକା ନୀତିବୋଧ ଉପରେ ଗୁରୁତ୍ୱ ଦେଇଛନ୍ତି । ବିଶେଷକରି ସମାଜରେ ନାରୀର ସ୍ଥିତି ଏବଂ ତାର ଶୃଙ୍ଖଳାବୋଧକୁ ଏକ ଧର୍ମୀୟ ଚିନ୍ତାଧାରା ମଧ୍ୟରେ ପରିବେଷଣ କରିଛନ୍ତି । ଲେଖିକାଙ୍କ ସାମଗ୍ରୀକ ଦୃଷ୍ଟିସମୂହକୁ ବିଚାର ବିଶ୍ଳେଷଣ କଲେ ଜଣାଯାଏ ଯେ ଯଦିଓ ସେ ନାରୀର ଆତ୍ମମର୍ଯ୍ୟାଦା ଓ ଅଧିକାରୀ ବୋଧକୁ ଗୁରୁତ୍ୱ ଦେଇଛନ୍ତି ତଥାପି ଏସବୁ ମଧରେ ଧର୍ମୀୟ ଅନୁଚିନ୍ତାର ଏକ କ୍ଷୀଣ ସ୍ରୋତ ତାଙ୍କ କୃତି ସମୂହକୁ ଆଚ୍ଛାଦିତ କରି ରଖିଛି । ବାମଣ୍ଡାର ସାହିତ୍ୟ ପରିବେଶ ମଧ୍ୟରେ ତାଙ୍କର ସୃଷ୍ଟି ପ୍ରକ୍ରିୟା ବିଚରଣଶୀଳ ହେଲେ ମଧ୍ୟ ତାହା କ୍ରମଶଃ ସମଗ୍ର ଓଡ଼ିଆ ସାହିତ୍ୟର ପ୍ରଭୂତ



Source: Author, Digitized by PPRACHIN, SOA

ଉନ୍ନତି ପାଇଁ ଅଭିପ୍ରେତ ଥିଲା । ଉତ୍କଳ ସାହିତ୍ୟ ସମାଜ ପରି ବହୁ ପ୍ରଖ୍ୟାତ ସାଂସ୍କୃତିକ ଅନୁଷ୍ଠାନ ସହିତ ଯେପରି ନିବିଡ଼ ଭାବେ ଜଡ଼ିତ ଥିଲେ, ସେହିପରି ତତ୍‌କାଳୀନ ସାହିତ୍ୟିକମାନଙ୍କ ସଂସ୍ପର୍ଶରେ ଆସି ନିଜର ସୃଷ୍ଟିଶୀଳ ମନୋଭାବକୁ ଅଧିକ କ୍ରିୟାଶୀଳ କରିଛନ୍ତି ।

## (ତିନି)

ଜୈବିକ ପ୍ରକ୍ରିୟାଜନିତ ବାଛବିଚାରକୁ ନେଇ ସୁଲୋଚନା ଦେବୀଙ୍କ ନାରୀବାଦୀ ଦୃଷ୍ଟିକୋଣ ଯଦିଓ ଉଗ୍ର ନୁହେଁ କିନ୍ତୁ ନାରୀର ସାମୂହିକ ବିକାଶ ପାଇଁ ସେ ଚିନ୍ତା କରିଛନ୍ତି । ପାରଂପରିକ ଧର୍ମଧାରଣା ଏବଂ ଭାରତୀୟ ସଂସ୍କୃତି ଅବବୋଧ ମଧ୍ୟରେ ତାଙ୍କର ସୃଷ୍ଟି ସମୂହ ବିଚରଣଶୀଳ । ଏହି ପ୍ରକିୟା ମଧ୍ୟରେ ଘୂର୍ଣ୍ଣାୟମାନ ତାଙ୍କର ନାରୀତ୍ୱବୋଧ ନାରୀମୁକ୍ତି ପାଇଁ ଯେଉଁ ସବୁ ପଥ ନିର୍ମାଣ କରିଛି ତାହା ତତ୍‌କାଳୀନ ସାମାଜିକ ଜୀବନ ପ୍ରଣାଳୀ ଦ୍ୱାରା ନିୟନ୍ତ୍ରିତ । ନାରୀ ଜଣେ ଉତ୍ତମ ଗୃହିଣୀର ଭୂମିକା ନିର୍ବାହ କରିବ କିନ୍ତୁ ଗୃହ ଦ୍ୱାରା ବନ୍ଦିନୀ ହେବନି । ସାମାଜିକ ଲୋକପ୍ରିୟତା ପାଇଁ ମଧ୍ୟବିତ୍ତ ଶ୍ରେଣୀର ନାରୀ ପ୍ରାୟତଃ ନିଜ ସ୍ୱାସ୍ଥ୍ୟ, ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସ୍ୱାମୀ ଏବଂ ପରିବାରର ସ୍ୱାର୍ଥରେ ନିଜକୁ ଉତ୍ସର୍ଗୀକୃତ କରିଥାଏ । ଏହାର ଆବଶ୍ୟକତାକୁ ସୁଲୋଚନା ଦେବୀ ଅନୁଭବ କରିଛନ୍ତି ଯାହା ତାଙ୍କ ସୃଷ୍ଟି ସମୂହରେ ପରିଲକ୍ଷିତ । ଉପଯୁକ୍ତ ଶିକ୍ଷା ପ୍ରାପ୍ତି ପରେ ନାରୀ ସାମାଜିକ ଶୃଙ୍ଖଳକୁ ଏଡ଼ାଇବାର ପ୍ରୟାସ କରିବା ଉଚିତ । ବର୍ଷ ବର୍ଷ ଧରି ଯେଉଁ ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ତାର ଅଗ୍ରଗତିରେ ପ୍ରତିବନ୍ଧକ ସାଜିଛି ସେସବୁକୁ ଅତିକ୍ରମ କରିବା ଦରକାର । ଶିକ୍ଷାର ଅଭିବୃଦ୍ଧି ସହିତ ଆର୍ଥିକ ସ୍ୱଚ୍ଛଳତା ନାରୀକୁ ସ୍ୱତନ୍ତ୍ର କରିଥାଏ ବୋଲି ଲେଖିକା ବିଚାର କରିଛନ୍ତି । ଶିକ୍ଷାର ବ୍ୟାପକ ପ୍ରସାରରେ ସହାୟତା ପାଇଁ ସେ ଯେପରି ସମାଜକୁ ଆହ୍ୱାନ କରିଛନ୍ତି ସେହିପରି ମଧ୍ୟ ନାରୀ ସମାଜକୁ ଉଦବୋଧନ ଦେଇଛନ୍ତି ଯାହା ଉଦାରବାଦୀ ବାମାବାଦର (Liberal Feminism) ଅନ୍ୟ ଏକ ବିଶେଷତ୍ୱ । ଉଦାରତନ୍ତ୍ରୀ ବାମାବାଦୀଙ୍କ ମତରେ, "...a real education - that is, the same education as is provided to a man - will allow a woman to assume responsibility for her own development and growth. But unless society also provided the equality education woman with the same civil liberties and economic opportunities a man has, she will be able to exercise her hard won autonomy only within the private a domestic realism. "

ନାରୀ ପୁରୁଷର ବିଳାସମୟ ଜୀବନର ସାମଗ୍ରୀ ବା ଉପାଦାନ ନୁହେଁ । ନାରୀର ଏକ ଉପଭୋଗ ବସ୍ତୁ ବୋଲି ପୁରୁଷ ତାନ୍ତ୍ରିକ ସମାଜରେ ଯେଉଁ ଅବଧାରଣାଟି ରହିଛି



Source: Author, Digitized by PPRACHIN, SOA

ଲେଖିକା ତାକୁ ଅସ୍ୱୀକାର କରିଛନ୍ତି । ତାଙ୍କ ଦୃଷ୍ଟିରେ ନାରୀର ସ୍ଥାନ ପୁରୁଷ ଠାରୁ ଉଚ୍ଚରେ ନୁହେଁ କିମ୍ବା ନିମ୍ନରେ ନୁହେଁ – ପୁରୁଷର ସମକକ୍ଷ । ଏହି ସବୁ ଦୃଷ୍ଟିରୁ ବିଚାର କଲେ ତାଙ୍କର ସୃଷ୍ଟି ସମୂହ ଯଦିଓ ଅନେକାଂଶରେ ଆଧ୍ୟାତ୍ମିକ ଆଲୋଡ଼ନ ମଧ୍ୟରେ କ୍ରିୟାଶୀଳ ତଥାପି ନାରୀ ଜଣେ ବ୍ୟକ୍ତି – ମଣିଷ ଏବଂ ତା' ଭିତରେ ଥିବା ଆଶା ଆକାଙ୍‌କ୍ଷା କିପରି ପୁରୁଷ ଦ୍ୱାରା ପ୍ରତିହତ ସେସବୁର ଝଲକ ଆମେ ଉପଲବ୍ଧି କରିପାରିବା । ତତ୍‌କାଳୀନ ଓଡ଼ିଶାର ସାମାଜିକ ସ୍ଥିତିକୁ ଅବଲୋକନ କଲେ ସୁଲୋଚନା ଦେବୀଙ୍କ ଭିତରେ ଥିବା ବାମାବାଦୀ ଅନୁଚିନ୍ତାଟି କିପରି ପ୍ରକାଶୋନ୍ମୁଖୀ ହେବା ପାଇଁ ପ୍ରଯତ୍ନଶୀଳ ଥିଲା ତାହା ସହଜରେ ଅନୁମେୟ । ତାଙ୍କର 'ଭଗ୍ନିମାନଙ୍କ ପ୍ରତି', 'ନାରୀଜାତି' ପ୍ରଭୃତି କବିତା ଏବଂ 'ନାରୀ ଜାତିର ଅଧିକାର' 'ଗୃହସ୍ଥାଶ୍ରମ' 'ହିନ୍ଦୁନାରୀର ଶିକ୍ଷା' ପ୍ରଭୃତି ପ୍ରବନ୍ଧମାନଙ୍କରେ ଉତ୍କଳୀୟ ନାରୀ ସମାଜର ପ୍ରଗତି ପାଇଁ ଯେଉଁ ସବୁ ଆଭିମୁଖ୍ୟ ପ୍ରକାଶ ପାଇଛି ତାହା ଓଡ଼ିଶାରେ ପ୍ରାଥମିକ ସ୍ତରରେ ହୋଇଥିବା ନାରୀ ପ୍ରଗତିର ଗୋଟିଏ ଲେଖାଏ ସାର୍ଥକ ନିଦର୍ଶନ । ଉଭୟ ନୈତିକ ଅବଧାରଣା ଏବଂ ଦୂରଦର୍ଶିତାର ସମ୍ମିଶ୍ରଣ ସ୍ୱାଦ ତାଙ୍କ କୃତି ସମୂହରେ ଅନୁଭବ୍ୟ ।

ସୁଲୋଚନା ଦେବୀଙ୍କ ସୃଷ୍ଟିମୟ ଜୀବନ ଖୁବ୍ ସ୍ୱଳ୍ପ । ଜୀବନ ପରିଧି ମଧ୍ୟ କମ୍ । କିନ୍ତୁ ଏହି ସମୟ ସୀମାରେ ସେ ଯେପରି ଭାବେ ଗଭୀର ଅଧ୍ୟୟନରେ ନିମଜ୍ଜିତ ହୋଇଛନ୍ତି ସେହିପରି ମଧ୍ୟ ନିଜର ସୃଷ୍ଟି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଛନ୍ତି । ସମସାମୟିକ ଅନ୍ନପୂର୍ଣ୍ଣା ଦେବୀ, ରେବା ରାୟ, କୋକିଳା ଦେବୀ, ସରଳା ଦେବୀ, କୁନ୍ତଳା କୁମାରୀ ପ୍ରଭୃତି ଲେଖିକା ଏବଂ ଫକୀରମୋହନ, ଗଙ୍ଗାଧର,ଶଶିଭୂଷଣ, ଗୋପାଳଚନ୍ଦ୍ର ପ୍ରହରାଜ, ରାଜା ସଚ୍ଚିଦାନନ୍ଦ ଦେବ ପ୍ରଭୃତି ଲେଖକମାନଙ୍କ ସଂସ୍ପର୍ଶରେ ଆସି ନିଜ ସାହିତ୍ୟିକ ଅଭିବ୍ୟକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ସ୍ୱାଧୀନତା ପୂର୍ବବର୍ତ୍ତୀ ସାମାଜିକ ଓ ସାହିତ୍ୟିକ ସ୍ଥିତି ପ୍ରତି ପୂର୍ଣ୍ଣ ସଚେତନ ଥିବାରୁ ତାଙ୍କ କୃତିସମୂହ ଉଭୟ ଆବେଗାୟିତ ଓ ବାସ୍ତବଧର୍ମୀ ହୋଇ ପାରିଛି । କବିତା ଅପେକ୍ଷା ପ୍ରବନ୍ଧ ରଚନା ପ୍ରତି ସେ ଅଧିକ ଆକୃଷ୍ଟ ହୋଇଥିଲେ ଯାହା ପ୍ରକୃତ ପକ୍ଷେ ତାଙ୍କ ଆଭିମୁଖ୍ୟଗୁଡ଼ିକୁ ଜନସମାଜରେ ପ୍ରଚାରିତ କରାଇବାରେ ସହାୟକ ହୋଇଥିଲା । ତେଣୁ ତାଙ୍କର ପ୍ରତ୍ୟେକ ପୁସ୍ତକ ଉଭୟ ଗଦ୍ୟ ଓ ପଦ୍ୟ ବିଭାଗର ସମ୍ମେଳନ । ଏତଦ୍‌ବ୍ୟତୀତ ସେକ୍‌ସପିୟରଙ୍କ ସୃଷ୍ଟି ସମୂହକୁ ସେ ଯେପରି ଅତି ସରଳ ଭାବେ ଗଳ୍ପୀକରଣ କରିଛନ୍ତି ତାହା ତାଙ୍କ ମୌଳିକ ସୃଜନଶୀଳତାର ଅନ୍ୟ ଏକ ନିଦର୍ଶନ ଯାହା ତତ୍‌କାଳୀନ ଅନୁବାଦ ସାହିତ୍ୟ ପୃଷ୍ଠଭୂମିରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଏକାଧିକବାର ତାଙ୍କ ରଚିତ ଜାତୀୟ ସଙ୍ଗୀତ ଉତ୍କଳ ସାହିତ୍ୟ ସମାଜର ବିଭିନ୍ନ ଅଧିବେଶନରେ ଗାନ କରାଯାଇଛି । ୧୯୨୫ ମସିହାରେ ଉତ୍କଳ ସାହିତ୍ୟ ସମାଜର ବିଂଶ ବାର୍ଷିକ



Source: Author, Digitized by PPRACHIN, SOA

ଅଧିବେଶନରେ ଉତ୍କଳ ସାହିତ୍ୟ ତରଫରୁ ତାଙ୍କୁ "କବିତା ମନୋରମା" ଉପାଧିରେ ଭୂଷିତ କରାଯାଇଥିଲା ।

ତାଙ୍କ କୃତି ସମୂହର ବହୁବିଧ ଦିଗ ରହିଛି ଯାହା ବିସ୍ତୃତ ସମୀକ୍ଷାର ଅପେକ୍ଷା ରଖେ । ଏହି ପ୍ରବନ୍ଧରେ ତାଙ୍କର ନାରୀବାଦୀ ଦୃଷ୍ଟିକୋଣ ସଂପର୍କରେ ଆଲୋଚନା କରାଯାଇଛି । ବିସ୍ମୃତ ପରମ୍ପରା ମଧ୍ୟରେ ଅଦ୍ୟାବଧି ଏହି ଲେଖିକାଙ୍କ ଉପରେ ଆଲୋକପାତ କରାଯାଇନାହିଁ । ସମାଲୋଚକ ନଟବର ସାମନ୍ତରାୟ ସୁଲୋଚନା ଦେବୀଙ୍କୁ କେବଳ ଗୌଣକବି ତାଲିକାରେ ଅନ୍ତର୍ଭୁକ୍ତ କଲାବେଳେ, ଫଣୀନ୍ଦ୍ର ଭୂଷଣ ନନ୍ଦ, ଇନ୍ଦୁ ଭୂଷଣ କର ଯତ୍‌କିଞ୍ଚିତ୍ ଆଲୋଚନା କରିଛନ୍ତି । ସମ୍ବଲପୁର ହିତୈଷିଣୀ, ନବୀନ, ଆଶା, ଗଡ଼ଜାତ ବାସିନୀ, ଉତ୍କଳ ସେବକ ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ଏହି ବିସ୍ମୃତ ନାରୀ ପ୍ରତିଭାଙ୍କ ଅନେକ ରଚନା ସଂଗୃହୀତ ହୋଇ ଗ୍ରନ୍ଥାବଳୀରେ ପୁନଃ ସଂଯୋଜିତ ହେଲେ ତାଙ୍କ ସୃଷ୍ଟିଶୀଳ ମନସ୍କତାର ପରିପୂର୍ଣ୍ଣ ରୂପରେଖ ଉନ୍ମୋଚିତ ହୋଇପାରିବ ।

ପାଦଟୀକା

୧. ସାମନ୍ତରାୟ, ନଟବର ; ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦), ୨ୟ ସଂସ୍କରଣ, ବାଣୀଭଜନ, ଭୁବନେଶ୍ୱର, ୧୯୮୩ ।

୨. ନନ୍ଦ, ଡ. ଫଣୀନ୍ଦ୍ର ଭୂଷଣ (ସଂ); ବାସୁଦେବ ଗ୍ରନ୍ଥାବଳୀ, ପ୍ରଗତି ଉତ୍କଳ ସଂଘ, ରାଉରକେଲା, ୨୦୦୩ ।

୩. ନନ୍ଦ, ଡ. ଫଣୀନ୍ଦ୍ର ଭୂଷଣ : ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ, ଭୁବନେଶ୍ୱର, ୨୦୦୨ ।

୪. ତତ୍ରୈବ ।



Source: Author, Digitized by PPRACHIN, SOA

# ଯାଜ୍ଞସେନୀ : ବାମାବାଦୀ ଚେତନାର ଆଲେଖ୍ୟ

ଉତ୍ତର ସତୁରୀ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଲେଖିକାର ମିଥ୍ ପ୍ରତି ଆକର୍ଷଣ, ନାରୀ ଅନ୍ତର୍ବୋଧର ବିଶ୍ଳେଷଣ ଓ ପୁନର୍ମୂଲ୍ୟାୟନ ପ୍ରତି ସଚେତନତାକୁ ସୂଚିତ କରିଥାଏ । ମିଥ୍‌କୁ ମୁଖ୍ୟ କେନ୍ଦ୍ରରେ ସଂସ୍ଥାପନ କରି ତା'ର ଭାବ-ଭୂମି ଉପରେ ନାରୀତ୍ୱବୋଧର ସାର୍ଥକ ଆରୋପଣ ପୂର୍ବକ ପ୍ରତିଭା ରାୟ ରଚନା କରିଛନ୍ତି 'ଯାଜ୍ଞସେନୀ' (୧୯୮୪) । 'ମହାଭାରତ' ପୃଷ୍ଠଭୂମିରେ ରଚିତ ଏହି ଉପନ୍ୟାସଟି ଲେଖିକାଙ୍କ ବାମାବାଦୀ ଚିନ୍ତାଧାରାର ବଳିଷ୍ଠ ପରିପ୍ରକାଶ । ବ୍ୟାସଦେବଙ୍କ ଦ୍ରୌପଦୀ ଏବଂ ଶ୍ରୀମତୀ ରାୟଙ୍କ ଦ୍ରୌପଦୀ ମଧ୍ୟରେ ଅନେକ ତଫାତ୍ ପରିଲକ୍ଷିତ; ଯାହା ତାଙ୍କ ନାମକରଣରୁ ଅଧିକ ସ୍ପଷ୍ଟ ହେଇଯାଏ । ବ୍ୟାସଦେବଙ୍କ ଦ୍ରୌପଦୀ ଅପେକ୍ଷା ସାରଳା ଦାସଙ୍କ ଦ୍ରୌପଦୀଙ୍କ ଅଧିକ ମାନ୍ୟତା ଦେଇଛନ୍ତି ଲେଖିକା । କିନ୍ତୁ ଅପରପକ୍ଷରେ ବ୍ୟାସଙ୍କ ଦ୍ରୌପଦୀ ଚରିତ୍ରକୁ ବିଶ୍ଳେଷଣ କରିଛନ୍ତି । ଚେତନାଗତ ସ୍ତରରେ ବିପ୍ଳବର ଝଲକ ସୃଷ୍ଟିକରି ଶ୍ରୀମତୀ ରାୟ, ଦେବୀ / ସତୀ ଦ୍ରୌପଦୀଙ୍କୁ ସଂପୂର୍ଣ୍ଣ ମାନବୀ କରି ଗଢ଼ିତୋଳିଛନ୍ତି । ନାରୀର ସହଜାତ ପ୍ରବୃତ୍ତି, ଆତ୍ମସମ୍ମାନବୋଧ ଏବଂ ବ୍ୟକ୍ତି-ପ୍ରତିଷ୍ଠା ପ୍ରତି ଦ୍ରୌପଦୀ ମାଧ୍ୟମରେ ଲେଖିକା ଯେପରି ଗୁରୁତ୍ୱ ଦେଇଛନ୍ତି ସେହିପରି ତାଙ୍କ ଦୃଷ୍ଟିରେ ଧର୍ମ ଏବଂ ସମାଜ ଗଠନର ବିଭିନ୍ନ ପ୍ରସ୍ତାବମାନ ଉତ୍‌ଥାପନ କରିଛନ୍ତି । ଯେଉଁଠି ନାରୀକୁ ଲିଙ୍ଗଭେଦ ଦୃଷ୍ଟିରୁ ବିଚାର କରା ନ ଯାଇ ମଣିଷ ଭାବେ ବିଚାର କରିବା ପାଇଁ ପୁରୁଷତନ୍ତ୍ର ସମାଜକୁ ଆହ୍ୱାନ କରାଯାଇଛି ।

ବିଶ୍ୱ ଜଗତ ତଥା ଜୀବଜଗତ ସୃଷ୍ଟି ସଂପର୍କିତ ମିଥ୍ ଯେପରି ପୁରାଣ ସାହିତ୍ୟରେ ଦେଖିବାକୁ ମିଳେ ସେହିପରି ନାରୀ ସୃଷ୍ଟି ତଥା ତା'ର ଜୀବନଚର୍ଯ୍ୟା ସଂପର୍କିତ ମିଥ୍ ପୁରାଣ ପୃଷ୍ଠା ମଣ୍ଡନ କରିଛି । ଦେବୀ, ଦାନବୀ, ତଥା ମହାମାନବୀ ଭାବେ ନାରୀର ବିବିଧ ରୂପ ବୈଚିତ୍ର୍ୟ ଆକଳନ କରାଯାଇଥିବାରୁ ସେଇ ପାରମ୍ପରିକ ଅବବୋଧ ପୁରାଣ ପୃଷ୍ଠାରୁ ବାହାରି କେବଳ ସାହିତ୍ୟ ନୁହେଁ ପରନ୍ତୁ, ଅନ୍ୟାନ୍ୟ ବିଦ୍ୟା ମାଧ୍ୟମରେ ସମାଜରେ ବଳିଷ୍ଠ ଭାବେ ଆତ୍ମପ୍ରକାଶ କରିଛି । ପୁରୁଷ ସୃଷ୍ଟିକରିଛି ମିଥ୍ ଏବଂ ଏହି ମିଥ୍‌ରୁ ସୃଷ୍ଟି ହେଇଥିବା ନାରୀ ସଂସାରିକ ସୁଖ ଦୁଃଖଠାରୁ ଉର୍ଦ୍ଧ୍ୱରେ ରହି ସମାଜରେ କେବଳ ତ୍ୟାଗମୟୀ, ସର୍ବଂସହା, କରୁଣାମୟୀ ହେବାକୁ ବାଧ୍ୟ କରାଯାଇଛି । ପ୍ରତିସ୍ପର୍ଦ୍ଧୀ ତଥା ପ୍ରତିହିଂସା ପରାୟଣା ହେଲେ ସମାଜରେ ନାରୀର ସ୍ଥାନ ନାହିଁ । ତେଣୁ ସମାଜ ଏବଂ



Source: Author, Digitized by PPRACHIN, SOA

ପୁରୁଷ ଦୃଷ୍ଟିରେ ତା'ର ପ୍ରତିମୂର୍ତ୍ତି ସର୍ବଦା ସ୍ୱଚ୍ଛ ହେବା ଆବଶ୍ୟକ । ସେଥିପାଇଁ ସାଧାରଣ ମଣିଷ ପରି ନିଜର ପ୍ରବୃତ୍ତି, କାମନା, ବାସନାକୁ ଚରିତାର୍ଥ କରିବାରେ ପ୍ରତିବନ୍ଧକ ସୃଷ୍ଟି କରାଯାଇଛି ପୁରୁଷ କୃତ ପୁରାଣରେ । ସେଠାରେ ମଣିଷ ନାହିଁ, କେବଳ ଗୋଟିଏ ଆଦର୍ଶର ଖୋଳ ଭିତରେ ଆବଦ୍ଧ ହୋଇଛି ନାରୀର ବ୍ୟକ୍ତି-ସତ୍ତା । ଧର୍ମ ସହ ମିଥ୍‌ର ସହସଂପୃକ୍ତି ଥିବାରୁ ଧର୍ମର ଦ୍ୱାହିଦେଇ ପୁରୁଷ-ତନ୍ତ୍ର ସମାଜ ନାରୀର ସ୍ୱତଃସ୍ଫୂର୍ତ୍ତ ଜୀବନ ଧାରାରେ ବାଧା ସୃଷ୍ଟି କରେ । ସୀତାର ପାତିବ୍ରତ୍ୟ, ବହୁ ପୁରୁଷ ଭୋଗ୍ୟା ଦ୍ରୌପଦୀ ଏବଂ ଅହଲ୍ୟାକୁ ସତୀ ଆଖ୍ୟା ଦେବା ପଛରେ ରହିଛି – ପୁରୁଷର ଲିଙ୍ଗରାଜନୀତ (Gender Politics) ତଥା ଯୌନ ପ୍ରବୃତ୍ତିର ଦୂରଭିସନ୍ଧି ମୂଳକ ଅଭୀପ୍‌ସା । ଉକ୍ତ ଆଦର୍ଶବୋଧଟି ପୁରୁଷ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ସେଥିରେ ନାରୀର ପ୍ରବେଶ ଅନଧିକାର ଚର୍ଚ୍ଚା ସଦୃଶ ମନେକରାଯାଏ । ଭାରତୀୟ ସମାଜରେ ଧର୍ମ ଜୀବନ ବ୍ୟତୀତ ଏହି ମିଥ୍‌ର ସଂଚରଣ ସାମାଜିକ ପ୍ରେକ୍ଷାପଟରେ, ନାରୀର ସମଗ୍ର ଜୀବନଧାରା ଉପରେ ପ୍ରଭାବ ପକାଇଛି : "The gender construction that it achieved through the dominant myth of india woman - hood may well be read as the fromula for class / caste hegemony of Modern India." (Jasodhara Bagchi. P-4) ଶ୍ରୀମତୀ ରାୟ ନାରୀ ସଂପର୍କିତ ପୌରାଣିକ, ଐତିହାସିକ ତଥା କିମ୍ବଦନ୍ତୀ ମୂଳକ ମିଥ୍‌ର ପ୍ରତିବାଦ କରିବା ସହିତ ନାରୀର ପ୍ରକୃତ ସ୍ୱରୂପ, ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ଏବଂ ଉପ-ସଂସ୍କୃତି (Sub-Cultural) ଗଠନ ନିମନ୍ତେ ପ୍ରୟାସ କରିଛନ୍ତି ଉପନ୍ୟାସ 'ଯାଜ୍ଞସେନୀ'ରେ ।

ଦେବୀ-ସତ୍ତା ସଂପନ୍ନ ଦ୍ରୌପଦୀ (ଯାହା ମହାଭାରତରେ ବର୍ଣ୍ଣିତ) ହୋଇଛି ମାଟି, ପାଣି, ପବନରେ ଜୀବନ ନିର୍ବାହ କରୁଥିବା ସାଧାରଣ ସଚେତନଶୀଳ ଜଣେ ପାର୍ଥିବ ମାନବୀ । 'ମହାଭାରତ'ର କଥନ ଭାଗ ସହ ସାଦୃଶ୍ୟ ପରିଲକ୍ଷିତ ହୋଇଥିଲେ ବି ଉପନ୍ୟାସରେ ଦ୍ରୌପଦୀର ଆଭିମୁଖ୍ୟ ବଦଳି ଯାଇଛି । ତେଣୁ 'ଯାଜ୍ଞସେନୀ' ଯଥାର୍ଥରେ 'ନାରୀତ୍ୱର ଏକ ଆହ୍ୱାନ' ବୋଲି କୁହାଯାଇପାରେ । ଉପନ୍ୟାସର 'ଆଦ୍ୟାଭାସ'ରେ ଲେଖିକା କୁହନ୍ତି, "ବିଶ୍ୱର ଏ ଯାବତ୍ ଏପରି ନାରୀ ଜନ୍ମଲାଭ କରିନାହିଁ ଯିଏ ଯାଜ୍ଞସେନୀଙ୍କ ଭଳି ନିର୍ଯ୍ୟାତନା, ଲାଞ୍ଛନା, ମାନସିକ ସଂକଟ ଓ ସଂଘର୍ଷର ସମ୍ମୁଖୀନ ହୋଇଛି । କାମାନ୍ଧ ପୁରୁଷ ଦ୍ୱାରା ସୁନ୍ଦର ନାରୀ ଯୁଗେ ଯୁଗେ ନିର୍ଯ୍ୟାତିତ ଏବଂ ଅପମାନିତା ହୋଇ ଆସିଛି । କିନ୍ତୁ ଭାତୃବିବାଦ ଓ ଈର୍ଷା ଅସୂୟାର ବଶବର୍ତ୍ତୀ ହୋଇ ନିଜ ବଂଶର କୁଳବଧୂକୁ ବହୁ ଜ୍ଞାନୀ, ଗୁଣୀ, ମାନୀ ପୁରୁଷଙ୍କର ସମ୍ମୁଖରେ ବିବସନା କରିବା ଏବଂ ସମସ୍ତେ ନୀରବରେ ନିର୍ବସନା ଯୁବତୀ ଅଙ୍ଗ ଶୋଭା ଦର୍ଶନ କରିବା ପାଇଁ ବସି ରହିବା ଭଳି କଳଙ୍କିତ ଅଧ୍ୟାୟର ଦୃଷ୍ଟାନ୍ତ, ବିଶ୍ୱରେ ଅଲିଖିତ, ଲିଖିତ ଇତିହାସରେ ନାହିଁ ।"



Source: Author, Digitized by PPRACHIN, SOA

ପଞ୍ଚପତିଙ୍କ ସହ ଦ୍ରୌପଦୀ ସ୍ୱର୍ଗ ଯାତ୍ରା ସମୟରେ ହିମାଳୟର ସ୍ୱର୍ଣ୍ଣରେଣୁରେ ପାଦ ଖସିଯିବାରୁ ଭୂପତିତ ହୋଇଛି । ସେଥିପ୍ରତି କେହି ଦୃଷ୍ଟିପାତ କରିନାହାନ୍ତି । ସ୍ୱାର୍ଥୀ ସ୍ୱାମୀଙ୍କ ଏତାଦୃଶ କାର୍ଯ୍ୟରେ ଦୁଃଖିତ ଦ୍ରୌପଦୀ ସଖା କୃଷ୍ଣଙ୍କୁ ନିଜର ଗ୍ଲାନି, କ୍ଷୋଭ ଜଣାଇ ପତ୍ର ଲେଖିଛି, ଯେଉଁଥିରେ ତା'ର ଜନ୍ମବୃତ୍ତାନ୍ତ, ବିବାହ, ପତିମାନଙ୍କ ନିକଟରେ ବିଭକ୍ତ ମାନସିକତା, କର୍ଣ୍ଣ ସମେତ କୌରବଙ୍କର ତା' ପ୍ରତି କୁତ୍ସିତ ମନୋଭାବ, ମହାଭାରତ ଯୁଦ୍ଧ ଏବଂ ଯୁଦ୍ଧ ପରବର୍ତ୍ତୀ ଘଟଣାଗୁଡ଼ିକର ବିସ୍ତୃତ ବିବରଣୀ ସ୍ଥାନ ପାଇଛି । ଦେବୀ ପଦକୁ ତାଚ୍ଛଲ୍ୟ କରି ଜଣେ ସାଧାରଣ ଅସହାୟ ନାରୀ ଭାବେ ନିଜର ଦୁଃଖ , ବେଦନାକୁ ପ୍ରକାଶ କରିଛି । "କାଳ ମତେ 'ଦେବୀ ଦ୍ରୌପଦୀ'ରେ ପରିଣତି କରିପାରେ । ମୁଁ କିନ୍ତୁ ମରଶରୀର ଧରି ମର୍ତ୍ତ୍ୟରେ ମାନବୀ ଭାବେ ଧରାପୃଷ୍ଠକୁ ଆସିଥିଲି । x x x ଆମର କର୍ତ୍ତା ମହାମୁନି କୃଷ୍ଣ ଦ୍ୱୈପାୟନ ମତେ ଦେବୀର ଆସନରେ ବସାଇଛନ୍ତି । x x x କିନ୍ତୁ ମୁଁ ଦେବୀ ନୁହେଁ । ତେଣୁ ଆଜି ମୁଁ ମୃତ୍ୟୁ ପଥରେ ଭାସି ଯାଉ ଯାଉ ଯାହା କହିବି ସବୁ ସତ୍ୟ କହିବି ଏବଂ ମୋ ଜୀବନର କଥା ଜଣେ ମର୍ତ୍ତ୍ୟମାନବୀର ଜୀବନ ଚରିତ ଛଡ଼ା ଅନ୍ୟ କିଛି ନୁହେଁ ।"(ପୃ-୫)

ପ୍ରଥମ ସାକ୍ଷାତରେ କୃଷ୍ଣଙ୍କୁ ଭଲପାଇବସିଥିଲେ ଦ୍ରୌପଦୀ । କୃଷ୍ଣଙ୍କ ନୀଳ ଜୀମୂତ ରୂପର କମନୀୟତା, ଶାନ୍ତ ସ୍ନିଗ୍ଧ ମୁଖମଣ୍ଡଳ, ରକ୍ତିମ କୋମଳ ପଦଯୁଗଳ ଦ୍ରୌପଦୀଙ୍କ ଅନ୍ତଶ୍ଚେତନରେ ଗଭୀର ରେଖାପାତ କରିଥିଲା । ସାଧାରଣ ନାରୀ ପରି କୃଷ୍ଣଙ୍କ ପୌରୁଷରେ ଆକର୍ଷିତ ଦ୍ରୌପଦୀ ପାଇ ପାରି ନଥିଲେ କୃଷ୍ଣଙ୍କୁ । ଦ୍ରୌପଦୀର ମନୋଭାବ ଉପଲବ୍ଧି କରି ଅନୁରୂପ ସୌମ୍ୟ ପୁରୁଷ ଅର୍ଜୁନଙ୍କୁ ତାଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ କୃଷ୍ଣ, ସ୍ୱୟଂବର ସଭାରେ । ଏହି ସଭାରେ ଉପସ୍ଥିତ କର୍ଣ୍ଣଙ୍କ ପୌରୁଷ ତେଜରେ କିଛିକ୍ଷଣ ପାଇଁ ମୁଗ୍ଧ ଚକିତ ହୋଇପଡ଼ିଥିଲେ ସୁଦ୍ଧା ସର୍ତ୍ତାନୁଯାୟୀ ବିବାହ କରିଛନ୍ତି ପଞ୍ଚୁପାଣ୍ଡବଙ୍କୁ ଯାହା ଦ୍ରୌପଦୀଙ୍କୁ ବିଚଳିତ କରିଛି । "ଜଣେ ସ୍ତ୍ରୀ ପାଞ୍ଚଜଣ ପୁରୁଷଙ୍କର ପତ୍ନୀ ହୋଇ ରହିବାର ହାସ୍ୟକର ଦୃଷ୍ଟାନ୍ତ ମୋ ବ୍ୟତୀତ ପୃଥିବୀରେ ଆଉ କେହି ନାହାନ୍ତି, ହେବେ ନାହିଁ । ଏ ଅସମ୍ମାନକୁ ମୁଁ କାହିଁକି ନୀରବରେ ଗ୍ରହଣ କରିବି ? ମୁଁ କ'ଣ ଏକ ପ୍ରାଣହୀନ ପ୍ରତିମା ?" (ପୃ.-୬୬) ନିଜ ଇଚ୍ଛାରେ ପ୍ରତିକୂଳ ଅବସ୍ଥାରେ ବାଧ୍ୟବାଧକତାରେ ତାଙ୍କର ପଞ୍ଚସ୍ୱାମୀ ଗ୍ରହଣ ତା'ର ଆତ୍ମସମ୍ମାନ ପ୍ରତି ଏକ ଶକ୍ତ କୁଠାରଘାତ । ତେଣୁ ସେ ନିରବୀ ନ ଯାଇ ବିଦ୍ରୋହାଗ୍ନିରେ ପ୍ରଜ୍ୱଳିତ । ଦ୍ୱିତୀୟତଃ, ପୁରୁଷ ବହୁ ପତ୍ନୀ ଗ୍ରହଣ କରି ନିଜକୁ ଗୌରାବାନ୍ୱିତ ମନେକରେ, ଯାହା ନାରୀ ପକ୍ଷରେ ଅସହଣୀୟ । ତେବେ ଏହି ବହୁ ବିବାହ ପ୍ରଥାଟିକୁ ପୁରୁଷ ତାନ୍ତ୍ରିକ ସମାଜ ସ୍ୱୀକୃତ ଦିଏ । ପୁରୁଷର ଏହି ଲିଙ୍ଗ ରାଜନୀତି ଦ୍ରୌପଦୀ ମନରେ ବିଦ୍ରୋହ ସୃଷ୍ଟି କରିଛି । ଦ୍ରୌପଦୀର ଏପରି ଅସହାୟ ତଥା ଅନାକାଙ୍କ୍ଷିତ ପରିସ୍ଥିତିକୁ ବ୍ୟାସଦେବ ଅତି ସାଧାରଣ ଭାବେ ଗ୍ରହଣ କରିଛନ୍ତି ଏବଂ ଅତି ଚତୁରତାର ସହ ଏହି



Source: Author, Digitized by PPRACHIN, SOA

କାର୍ଯ୍ୟ ସଂପାଦନ କରିଛନ୍ତି । ନାରୀର ଅନ୍ତଃକରଣରେ ଉପୁଜିଥିବା ବେଦନାକୁ ଅନୁଧ୍ୟାନ କରିବାରେ ତାଙ୍କର ଅକ୍ଷମତା ଯେ ପ୍ରକାଶ ପାଇଛି ତାହା ଅନସ୍ୱୀକାର୍ଯ୍ୟ, ଯେଉଁଥିପାଇଁ ଲେଖିକା ଦ୍ରୌପଦୀକୁ ଏକ ଫେମିନିଷ୍ଟ ନାରୀଭାବେ ଗଢ଼ିତୋଳିଛନ୍ତି । ନାରୀର ପ୍ରବୃତ୍ତିକୁ ଧର୍ମ ଏବଂ ନୈତିକତାର ଆବରଣ ଭିତରେ ବିଶ୍ଳେଷଣ କରି ନାହାନ୍ତି । ତେଣୁ ସମସ୍ତଙ୍କ ମାନସିକ ସ୍ଥିତି ସହ ଖାପ ଖୁଆଇ ଚଳିବା ଏବଂ ପଞ୍ଚପତିଙ୍କ ଦୈହିକ କ୍ଷୁଧାକୁ ପ୍ରଶମିତ କରିବା ନିମନ୍ତେ ଦ୍ରୌପଦୀର ବିଭକ୍ତ ମନ ଯନ୍ତ୍ରଣାରେ ସିକ୍ତାର କରିଉଠଇଛି । "ନାରୀ ଧର୍ମ ଉପରେ ଏ ବିଭତ୍ସ ଅତ୍ୟାଚାରର କଳଙ୍କିତ ଇତିହାସ କାଳ ସ୍ରୋତରେ ଲିଭିବ ନାହିଁ । ଏଦ୍ୱାର ଉତ୍ତର ଦାୟାଦ ଏଥିପାଇଁ କୁରୁପତିଙ୍କୁ ନିନ୍ଦିତ କରିବେ । କୁରୁବଂଶର ଏହି ସ୍ୱେଛାଚାର ଏବଂ ଅତ୍ୟାଚାର ସମଗ୍ର ପୃଥିବୀର ନାରୀ ଜାତିକୁ ଅପମାନ କରିଛି ।"(ପୃ.-୨୭୭) ଏହି ସତର୍କତାତ୍ମକ ମିଶ୍ରିତ କରୁଣ ବିଗଳିତ ଉକ୍ତିଟି ଥିଲା କୁରୁ ସଭାରେ ବିବସ୍ତ୍ର ଦ୍ରୌପଦୀର । ଦ୍ରୌପଦୀର ଜୀବନ ଅଧ୍ୟାୟରେ ଏହି କଳଙ୍କିତ ମୁହୂର୍ତ୍ତ ଇତିହାସର କଳାଦାଗ । ନାରୀର ନଗ୍ନ ଅଙ୍ଗଶୋଭା ଦର୍ଶନ ପିପାସୁ ପୁରୁଷ ସମାଜର କୁତ୍ସିତ ମନୋଭାବକୁ ଲେଖିକା ପ୍ରକାଶ କରିଛନ୍ତି । ଜତିହାସ ଯେ ପରବର୍ତ୍ତୀ ସମୟରେ ଗୋଟିଏ ଜାତିର ନିମ୍ନ ମାନସିକତାକୁ ପ୍ରକାଶ କରି ନିନ୍ଦିତ କରିଥାଏ ତାହା ଅନସ୍ୱୀକାର୍ଯ୍ୟ । ଇତିହାସ ଜଣକ ପାଇଁ ନୁହେଁ; ଗଣ ଚେତନା ଏହାଦ୍ୱାରା ଆକ୍ରାନ୍ତ । ଦ୍ରୌପଦୀର ଅସହାୟତା ସମଗ୍ର ନାରୀ ଜାତି ପାଇଁ ଅଭିପ୍ରେତ । ଲେଖିକା ତେଣୁ ଦ୍ରୌପଦୀ ମାଧ୍ୟମରେ ନାରୀ ଜାତୀର ଉତ୍ଥାନ ପାଇଁ ପୁରୁଷତନ୍ତ୍ର ବିରୋଧୀ ଚେତନାଟିକୁ ଜାଗ୍ରତ କରିଛନ୍ତି । "The Idea behind consciousness rising is that when come together to articulate personal experience they will discover common threads and come to perceive what they had thought of as personal problems and inadequacies to be shared conditions determined by social structures." (Feminist and linguistic Theory, P-7)

ବ୍ୟାସଦେବଙ୍କ 'ମହାଭାରତ', ପିତୃକୈନ୍ଦ୍ରିକ ସମାଜ ଅନୁକୂଳ ଗୋଟିଏ ଧର୍ମଶାସ୍ତ୍ର । ସେଥିରେ ପୁରୁଷ ସ୍ୱାର୍ଥ ବିଜଡ଼ିତ ନୀତି ସଂପର୍କିତ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ ଚିତ୍ରିତ ଚରିତ୍ର ସମୂହ ଦେବଭାବ ପୂର୍ଣ୍ଣ । ଧର୍ମ ତଥା ନୀତିଶାସ୍ତ୍ର ଭିତରେ ସାଧାରଣ ମଣିଷ ବାସ୍ତବ ଜୀବନ ଯାତ୍ରା ଖୋଜି ପାଇବା ଦୁଷ୍କର । ଯେଉଁଥିପାଇଁ ସେଠାରେ ଦୌପଦୀ ଜଣେ ସାଧାରଣ ମାନବୀ ନୁହେଁ କିମ୍ବା ତା'ର ଚିନ୍ତାଚେତନା ମାନବୀ କୈନ୍ଦ୍ରିକ ନୁହେଁ । ତେଣୁ ଅତ୍ୟଧିକ ପ୍ରତିଶୋଧ ପରାୟଣା ହୋଇଥିବାରୁ ଦୁର୍ଯ୍ୟୋଧନର ରକ୍ତରେ କେଶ ବନ୍ଧନ ପାଇଁ ତା'ର ରାକ୍ଷସୀ ସୁଲଭ ତୃଷ୍ଣା ଜାଗ୍ରତ ହୋଇଛି । କିନ୍ତୁ ପ୍ରତିଭା ରାୟଙ୍କ ଦ୍ରୌପଦୀ ଏ କ୍ଷେତ୍ରରେ ଜୀବନର ବାସ୍ତବ କ୍ଷେତ୍ରପ୍ରତି ସଚେତନ । ଯଦିଓ କୁରୁସଭାରେ



Source: Author, Digitized by PPRACHIN, SOA

ଉନ୍ମୋଚିତ କବରୀ ବନ୍ଧନ ପାଇଁ ଦୁଃଶାସନର ରକ୍ତ ପ୍ରେକ୍ଷାଳନ ନିମନ୍ତେ ଜିଦ୍ ଧରି ବସିଥିଲେ କିନ୍ତୁ ସେଇ ମୁହୂର୍ତ୍ତ ଉପଗତ ହେବା ପରେ ତା' ମନରେ ପରିବର୍ତ୍ତନ ଆସିଛି । ଦୁଃଶାସନର ରକ୍ତ ସମଗ୍ର ମଣିଷ ସମାଜର ରକ୍ତ ବୋଲି ଉପଲବ୍ଧି କରିଛି । ତା' ଭିତରେ ପାଶବିକତାର ଗନ୍ଧରେ ସେ ମୂର୍ଚ୍ଛିତା ହୋଇପଡିଛି । ସ୍ୱତଃସ୍ଫୂର୍ତ୍ତ ଭାବେ ସେ ଉଚ୍ଚାରଣ କରିଛି, "ମୋତେ ରାକ୍ଷସୀ କରିଦିଅନା ।" ଧର୍ମ ଦର୍ଶନର କୁକ୍ଷୀ ମଧ୍ୟରେ ସୀମାବଦ୍ଧ ନ ହୋଇ ନାରୀ ଭିତରେ ଥିବା ଶକ୍ତିକୁ ସେ ଜାଗରିତ କରିଛି । ଜୀବନର ସମଗ୍ର ସ୍ତରରେ ନିଜକୁ ବିଶ୍ଳେଷଣ କରିଛି, ସ୍ୱାଧିକାର ସଂପର୍କରେ ପ୍ରଶ୍ନ ଉଠାଇଛି, ନାରୀ ସଂପର୍କିତ ସମସ୍ତ ମିଥ୍‌କୁ ଅସ୍ୱିକାର ନିମନ୍ତେ ସେ ତତ୍ପରତା ପ୍ରକାଶ କରିଛି । ସେ ଦେବୀ ହୋଇନାହିଁ କି ଦାନବୀ ହୋଇନାହିଁ, ପରନ୍ତୁ ସାଧାରଣ ମାନବ ହୋଇ ବଞ୍ଚିବାର ରାହା ଖୋଜିଛି । ସେଥିପାଇଁ ପ୍ରତ୍ୟେକ କାର୍ଯ୍ୟରେ ଦ୍ୱାହି ଦେଇଥିବା ଯୁଧିଷ୍ଠିରଙ୍କ ପ୍ରତି ତା' ମନରେ ତିକ୍ତତା ସୃଷ୍ଟି ହୋଇଛି, "ଭାବୁଛି ଯୁଧିଷ୍ଠିରଙ୍କୁ ସ୍ୱାମୀ ରୁପରେ ପାଇଥିଲେ ଯେ କେହି ନାରୀ ଅଶେଷ ଦୁଃଖ ନିଃଶ୍ଚୟ ଭୋଗିଥାନ୍ତା ।"(ପୃ. – ୪୪୫) ଧର୍ମର ଅର୍ଦ୍ଦଳି ଭିତରେ ନାରୀ-ସତ୍ତା କିପରି ବିଧ୍ୱସ୍ତ ହୋଇଛି ତାହା 'ଯାଜ୍ଞସେନୀ'ରେ ବେଶ୍ ସ୍ପଷ୍ଟ । ସାରା ଜୀବନ ନିଜକୁ ତିଳ ତିଳ ଦଗ୍ଧ କରି ଯେଉଁ ପଞ୍ଚପତିଙ୍କ ସୁଖ ସୁବିଧା ନିମନ୍ତେ ନିଜକୁ ସମର୍ପଣ କରିଥିଲେ, ପରିଶେଷରେ ସେମାନଙ୍କର ସ୍ୱାର୍ଥପର ମନୋଭାବ ଦୌପଦୀଙ୍କୁ ଖୁବ୍ କଷ୍ଟ ଦେଇଛି । ବ୍ୟାସଦେବଙ୍କ ଚକ୍ଷୁରେ କିମ୍ୱା ସମଗ୍ର ମାନବ ସମାଜ ଦୃଷ୍ଟିରେ ଯୁଧିଷ୍ଠିର ଧର୍ମରାଜ, ମହାନ ଏବଂ ନାରୀ ଜନ୍ମ ହେତୁ ଦ୍ରୌପଦୀ ସମସ୍ତ ପାପ ଓ ଧ୍ୱଂସର ମୂଳ କାରଣ । କିନ୍ତୁ 'ଯାଜ୍ଞସେନୀ'ରେ ଦ୍ରୌପଦୀ ନିକଟରେ ଯୁଧିଷ୍ଠିର ଅପେକ୍ଷା ଭୀମ ଉପଯୁକ୍ତ ପୁରୁଷ । ଭୀମସେନଙ୍କ ବ୍ୟତୀତ କୌଣସି ପତି ଦ୍ରୌପଦୀର ଅସହାୟ ଅବସ୍ଥାରେ ସମବେଦନା ପ୍ରକାଶ କରିନାହାନ୍ତି – କୁରୁ ସଭାସ୍ଥଳେ ଦ୍ରୌପଦୀଙ୍କୁ ବିବସନା କରିବା ହେଉ କିମ୍ୱା ଦ୍ରୌପଦୀର କ୍ରୋଧକୁ ପ୍ରଶମିତ କରିବା ପାଇଁ ଦୁଃସାଶନର ରକ୍ତରେ ଦ୍ରୌପଦୀର ମୁକ୍ତ କେଶ ବନ୍ଧନରେ ହେଉ, ସବୁ ପରିସ୍ଥିତି ଏବଂ ସମସ୍ତ ଅସହାୟ ଅବସ୍ଥାରେ ଦ୍ରୌପଦୀର ପକ୍ଷ ସମର୍ଥନ କରିଛି ଭୀମସେନ ।

'ଯାଜ୍ଞସେନୀ'ର ଦ୍ରୌପଦୀ ଜ୍ଞାନବତୀ, ବିଦୂଷୀ । ତେଣୁ ତା' ମଧ୍ୟରେ ଥିବା ନାରୀ ସଚେତେନତା ସହଜରେ ଉପଲବ୍ଧ । ସେ ବିଦ୍ରୋହୀ ହୋଇପାରେ, ଧର୍ମ ନାମରେ ନାରୀର ଅନ୍ତଃସତ୍ତାକୁ ଅବଦମିତ କରୁଥିବା ପୁରୁଷ ସମାଜକୁ ତିରସ୍କାର କରିପାରେ, ମାତ୍ର ମାତୃତ୍ୱବୋଧର ମହାନତାକୁ ସେ ଅସ୍ୱୀକାର କରିନାହିଁ । ମୃତ୍ୟୁର ସନ୍ଧିକ୍ଷଣରେ କୃଷ୍ଣ କୁ ମାଗିଥିବା ତିନୋଟି ବର ତା'ର ନାରୀ ଜୀବନର ଯଥାର୍ଥତାକୁ ସୂଚୀତ କରେ । "କୌଣସି କାଳେ କୌଣସି ନାରୀର ଏକ ସମୟରେ ଏକାଧିକ ପତିର ବିଧାନ କର ନାହିଁ । ନିଜକୁ ଅବିଭକ୍ତ ରଖି ବିଭକ୍ତ ହୋଇଯିବାର ଦୁଃଖ ମୁ ଜାଣେ । ଦୟାମୟ କୃଷ୍ଣ ! ଶତ୍ରୁକୁ ମଧ୍ୟ ପୁତ୍ରଶୋକ ଦିଅନାହିଁ । ପୁତ୍ରଶୋକଠାରୁ ବଳି ଶୋକ ସଂସାରରେ ଆଉ କିଛି ନାହିଁ ।



Source: Author, Digitized by PPRACHIN, SOA

ମୋଠାରୁ ସେ କଥା ବେଶି କିଏ ଜାଣେ । ସଭା ଗୃହରେ ମୋର ଯେଉଁ ନିର୍ଯ୍ୟତନା ହେଲା, ସେ ନିର୍ଯ୍ୟାତନା ପୃଥିବୀର ଅନ୍ୟ କୌଣସି ନାରୀ ଉପରେ ନ ହେଉ । ନାରୀକୁ ରୂପମୟୀ କର, ପୁରୁଷକୁ କାମୁକ କର ନାହିଁ ।"(ପୃ. - ୪୪୮)

ଲିଙ୍ଗଗତ ପାର୍ଥକ୍ୟ ହେତୁ (ଲେଖକ/ଲେଖିକା) ଭାଷା ପ୍ରୟୋଗ କ୍ଷେତ୍ରରେ ଯେଉଁ ମନସ୍ତତ୍ତ୍ୱଟି କାର୍ଯ୍ୟକରେ ତାହା ସଂପୂର୍ଣ୍ଣ ଗୋଟିଏ ସଂସ୍କୃତି ଉପରେ ନିର୍ଭର କରିଥାଏ । ନାରୀକୁ ଅନ୍ୟା (Otherness) ଆଖ୍ୟା ଦେଇ ତାକୁ ଅବଦମିତ କରିବାରେ ପ୍ରବୃତ୍ତି ପୁରୁଷ ତାନ୍ତ୍ରିକ ସମାଜର କ୍ରୋମଜମ୍‌ରେ ସଂଚିତ ହୋଇସାରିଛି । ସେଥିପାଇଁ ପୁରୁଷ ବିରୋଧୀ ଶବ୍ଦ ଯେତେ ଆଘାତପୂର୍ଣ୍ଣ ଭାବେ ଶୁଣାଗଲେ ମଧ୍ୟ ନାରୀ ବିରୋଧୀ ଶବ୍ଦର କଂପନ/ ପ୍ରଭାବ ତା'ଠାରୁ ଯଥେଷ୍ଟ କମ୍ । ପ୍ରଖ୍ୟାତ ବାମାବାଦୀ ଆଲୋଚିକା ହେଲେନ୍ ସିକ୍‌ସସ୍‌ଙ୍କ ମତରେ, କାର୍ଯ୍ୟକ୍ଷେତ୍ରରେ କିମ୍ବା ସ୍ୱଜନ କ୍ଷେତ୍ରରେ ଯେଉଁ ଯୁଗ୍ମୋକ୍ତି ବିଶିଷ୍ଟ ଶବ୍ଦ (ସତୀ- ଅସତୀ, ସୁନ୍ଦର-କୁତ୍ସିତ ଇତ୍ୟାଦି – Binary terms) ବ୍ୟବହାର କରାଯାଉଛି ତାହା ନାରୀକୁ ଅବଦମିତ କରିରଖିବାର ଏକ କୌଶଳ । ଯେଉଁ କୌଶଳର ପ୍ରୟୋଗରେ ନାରୀ ଅତି ସହଜରେ ମ୍ରିୟମାଣ ହୋଇପଡେ, ଦୁଃଖ, ଲଜ୍ଜାର ଏକ ମିଶ୍ରିତ କାରୁଣ୍ୟ ତା'ର ବଂଚିବାର ମାନଦଣ୍ଡକୁ ସଂକୁଚିତ କରିଥାଏ । ପୁରୁଷତନ୍ତ୍ର ସମାଜରେ ପ୍ରଚଳିତ ନାରୀ ବିରୋଧୀ ଶବ୍ଦ ସଂପର୍କରେ 'ଯାଜ୍ଞସେନୀ'ର ଉପଲବ୍ଧ । ନାରୀର ସତୀତ୍ୱ ବ୍ୟବହୃତ ଶବ୍ଦଗୁଡ଼ିକ ଯାହା ବ୍ୟାସଦେବ ତାଙ୍କ 'ମହାଭାରତ'ରେ ପ୍ରୟୋଗ କରିଛନ୍ତି, ପ୍ରତିଭା ରାୟ ସେହି ପୁରୁଷାୟିତ ମତକୁ ପ୍ରତ୍ୟାଖ୍ୟାନ କରିବା ସହ କେତେଗୁଡ଼ିଏ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । ତାଙ୍କ ମତରେ, "ସତୀ ନାରୀ', 'ଅସତୀ ନାରୀ' ଭଳି 'ସତ୍ୟ ପୁରୁଷ', ଅସତ୍ୟ ପୁରୁଷ' ଶବ୍ଦ ଶାସ୍ତ୍ରପୁରାଣରେ ନାହିଁ କାହିଁକି ? ପୁରୁଷର ହୃଦୟ କଣ ସୁନାରେ ଗଢ଼ା ଯାହା କେବେହେଲେ ପାପର ସ୍ପର୍ଶରେ ମଳିନ ହୁଏ ନାହିଁ ? ଶାସ୍ତ୍ରକାରମାନେ କ'ଣ କେବଳ ନାରୀ ପାଇଁ 'ପାପ'ର ତାଲିକା ପ୍ରସ୍ତୁତ କରିଥିଲେ ?(ପୃ. - ୧୦୭) ଏହି ଶାବ୍ଦିକ କୌଶଳ ହେଉ କିମ୍ବା ସାମାଜିକ ନିୟମ ହେଉ, ନାରୀ ଜୀବନ ସଂପର୍କୀୟ ମିଥ୍ ସର୍ବଦା ତା'କୁ ସମାଜର ଦ୍ୱିତୀୟ ଶ୍ରେଣୀର ନାଗରିକ ରୂପେ ବିବେଚିତ କରେ । ପୁରୁଷକୁ ସୁହାଇଲା ଭଳି କ୍ଷେତ୍ରଟିଏ ପ୍ରସ୍ତୁତ କରି ସଂପ୍ରତି ପୁରୁଷ ତାନ୍ତ୍ରିକ ସମାଜ ନିଜର ଔପନିବେଶିକ ରାଜନୀତିରେ ସଂପୂର୍ଣ୍ଣ ଅବଗୋହନ କରିଛି । ସିମନ୍ ଦି ବେଭୋର ଏ ସଂପର୍କରେ କୁହନ୍ତି, "Surely most of the myths had roots in the sopntaneous attitude of man towards his own existence and towards the world around him." (The Second Sex, P - 290) ତେବେ 'ଯାଜ୍ଞସେନୀ'ର ଦ୍ରୌପଦୀର ମନୋଭାବକୁ ବିଶ୍ଳେଷଣ କଲେ, ଦ୍ରୌପଦୀକୁ ପୂର୍ଣ୍ଣାଙ୍ଗ ନାରୀଭାବେ ଗ୍ରହଣ କରାଯାଏ, ଯିଏ ନିଜର ଦୁର୍ବଳତାକୁ ବିନା ଦ୍ୱିଧାରେ ପ୍ରକାଶ କରିବା ସହିତ ନିଜର ଆତ୍ମମର୍ଯ୍ୟାଦା ରକ୍ଷା ପାଇଁ



Source: Author, Digitized by PPRACHIN, SOA

ଅହରହ ସଂଗ୍ରାମ କରିଛି, ମାତୃତ୍ୱ ବୋଧର ସମ୍ମାନ ଓ ସ୍ୱାଧିକାର ପାଇଁ ଯାହାର ହୃଦୟ ବିଗଳିତ ହୋଇଛି ଏବଂ ନାରୀର ବ୍ୟକ୍ତି ସତ୍ତା ପ୍ରତିଷ୍ଠା ପାଇଁ ପୁରୁଷତନ୍ତ୍ର ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । କିନ୍ତୁ ଅନ୍ୟ ଦୃଷ୍ଟିରୁ ବିଚାର କଲେ, ଶ୍ରୀମତୀ ରାୟ ଦୌପଦୀକୁ ଗୋଟିଏ ନିର୍ଦ୍ଦିଷ୍ଟ ଶକ୍ତି-କେନ୍ଦ୍ର ଠାରୁ ମୁକ୍ତ କରିପାରିନାହାନ୍ତି । କୃଷ୍ଣ କୈନ୍ଦ୍ରିକ ଶକ୍ତି କେନ୍ଦ୍ରରୁ ବିଚ୍ୟୁତ ଦ୍ରୌପଦୀର ଆତ୍ମ-ସତ୍ତା ପ୍ରତିଷ୍ଠା ହୁଏତ ଏହି ଉପନ୍ୟାସଟିକୁ ନାରୀ ସମାଜ ଉଦାହରଣ ସୃଷ୍ଟି କରିପାରିଥାନ୍ତା ।

ସହାୟକ ଗ୍ରନ୍ଥ :


୧. BAGCHI (Jasodhara) Ed. Indian Women : Myth and Reality. 1995. Sangam Books (Indian) Ltd. Hyderabad.

୨. CAMERON (Deborah), Feminism and Lignuistic Theory. 2nd Ed. 1992. Macmillan Press. Hound Mills.

୩. CIXOUS (Helene) and CLEMENT (Catherine), Ed. The New Born Women, 1986. Manchester University, Manchester.

୪. DE BEAUVOIR (Simone), The Second Sex, 1988. (Picador Edition). Pen Books Ltd. London.




Source: Author, Digitized by PPRACHIN, SOA

# ଔପନ୍ୟାସିକା ସୁଲୋଚନା ଦାସ

ସୀମାହୀନ ନୀଳ ନୀଳ ବିସ୍ତୃତ ଆକାଶରେ ପକ୍ଷ ବିସ୍ତାରି ଉଡିବାର ସ୍ୱପ୍ନ କେଉଁ ବିହଙ୍ଗର ବା ନ ଥାଏ । କିନ୍ତୁ ଆହତ ପକ୍ଷ ବିହଙ୍ଗଟି ! ନିଜ ଭିତରେ ସଂଗୁପ୍ତ ସ୍ୱପ୍ନକୁ ସାକାର କରିବାର ଅଭିଳାଷ ନେଇ କେବଳ ଛଟପଟ ହେବା ବ୍ୟତୀତ ଅନ୍ୟ କିଛି ଉପଚାର ତା'ର ନ ଥାଏ । ନୀରବତାର ପ୍ରଶସ୍ତ ଛାୟା ତଳେ ରହି ନିଜର ଅସମର୍ଥତାକୁ ବିଶ୍ଳେଷଣ କରୁଥାଏ ।ବିଦ୍ରୋହ କରିଉଠେ ତା' ଚେତନାରେ ଥିବା ଭାବନାର ସମସ୍ତ ଅଭିବ୍ୟକ୍ତି । ସେଥିରୁ ମୁକ୍ତି ନିମନ୍ତେ ତା'ର ଭଗ୍ନ ମନସ୍କତା ଭିତରେ ଆନ୍ଦୋଳିତ ହୁଏ ସ୍ୱାଧୀନତାର ସ୍ୱପ୍ନରାଜି । ଡେଣା ଝାଡି ଚତୁର୍ଦ୍ଦିଗକୁ ପ୍ରଦକ୍ଷିଣ କରିବାର ପ୍ରଚେଷ୍ଟାରେ ବଞ୍ଚିବାର ବିଫଳତାର ପ୍ରତିଧ୍ୱନି ଗୁଞ୍ଜରିତ ହୁଏ । ନିଜର ଆତ୍ମଗ୍ଲାନି, ଆତ୍ମମର୍ଯ୍ୟାଦା ସତେ ଯେପରି ଅପହୃତ ହୁଏ ନିୟତିର ନିର୍ଦ୍ଦେଶରେ । ନାରୀ ଠିକ୍ ସେହିପରି । ପୁରୁଷ କୈନ୍ଦ୍ରିକ ସମାଜରେ ନିଜର ସ୍ୱରୂପ, ସ୍ୱାତନ୍ତବୋଧ ପ୍ରଦର୍ଶନରେ ଆହତ ପକ୍ଷ ବିହଙ୍ଗଟି ପରି କେବଳ ଅସମର୍ଥତାର ବୋଝ ବୋହି ସ୍ୱପ୍ନ ଦେଖେ ସୁନେଲି ସ୍ୱାଧୀନତାର । କେଉଁଠି ସେ ପ୍ରତାରିତ ହୁଏ, କେଉଁଠି ଅବା ତା'ର ସ୍ୱାଧୀନତା ଅପହୃତ ହୁଏ ପୁରୁଷର ନିଷ୍ଠୁର ନିର୍ଦ୍ଦେଶ ଓ ବିଚାରଶୂନ୍ୟ କ୍ରିୟା ପ୍ରକ୍ରିୟାରେ । ନୀରବ ନିଥର କରିଦିଏ ନାରୀ ଚେତନାରେ ଜାଗ୍ରତ ଭାବନାକୁ । ସ୍ୱପ୍ନ ଭଂଗ, ନୈରାଶ୍ୟ ପ୍ରପୀଡିତ ତା'ର ଅବଚେତନା ମନ ସେହି ନୀରବତାକୁ ଭାଙ୍ଗି ପୁରୁଷ ସମକକ୍ଷ ହେବାର ଅଭିଳାଷ ବାରମ୍ବାର ପ୍ରତିକ୍ରିୟାଶୀଳ ହୋଇଉଠେ । ସମାଜ ଓ ପରମ୍ପରା ବିରୁଦ୍ଧରେ ନିଜ ଅସ୍ତିତ୍ୱକୁ ଜାହିର କରିବା ପାଇଁ ଏବଂ ପୁରୁଷ ଦ୍ୱାରା ଅପହୃତ ହୋଇଥିବା ତା'ର ସ୍ୱାଧୀନ ଚିନ୍ତାକୁ ପରିପ୍ରକାଶ ପାଇଁ ପଞ୍ଜୁରୀମୁକ୍ତ ବିହଙ୍ଗ ପରି ପକ୍ଷ ବିସ୍ତାରି ଉପଲବ୍ଧ କରେ ସ୍ୱାଧୀନତାର ସାଦୁ ।

ନାରୀତ୍ୱବୋଧ (Feministic Attitude) କହିଲେ ନାରୀ ନିର୍ଯ୍ୟାତନା, ନାରୀ ଅତ୍ୟାଚାର, ନାରୀ ପରାଧୀନ ବିରୋଧୀ ଅଭିବ୍ୟକ୍ତି କେବଳ ବୁଝାଏ ନାହିଁ, ଏହା ସହିତ ସଂପୃକ୍ତ ଥାଏ ତା ପ୍ରତି ସମାଜର ଦୃଷ୍ଟିଭଙ୍ଗୀ, ନାରୀର ସ୍ୱାତନ୍ତ୍ୟ ଓ ନାରୀସୁଲଭ ଗୁଣ (Femininity) । ଜୀବ ବିଜ୍ଞାନ ଦୃଷ୍ଟିକୋଣରୁ ନାରୀ ଓ ପୁରୁଷ ମଧ୍ୟରେ ପାର୍ଥକ୍ୟ ପରିଦୃଶ୍ୟ ହେଲେ ମଧ୍ୟ ଚେତନାଗତ ସ୍ତରରେ ଉଭୟେ ସମାନ । ଜୀବିକା କ୍ଷେତ୍ରରେ (Profes-sional) ଓ ସୃଜନ କ୍ଷେତ୍ରରେ ଉଭୟଙ୍କର ସମାନ ଦକ୍ଷତା ଅଛି । କିନ୍ତୁ ଜୀବନ ପ୍ରତି



Source: Author, Digitized by PPRACHIN, SOA

ଉଭୟଙ୍କର ଦୃଷ୍ଟିଭଙ୍ଗୀ ଅଭିଜ୍ଞତା ଓ ଅବବୋଧ ଭିନ୍ନ । ନାରୀ ନାରୀକୁ ଯେପରି ଚିହ୍ନିଛି, ତା'ର ଅବସ୍ଥାନ ସମ୍ପର୍କରେ ଯେତିକି ସଚେତନ, ପୁରୁଷର ତଦନୁରୂପ ଅଭିଜ୍ଞତା ନାହିଁ ।

'The female imaginationùe Patricia Meyer Spooks' କୁହନ୍ତି – "There seems to be something that one might call a women's point of view...an out look sufficiently distinct to be recognizable through the centureis.

ନାରୀ ପୃଥିବୀକୁ ପୁରୁଷଠାରୁ ଭିନ୍ନ ଦୃଷ୍ଟିରେ ଦେଖେ, ଜୀବନକୁ ଭିନ୍ନଭାବରେ ବଞ୍ଚେ, ସୁତରାଂ ନାରୀର ଅନୁଭୂତି ଏବଂ ଅଭିବ୍ୟକ୍ତି ସ୍ୱତନ୍ତ୍ର । ଏହି ସ୍ୱାତନ୍ତ୍ର୍ୟବୋଧ ବା ବୈଶିଷ୍ଟ୍ୟ ହିଁ Feminism ବା ବାମାବାଦ ।

ଉପନ୍ୟାସରେ ଥାଏ ବିସ୍ତୃତ ଜୀବନଜିଜ୍ଞାସାର ଚିତ୍ର । ମନୁଷ୍ୟ ମନନଶୀଳତାର ପ୍ରାରୂପ ଏବଂ ପାରିପାର୍ଶ୍ୱିକ ପରିମଣ୍ଡଳର ମର୍ମସ୍ପର୍ଶୀ ଆଲେଖ୍ୟ । ନାରୀ ରଚିତ ଉପନ୍ୟାସ ଏବଂ ପୁରୁଷ ରଚିତ ଉପନ୍ୟାସରେ ଏ ସବୁ ଉପାଦାନ ଉପଲବ୍ଧ ହେଲାବେଳେ ନାରୀ ଚରିତ୍ର କଥା ତା'ର ନାରୀତ୍ୱବୋଧ (Feminine sensibility)ର ଚିତ୍ରଣ ଉଭୟଙ୍କ ଉପନ୍ୟାସରେ ଭିନ୍ନ ଧରଣର ହୋଇଥାଏ । ଏହାର କାରଣ ନାରୀର ଜୀବନ ସଂକ୍ରାନ୍ତୀୟ ଭାବ ପୁରୁଷର ପ୍ରାଧାନ୍ୟ ହେତୁ, ନାରୀ ଲେଖିକା ସେଗୁଡିକୁ ପାଠକରି ଉପନ୍ୟାସ ରଚନା କରୁଥିବାରୁ ଏହି ନାରୀତ୍ୱବୋଧ ଦିଗଟି ସାଧାରଣତଃ ଯେତିକି ପରିମାଣରେ ସ୍ପଷ୍ଟ ହେବା କଥା, ତାହା ହୋଇପାରୁନି । ଆମ ସମାଜର ମନସ୍କତା ଓ ପରିମଣ୍ଡଳୀୟ ଭାବଧାରା ତା'ର ପ୍ରତିରୋଧର କାରଣ ହୋଇପାରେ । କିନ୍ତୁ Virginia Woolf, Jane Austeen, George Eliot, Bront Sisters ପ୍ରମୁଖ ପାଶ୍ଚାତ୍ୟ ଜଗତର ଔପନ୍ୟାସିକାଙ୍କ ଉପନ୍ୟାସରେ ଏହି ସ୍ୱର ଅତି ତୀବ୍ର ଏବଂ ସ୍ପଷ୍ଟ । ଓଡ଼ିଆ ଔପନ୍ୟାସିକା ଏହି ସଙ୍କୁଚିତ ଭାବଧାରାଠାରୁ ନିଜକୁ ପୃଥକ୍ କରି ନିଜ ପ୍ରତି ଓ ନିଜ ଜାତି ପ୍ରତି ହେଉଥିବା ସମସ୍ତ ଅତ୍ୟାଚାର ଓ ନାରୀ ମନସ୍ତତ୍ତ୍ୱକୁ ସଠିକ୍ ରୂପାୟନ ଦିଗରେ ଯେ ପ୍ରଚେଷ୍ଟିତ ନୁହେଁ, ତାହା ଅନସ୍ୱୀକାର୍ଯ୍ୟ । "The subjection of women (1869)ରେ J.S.Mill କୁହନ୍ତି "If women lived in a different country from men, and had never read any of their writings, they would have had a literature of their own."

ଔପନ୍ୟାସିକା ସୁଲୋଚନା ଦାସଙ୍କ ଉପନ୍ୟାତ୍ରୟୀ 'ଅନନ୍ତିକା' (୧୯୮୮), 'ସ୍ୱପ୍ନାହତା' (୧୯୯୦) ଓ 'ମରୁତୀର୍ଥ' (୧୯୯୨)ରେ ବାମାବାଦୀ (Feminism) ଚିନ୍ତାଧାରାଟି ଯଦିଓ ବଳିଷ୍ଠ ନୁହେଁ; ତଥାପି କେତେକ କ୍ଷେତ୍ରରେ ଏହି ସ୍ୱର ଅତ୍ୟନ୍ତ ସ୍ପଷ୍ଟ । କଥାବସ୍ତୁଠାରୁ ଆରମ୍ଭ କରି ଚରିତ୍ର ଚିତ୍ରାୟନ ଓ ଭାଷା ଶୈଳୀରେ ନାରୀସୁଲଭ ଗୁଣଟି ଯେପରି ପ୍ରକଟିତ, ସେହିପରି ମଧ୍ୟ ପାରମ୍ପରିକ ରଚନା ।



Source: Author, Digitized by PPRACHIN, SOA

ସ୍ୱପ୍ନାହତା ସୁଲୋଚନା ଦେବୀଙ୍କ ପ୍ରଥମ ଉପନ୍ୟାସ ହେଲେ ମଧ୍ୟ ଉପନ୍ୟାସରେ ସମସ୍ତେ ଗୁଣାବଳୀରେ ଭୂଷିତ । କେବଳ ଯେ କଥାବସ୍ତୁର ସାର୍ଥକ ସଂଯୋଜନା ତା ନୁହେଁ, କଥାବସ୍ତୁ ମଧ୍ୟରେ ପ୍ରକଟିତ ନାରୀତ୍ୱବୋଧର ସ୍ପର୍ଶ ଅନୁରଣିତ । ନିଜର ଅଭିମତ ଉପସ୍ଥାପନାରେ ନାୟିକା 'ସ୍ୱପ୍ନା'ର ସମାଜ ଓ ପରମ୍ପରା ବିରୁଦ୍ଧରେ ଆପଣାର ଅସ୍ତିତ୍ୱ ତଥା ସ୍ୱାଧୀନତାକୁ ଜାହିର କରିବାର ସମର୍ଥତା ପ୍ରକାଶ କରିବା ସହ ସେହି ଚରିତ୍ରଟି କିପରି ତାଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟିକରି ଉପନ୍ୟାସରେ ରୂପ ପାଇଛି, ତାହା ସ୍ୱୀକାର କରିଛନ୍ତି ।

'ସ୍ୱପ୍ନାହତା'ର ମୁଖ୍ୟ ନାୟିକା ମହୁଆ ଚୌଧୁରୀ ନ ହେଲେ ବି ଏକ ଭିନ୍ନ ମନସ୍କତାରୁ ତା'ର ଜନ୍ମ । ପୁରୀ ବେଳାଭୂମିରେ ଅପରିଚିତ ସନ୍ଦୀପଙ୍କ ସହ ପରିଚିତା ହୁଏ ମହୁଆ ଚୌଧୁରୀ । ଘଟଣାକ୍ରମରେ ପରସ୍ପର ପ୍ରତି ଆନ୍ତରିକ ଶ୍ରଦ୍ଧାଶୀଳ ମନୋଭାବ ସେମାନଙ୍କୁ ନିକଟତମ କରିଦିଏ । ସନ୍ଦୀପଙ୍କର ସମ୍ମୋହନତା ପ୍ରତିବିମ୍ବିତ ହୁଏ ଶିକ୍ଷୟିତ୍ରୀ ମହୁଆ ଚୌଧୁରୀର ମନ ଦର୍ପଣରେ । ସମାଜର ଅବୋଧ ଅପବାଦକୁ ପଛରେ ପକାଇ ବନ୍ଧୁତ୍ୱର ବନ୍ଧନରେ ଆବଦ୍ଧ ହୁଅନ୍ତି । ସନ୍ଦୀପଙ୍କ ନିର୍ଜନପଣିଆ ମହୁଆଙ୍କୁ ବିଚଳିତ କରେ । ମହୁଆଙ୍କ ଅନୁରାଗ ବିଜଡ଼ିତ ସମର୍ଥନରେ ସନ୍ଦୀପ ପ୍ରକାଶ କରନ୍ତି ତାଙ୍କ ଅତୀତ ପ୍ରେମିକା 'ସ୍ୱପ୍ନା'ର କରୁଣ ଜୀବନର ଇତିବୃତ୍ତ ।

ସନ୍ଦୀପ ଗ୍ରାମୀଣ ପରିବେଶ ସହ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ ମଧ୍ୟ ତା'ର ବୋଧଶକ୍ତି ଓ ପ୍ରଜ୍ଞାଠାରେ ସମ୍ଭ୍ରାନ୍ତବଂଶୀୟା ସ୍ୱପ୍ନା ଆତ୍ମସମର୍ପଣ କରେ । ଜ୍ଞାନଚର୍ଚ୍ଚାଠାରୁ ଆରମ୍ଭ କରି ଭବିଷ୍ୟତ ଜୀବନ ସମ୍ପର୍କରେ ଦୁହିଁଙ୍କ ଅଭିମତ ପ୍ରାୟତଃ ସମାନ । ସ୍ୱପ୍ନାର ବାପା ଶଙ୍କରବାବୁ ଏସବୁ କାର୍ଯ୍ୟକଳାପରେ ସନ୍ତୁଷ୍ଟ ନ ହୋଇ ମନସ୍ଥ କରନ୍ତି ସମ୍ଭ୍ରାନ୍ତ ବଂଶଜ ଅବିନାଶ ସହ ସ୍ୱପ୍ନାକୁ ବିବାହ ଦେବାକୁ । ସନ୍ଦୀପଙ୍କ ସହ ଆଲୋଚନା ପରିପ୍ରେକ୍ଷୀରେ ସ୍ୱାପ୍ନାର ନାରୀ ସ୍ୱାଧୀକାର ସମ୍ପର୍କିତ ସଚେତନତା ଜାଗରିତ ହୁଏ । "ସାଧାରଣ ଅଶିକ୍ଷିତ ନାରୀଟିଏ ପରି ଚାରିକାନ୍ଥ ଭିତରେ ମୁଁ ବନ୍ଦୀ ହେବାକୁ ଚାହେଁ ନାହିଁ । ଶାଢ଼ୀ ଅଳଙ୍କାରକୁ ମୁଁ ମୋ ସ୍ୱାଧୀନତାର ବେଡି ହେବାକୁ ଦେବିନାହିଁ । ମୁଁ ନିଜକୁ ପ୍ରସ୍ତୁତ କରିବି । ସ୍ୱାଧୀନ ଭାବରେ ଜଗତକୁ ଦେଖିବି ଓ ଚିହ୍ନିବ ।" (ପୃ.୩୨) କିନ୍ତୁ ଶଙ୍କର ବାବୁଙ୍କ ନିର୍ଦ୍ଦେଶରେ ସ୍ୱପ୍ନା ବିବାହ କରେ ଅବିନାଶକୁ । ଅବିନାଶଙ୍କର ପରିବାର ସମ୍ଭ୍ରାନ୍ତ ଥିଲେ ବି ପାରିବାରିକ ମନସ୍କତା ସମ୍ଭ୍ରାନ୍ତ ନ ଥିଲା । ପିଞ୍ଜରାବଦ୍ଧ ଚଢ଼େଇ ପରି ମୁକ୍ତ ଆକାଶରେ ଉଡିବାର ସ୍ୱପ୍ନ ବାରମ୍ବାର ମର୍ମାହତ କରୁଥିଲା ସ୍ୱପ୍ନାକୁ । ତା'ର ସ୍ୱାଧୀନତା ଅପହୃତ ହେଉଥିଲା ଶାଶୁ, ଶ୍ୱଶୁର ଓ ଅବିନାଶର ନିଷ୍ଠୁର ନିର୍ଦ୍ଦେଶରେ । ମାତୃତ୍ୱର ସ୍ପର୍ଶ ପାଇଥିଲେ ସୁଦ୍ଧା ସେ ସ୍ୱତଃସ୍ଫୁର୍ତ ଭାବେ ଆକୃଷ୍ଟ ହୋଇଯାଇଥିଲା, ଅନାଥ ଶିଶୁଙ୍କ ପ୍ରତି । ସମସ୍ତ ବିରୋଧ ସତ୍ତ୍ୱେ ଏକ ଶିଶୁ-କଲ୍ୟାଣ ଅନୁଷ୍ଠାନ ଗଢ଼ିଥିଲା । I.A.S. ପରୀକ୍ଷାରେ କୃତିତ୍ୱ



Source: Author, Digitized by PPRACHIN, SOA

ସହ ସଫଳତା ହାସଲ କରିବା ପରେ ମୁଖ୍ୟ ପ୍ରଶାସନିକ ଭାବେ ସେହି ଅଞ୍ଚଳରେ ଅବସ୍ଥାନ କରୁଥିଲେ ସନ୍ଦୀପ । ସନ୍ଦୀପଙ୍କଠାରୁ ସରକାରୀ ଆନୁଗତ୍ୟ ପାଇବାଠାରୁ ଆରମ୍ଭ କରି ନିଜର ସମସ୍ତ ଅଳଙ୍କାର ବିକ୍ରୟପୂର୍ବକ ସେହି ଅନୁଷ୍ଠାନଟିକୁ ଉନ୍ନତ ପଥରେ ଅଗ୍ରସର କରିଥିଲା । ଅପର ପକ୍ଷରେ ସ୍ୱପ୍ନାର ଏ ଭଳି ସ୍ୱାଧୀନ ଚିନ୍ତା ଓ କାର୍ଯ୍ୟ କ୍ରମଶଃ ତିକ୍ତତା ସୃଷ୍ଟି କରୁଥିଲା ଶାଶୁ ଶ୍ୱଶୁରଙ୍କ ମନରେ । ସ୍ୱପ୍ନାର ମୁକ୍ତ ଚେତନାରେ ବିଚଳିତା ରକ୍ଷଣଶୀଳା ଶାଶୁଙ୍କ ବିଷମିଶା ସର୍ବତରେ ମୃତ୍ୟୁ ହୁଏ ସ୍ୱପ୍ନାର ।

ପୁରୀ ବେଳାଭୂମିରେ ସନ୍ଦୀପ ଓ ମହୁଆଙ୍କ କଥୋପଥନ ମାଧ୍ୟମରେ ସମସ୍ତ ଉପନ୍ୟାସଟି ପରିକଳ୍ପିତ । ନେପଥ୍ୟ କଥନ (Flash back) ରୀତିରେ ରଚିତ ଏହି ଉପନ୍ୟାସରେ ନାରୀତ୍ୱବୋଧର ସ୍ପର୍ଶ ଅନ୍ୟ ଏକ ପରିଚ୍ଛେଦରେ ଆଲୋଚନା କରାଯିବ । ତାଙ୍କର ଉପନ୍ୟାସ 'ଅନନ୍ତିକା' ଏହି ପ୍ରକାର ମାନସସମ୍ଭୁତ । ଯେଉଁଠି ରହିଛି - ନାରୀ ଜାଗରଣର ଆଲେଖ୍ୟ ।

ସରିତା ଓ ମନଜିତ୍‌ଙ୍କ ଦାମ୍ପତ୍ୟ ଜୀବନ ସୁଖ ସ୍ୱଚ୍ଛନ୍ଦପୂର୍ଣ୍ଣ । ତଥାପି ମନଜିତ୍‌ଙ୍କ ବହୁନାରୀ ସମ୍ଭୋଗର ବାସନା, ନିଜ Office Tour ଆଦି କାର୍ଯ୍ୟରେ ବ୍ୟସ୍ତ ରହିବା ଯୋଗୁଁ ସରିତାଙ୍କ ଏକଲାପଣ ଭିତରେ ଉଙ୍କିମାରେ 'ବିଶ୍ୱକଲ୍ୟାଣୀ ମିହଳା ସମିତି'ର ସଭ୍ୟାଭାବେ ଯୋଗଦେବା ପାଇଁ । ମନିଜିତ୍ ଏଥିପ୍ରତି ଆଗ୍ରହ ପ୍ରକାଶ କରି ନ ଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ସ୍ୱୀକୃତି ଦିଅନ୍ତି । ମହିଳାମାନଙ୍କ ସୁରକ୍ଷା ତଥା ଶିକ୍ଷା, ସଂସ୍କୃତି ପ୍ରତି ସଚେତନତା ସୃଷ୍ଟିଠାରୁ ଆରମ୍ଭ କରି ଅନାଥ ଶିଶୁମାନଙ୍କ ପରିଚର୍ଯ୍ୟା ପ୍ରତି ପ୍ରତିଟି କାର୍ଯ୍ୟରେ ସରିତାଙ୍କ ଦକ୍ଷତାପୂର୍ଣ୍ଣ ସହଯୋଗିତା ସମିତିର ଅଧ୍ୟକ୍ଷା ଶ୍ୟାମାମଣିଙ୍କୁ ବିମୋହିତ କରେ । ଶ୍ୟାମାମଣିଦେବୀ ଓ ସମିତିର ଅନ୍ୟାନ୍ୟ ସହକର୍ମୀ ଓ କର୍ମିଣୀଙ୍କ ଅନୁରୋଧରେ ନିର୍ବାଚନ ଲଢ଼ନ୍ତି ଓ ସେଥିରେ ବିଜୟ ଲାଭ କରି ମୁଖ୍ୟମନ୍ତ୍ରୀଙ୍କ ସୁପାରିଶ ଅନୁଯାୟୀ ଉଭୟ ଶିଳ୍ପ ଓ ଶିକ୍ଷାମନ୍ତ୍ରୀ ଭାବେ ନିଯୁକ୍ତ ହୋଇ ଉପୁଜୁଥିବା ସମସ୍ତ ସମସ୍ୟାର ସମାଧାନ କରନ୍ତି । ଅପର ପକ୍ଷରେ ରୂପଜୀବୀ ଛନ୍ଦା ସହ ମନିଜିତ୍‌ଙ୍କ ସମ୍ପର୍କ ଗଢ଼ିଉଠେ । ଛନ୍ଦାଙ୍କ ଆତ୍ମପ୍ରତ୍ୟୟର ଅନୁସନ୍ଧାନ ଦୁହିଁଙ୍କୁ ଭିନ୍ନ ଏକ ମାନସିକ ଜଗତରେ ଅବତରଣ କରାଇଦିଏ । ସ୍ୱାମୀ ତରୁଣକାନ୍ତିଙ୍କ ମୃତ୍ୟୁ ପରେ ଅର୍ଥ ଲୋଭରେ ଦିଅର ସମେତ ଅନ୍ୟାନ୍ୟ ବନ୍ଧୁବର୍ଗ ଛନ୍ଦାଙ୍କୁ ଘରୁ ତଡ଼ି ଦିଅନ୍ତି । ଏପରିକି ତା'ର ଛୋଟ ପୁଅ ଏବଂ ଝିଅଙ୍କୁ (ଶୋଭନ ଓ ଲିସା)ତାଙ୍କ ବାପା-ମା'ଙ୍କ ମୃତ୍ୟୁ ହୋଇଛି ବୋଲି କହି ଡେରାଡୁନକୁ ପଠାଇ ଦିଅନ୍ତି ପଢ଼ିବାପାଇଁ । ରାଜବାଟୀରୁ ବିତାଡ଼ିବା ଛନ୍ଦା ରାଜରାସ୍ତାରେ ଘୂରିବୁଲେ ଆଶ୍ରୟ ନେବାପାଇଁ । ପରିସ୍ଥିତିରେ ତାଡ଼ନାରେ ରାଜରାଣୀରୁ ରୂପଜୀବୀ ହୁଏ । ଛନ୍ଦାଙ୍କ ଅତୀତ ଜୀବନର ରହସ୍ୟ ଉଦ୍‌ଘାଟିତ ହେବାପରେ ମନିଜିତ୍‌ଙ୍କ ଚେତନାରେ ଅଙ୍କୁରିତ ହୁଏ ଶୋଭନ ଓ ଲିସାକୁ ଛନ୍ଦାଙ୍କ ନିକଟରେ ସମର୍ପି ଦେବାର ଭାବନା । ସେହି ଭାବନାକୁ ସେ କରନ୍ତି ସାକାରୀଭୂତ । ମନ୍ତ୍ରୀ ହେବାପରେ ସରିତା ଭିନ୍ନ ବାସଗୃହକୁ ଚାଲି ଆସନ୍ତି । ମନିଜିତ୍ ଅନୁଭବ



Source: Author, Digitized by PPRACHIN, SOA

କରନ୍ତି ଶୂନ୍ୟତା ଓ ନିଃସଙ୍ଗତା । ସରିତାଙ୍କ କାର୍ଯ୍ୟ-କଳାପକୁ ଉଚ୍ଛ୍ୱସିତ ପ୍ରଶଂସା କଲେ ମଧ୍ୟ ଘଟଣାକ୍ରମରେ ତାଙ୍କ ପ୍ରତି ସନ୍ଦେହ ସୃଷ୍ଟି ହୁଏ । ସେହି ସନ୍ଦେହର ମାନସିକ ରୋଗରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ଚିକିତ୍ସିତ ହୁଅନ୍ତି । ଏପରି ଖବର ଶୁଣି ସରିତା ମନ୍ତ୍ରୀପଦରୁ ଇସ୍ତଫା ଦେଇ ମନିଜିତ୍‌ଙ୍କ ସେବାରେ ମନୋନିବେଶ କରନ୍ତି । ରୋଗମୁକ୍ତ ହେବାପରେ ମନିଜିତ୍ ସରିତାଙ୍କ ପ୍ରତି ବୃଥା ସନ୍ଦେହ ଦୂରକରି ପୁନଶ୍ଚ ମନ୍ତ୍ରୀତ୍ୱର ଦାୟିତ୍ୱର ନେବାପାଇଁ ଅନୁରୋଧ କରନ୍ତି । କିନ୍ତୁ ସରିତା ନିଜ ପ୍ରତିଜ୍ଞାରୁ ବିଚ୍ୟୁତ ନ ହୋଇ ସ୍ୱାମୀ ଓ ପୁତ୍ର ପରିବେଷ୍ଟିତ ନିଜ ସଂସାରର ଦାୟିତ୍ୱ ବହନ କରନ୍ତି ।

ମରୁତୀର୍ଥ ସୁଲୋଚନା ଦେବୀଙ୍କର ଭିନ୍ନ ସ୍ୱାଦର ଉପନ୍ୟାସ । ଭାରତ ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟରେ ଦେଖାଦେଇଥିବା ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ସଙ୍କଟକୁ ପ୍ରକାଶ କରି କେତୋଟି ଇତିହାସ-ସତ୍ୟ-ଚରିତ୍ରମାନଙ୍କୁ ଅବତରଣ କରାଇ ସେଥିରେ କଳ୍ପନାର ଆସ୍ତରଣ ଦେଇ ଉପନ୍ୟାସଟିର କଥାବସ୍ତୁକୁ ଗୁରୁଗମ୍ଭୀର ତଥା ମନନଶୀଳ ଓ ପଠନଧର୍ମୀ କରିଛନ୍ତି । ପୃଷ୍ଠା ପୃଷ୍ଠା ବ୍ୟାପି ସ୍ୱାଧୀନତା ସଂଗ୍ରାମୀ ଦୁଃଖୀଶ୍ୟାମଙ୍କ ଜୀବନ ବୃତ୍ତାନ୍ତ ଓ ତତ୍କାଳୀନ ସମାଜ ସମସ୍ୟା ସମ୍ପର୍କରେ ତାଙ୍କର ପ୍ରତିକ୍ରିୟାଶୀଳ ମନୋଭାବ ଯେପରି ପ୍ରକାଶ ପାଇଛି, ସେହିପରି ସ୍ୱାମୀ ପରିତ୍ୟକ୍ତା ଶିଖାର ସମାଜ ସଂସ୍କାରଜନିତ ମାନସିକତା ସ୍ୱରୂପ ସମ୍ମାନବୋଧକୁ ସ୍ଥାୟିତ୍ୱ ଦେବାର ଅଭିଳାଷ ପ୍ରକଟିତ ।

ଇଂରେଜମାନେ ଭାରତ ଛାଡ଼ି ଚାଲିଗଲେ । ଏହା ରାଜନୈତିକ ସ୍ୱାଧୀନତା । ଇଂରେଜମାନଙ୍କ ପରେ ଭାରତରେ ଥିବା କେତେକ ସ୍ୱାର୍ଥଗୃଧ୍ନୁ ବ୍ୟକ୍ତି ଅନ୍ୟମାନଙ୍କ ମାନସିକ ସ୍ୱାଧୀନତାକୁ ଅପହରଣ କରୁଛନ୍ତି । ବାନରସେନାର ଜଣେ ସକ୍ରିୟ କର୍ମକର୍ତ୍ତା ଭାବେ ଯୋଗଦେଇ ଦୁଃଖୀଶ୍ୟାମବାବୁ ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ରରେ ଅଭିମନ୍ତ୍ରିତ ହୋଇଥିଲେ ଏବଂ ଯେଉଁଥିପାଇଁ ଇଂରେଜମାନଙ୍କଠାରୁ ଲାଠି ପ୍ରହାର ଖାଇବା ଓ ଜେଲରମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇ ଭାରତକୁ ସ୍ୱାଧୀନତା ଆଣି ଦେଇଥିଲେ । ପରବର୍ତ୍ତୀ କାଳରେ ସମାଜ ଏପରି କଳୁଷିତ ହେବ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । 'ଦେଶ ବଞ୍ଚାଅ' ଅନୁଷ୍ଠାନ ଗଢ଼ି ଦୁଃଖୀଶ୍ୟାମବାବୁ ଅଭିଷେକ, ଶିଖା ପ୍ରଭୃତି କେତେଜଣ ସମାଜ ମଙ୍ଗଳକାରୀ ବ୍ୟକ୍ତି, ସମାଜକୁ କଳୁଷିତ କରୁଥିବା ବ୍ୟକ୍ତିସତ୍ତା ବିରୁଦ୍ଧରେ ବିଦ୍ରୋହ କରିଛନ୍ତି । ଯେଉଁଥିପାଇଁ ଶିଖା ହୋଇଛି ଧର୍ଷିତା ଓ ତା'ର ପ୍ରତିଶୋଧମୂଳକ କାର୍ଯ୍ୟରେ ନବ ନିର୍ବାଚିତ ସଂଗ୍ରାମ ବେହେରାର ହୁଏ ମୃତ୍ୟୁ ।

ଔପନ୍ୟାସିକାଙ୍କ ଭାଷା ବିନ୍ୟାସରେ ଦେଖାଦେଇଛି ଉଭୟ ପାରମ୍ପରିକ ଓ ଆଧୁନିକ ଶୈଳୀର ସୁସଂଯୋଜନା । ତାଙ୍କର ଏହି ତିନୋଟି ଉପନ୍ୟାସରେ ଚରିତ୍ରଗୁଡିକ ପ୍ରାୟତଃ ମଧ୍ୟବିତ୍ତ କିମ୍ବା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ସମ୍ଭୂତ ହୋଇଥିବାରୁ ଚରିତ୍ରାନୁମୁଖୀ ଭାଷା ପ୍ରୟୋଗ ପରିଦୃଶ୍ୟ । କେତେକ ସ୍ଥାନରେ ଗ୍ରାମୀଣ ପରିବେଶରୁ ସୃଷ୍ଟି ହୋଇଥିବା ଚରିତ୍ର (ଅଭିଷେକର



Source: Author, Digitized by PPRACHIN, SOA

ମା') ପ୍ରଭୃତି ମୁଖରେ ନିଛକ ଗାଉଁଲୀ ଭାଷା ପ୍ରୟୋଗ କୌଶଳ ଯଥାନୁରୂପେ ପ୍ରକାଶ ପାଇଛି । ଉପନ୍ୟାସଗୁଡିକର ଅନ୍ତଃସୌନ୍ଦର୍ଯ୍ୟ ଅଧିକତର କାବ୍ୟମୟ କରିବା ପାଇଁ ଔପନ୍ୟାସିକାଙ୍କ ତଦନୁରୂପ ଶବ୍ଦ ଓ ବାକ୍ୟ ପ୍ରୟୋଗ ଉଲ୍ଲେଖଯୋଗ୍ୟ – "ଯାହାର ଜୀବନ – ଆକାଶରୁ ପ୍ରୀତିର ସୂର୍ଯ୍ୟ ଅନନ୍ତକାଳ ପାଇଁ ନିର୍ବାପିତ ହୋଇ ଯୋଇଛନ୍ତି, ସେ ଜୀବନ କେବଳ ମହା ଅନ୍ଧକାର ଭିତରେ ହଜି ଯାଇଥିବା ମୁକ୍ତିର ସୂର୍ଯ୍ୟକୁ ଅଣ୍ଡାଳି ଚାଲିଛି, ଏକ ନିଷ୍ଫଳ ଖୋଜିବାର ଖେଳ ।" (ସ୍ୱପ୍ନାହତା, ପୃ-୨୧) ଏତଦ୍‌ବ୍ୟତୀତ ଔପନ୍ୟାସିକାଙ୍କ ପ୍ରତ୍ୟେକ ଉପନ୍ୟାସରେ ରହିଛି ତତ୍‌କୀର୍ତ୍ତନ (Flash Back) ଶୈଳୀ । 'ସ୍ୱପ୍ନାହତା'ରେ ମହୁଆଙ୍କ ନିକଟରେ ସନ୍ଦୀପଙ୍କ ଅତୀତ ପ୍ରେମିକା ସ୍ୱପ୍ନା ଜୀବନର କରୁଣ ପାଦ ଶବ୍ଦର ବର୍ଣ୍ଣନା, 'ଅନନ୍ତିକା'ରେ ମନିଜିତ୍‌ଙ୍କ ସାନ୍ନିଧରେ ପ୍ରକାଶ ପାଇଚି ଛନ୍ଦାଙ୍କ ଜୀବନବୃତ୍ତାନ୍ତ । ମରୁତୀର୍ଥରେ ସ୍ୱାଧୀନତା ସଂଗ୍ରାମୀ ଦୁଃଖୀଶ୍ୟାମ ବାବୁଙ୍କର ଚେତନାରେ ସମୟାନୁକ୍ରମେ ଉଦ୍ଭାସିତ ହୋଇଛି ଅତୀତ ସଂଗ୍ରାମ ଜୀବନ କାହାଣୀ ।

ସଫୋକ୍ଲିସ୍ କୁହନ୍ତି, "Silence is woman's crown" । କିନ୍ତୁ ଏହି ନୀରବତା ମଧ୍ୟରେ ନିଜ ଅସ୍ତିତ୍ୱର ମୂଲ୍ୟାୟନ ପାଇଁ ନାରୀ ଜାଗରଣର ଆବଶ୍ୟକତା ରହିଛି । ନାରୀକୁ ନ୍ୟୁନ ଓ ଦୈବ ସାଧନାର ପ୍ରତିକୂଳ ବୋଲି ଭାରତ ତଥା ପାଶ୍ଚାତ୍ୟ ଜଗତର ଯେଉଁ ଅସ୍ମିମଜ୍ଜାଗତ ଧାରଣା ଥିଲା, ତାକୁ ବିଲୁପ୍ତ କରି ନିଜ ସ୍ୱାଧୀକାର ସମ୍ପର୍କରେ ସଚେତନତା ସୃଷ୍ଟି କରିବା ନିମନ୍ତେ ସୃଜନ କ୍ଷେତ୍ରଠାରୁ ଜୀବିକା କ୍ଷେତ୍ରରେ ନାରୀର ପ୍ରବେଶ ସେହି ପାରମ୍ପରିକ ଧାରଣାକୁ ବଦଳାଇ ଦେଇଛି । ସାହିତ୍ୟ କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ନିଜ ସ୍ୱରୂପକୁ ଉନ୍ମୋଚନ କରିଛି ।

ନାରୀ ସମ୍ପର୍କିତ ଗଢ଼ି ଉଠିଥିବା କେତେକ ପୌରାଣିକ ତଥା ଲୌକିକ ମିଥ୍‌କୁ ଖଣ୍ଡନ କରିଛି ଏବଂ ସେଠାରେ ପ୍ରତିପାଦିତ ହୋଇଛି ପୁରୁଷ ଚେତନାର ବିରୋଧାଭାଷ । ତେଣୁ ଅନେକ କ୍ଷେତ୍ରରେ Mythical woman characterମାନଙ୍କୁ ସାଂପ୍ରତିକ ସମସ୍ୟା ସହ ସାମିଲ କରି ତାକୁ ଏକ ଭିନ୍ନ ଦୃଷ୍ଟିରେ ବିଚାର କରୁଛନ୍ତି । Elaine Showlter ତାଙ୍କ A literature of their of their own ରେ କୁହନ୍ତ – The feminine writers were thus looking for two kinds of heroines. They watned in spring professional role- models; but they also wanted romatic heroines, a sister - hood of shared passion and suffering, woman who sobbed and struggled and rebelled. (Page-103)

ସୁଲୋଚନା ଦେବୀଙ୍କ ବାମାବାଦୀ (Feminism) ଚିନ୍ତାଧାରା, ଏହ ତିନୋଟ ଉପନ୍ୟାସରେ ଉଗ୍ର ନ ହେଲେ ବି ଯେଉଁ କେତୋଟି ନାରୀ ଚରିତ୍ର ସୃଷ୍ଟି କରିଛନ୍ତି, ସେମାନଙ୍କ ସୁପ୍ତ ମନରେ ରହିଛି, ସ୍ୱାଧୀନତା ତଥା ସଂସ୍କାରଧର୍ମୀ ସଂପୃକ୍ତ ଭାବନା ।



Source: Author, Digitized by PPRACHIN, SOA

'ମରୁତୀର୍ଥ'ର ଦୁଃଖୀଶ୍ୟାମ ବାବୁଙ୍କ ଚରିତ୍ର ଚିତ୍ରାୟନକୁ ଛାଡ଼ିଦେଲେ ଅନ୍ୟ ଉପନ୍ୟାସ ଦୁଇଟିରେ ଥିବା ପୁରୁଷ ଚରିତ୍ରଙ୍କୁ ସେପରି ଚିତ୍ରଣ କରିପାରି ନାହାନ୍ତି । ଯଦିଓ 'ମନିଜିତ୍' (ଅନନ୍ତିକା)-ଚରିତ୍ରଟି ଗୋବିନ୍ଦ ଦାସଙ୍କ 'କାଉଲ' ଚରିତ୍ର ସମକକ୍ଷ ନୁହେଁ ; ତଥାପି ତାଙ୍କ ଚେତନା ସ୍ତର 'କାଉଲ'ର ଅନ୍ତଚେତନା ସହ ପ୍ରାୟତଃ ସମାନ । ଅନ୍ୟ ଦୃଷ୍ଟିରୁ ବିଚାର କଲେ ପୁରୁଷ ମନସ୍ତତ୍ତ୍ୱକୁ ନାରୀ ଆତ୍ମସାତ୍ କରି ଯେଭଳି ସୃଜନ କ୍ଷେତ୍ରରେ ପ୍ରୟୋଗ କରିବା କଥା ତା'ର ଏକ ବ୍ୟତିକ୍ରମ ଦେଖାଯାଏ । କାରଣ ସ୍ୱରୂପ କୁହାଯାଇପାରେ ଯେ, ନାରୀ ଦୃଷ୍ଟିଭଙ୍ଗୀରେ ପୁରୁଷର ଔଜଲ୍ୟତା ଏବଂ ଅଧିକାର ସାବ୍ୟସ୍ତ କରିବାର ମନୋବୃତ୍ତି ତାକୁ ସନ୍ଦେହର ତ୍ରିଛକି ରାସ୍ତାରେ ଠିକ କରାଇଥାଏ । ଏତଦ୍‌ବ୍ୟତୀତ ସାମାଜିକ ଓ ପାରିବାରିକ ଜୀବନଯାତ୍ରାରେ ପୁରୁଷର ନାରୀ ପ୍ରତି ଥିବା ଶାସନଗତ ମନସ୍କତା ନାରୀକୁ ଏକ ସଙ୍କଟପୂର୍ଣ୍ଣ ପରିସ୍ଥିତିରେ ପକାଇଥାଏ । ପାଶ୍ଚାତ୍ୟ ସାହିତ୍ୟରେ ନାରୀ ଲେଖିକା ଯେପରି ଭାବେ ପୁରୁଷର ଅନ୍ତଃସାରଶୂନ୍ୟ ହୀନମନ୍ୟତାକୁ ପ୍ରକାଶ କରୁଛନ୍ତି, ଭାରତୀୟ ସାହିତ୍ୟ କ୍ଷେତ୍ରରେ ନାରୀ ଲେଖିକାଙ୍କ ଅନୁରୂପ ପ୍ରତିକ୍ରିୟାଶୀଳ ଭାବ ଉଦ୍ରେକ ହୋଇନାହିଁ । ପୁରୁଷ ବିରୋଧାତ୍ମକ ସ୍ୱର ନାରୀ ଲେଖିକାଙ୍କ ସୃଷ୍ଟିରେ ଯେ ନାହିଁ, ତାହା ସତ୍ୟ ନ ହେଲେ ମଧ୍ୟ ସେହି ସ୍ୱରଟି ଧୂମାୟିତ । ତେବେ ସୁଲୋଚନାଦେବୀ ଉପନ୍ୟାସଗୁଡ଼ିକରେ ପୁରୁଷ ଚରିତ୍ରମାନଙ୍କୁ ଏକ ନିର୍ଦ୍ଦିଷ୍ଟ ପାରମ୍ପରିକ ରୀତିରେ ଅବତାରଣା କରିଛନ୍ତି । ଅଧିକାଂଶ ସ୍ଥଳରେ ପୁରୁଷର ନାରୀ ପ୍ରତି ଥିବା ମନୋଭାବକୁ ଯେତିକି ଉଗ୍ର କରିବା କଥା, ତା'ର ବ୍ୟତିକ୍ରମ ଦେଖାଯାଇଛି ।

ସୁଲୋଚନା ଦେବୀଙ୍କ ନାରୀ ସୃଷ୍ଟି ମଧ୍ୟରେ ନିହିତ ଅଛି, ନାରୀ ସ୍ୱାବଲମ୍ବନଶୀଳତା, ନାରୀ ମନସ୍ତତ୍ତ୍ୱଜନିତ ନାରୀତ୍ୱବୋଧର ସ୍ପର୍ଶକାତର ପ୍ରାଣ । ନାରୀ ଏକ ସମ୍ଭୋଗ ଉପାଦାନ । ପୁରୁଷର ଏ ଯେଉଁ ମନୋଭାବ ରହିଛି, ଗରଜ୍ଞସଭସସ୍ୱଷ ମାନଙ୍କ ଦ୍ୱାରା ପ୍ରତିହତ ହେବା ସହ ପୁରୁଷ ସମକକ୍ଷ ହେବାର ଅଭିଳାଷ ଅଭିନନ୍ଦନୀୟ । A.R. Wadia ତାଙ୍କ 'The Ethics of feminism'ରେ କୁହନ୍ତ – "Women does not live by bread alone, what she needs first of all is a free soul." ତେଣୁ ନାରୀ ଯେ କେବଳ ପରିବାର ମଧ୍ୟରେ ଆବଦ୍ଧ ହୋଇ ରହିବ ତାହା ନୁହେଁ, ପୁରୁଷ ଯେପର Intel-lectual Proletariat ଭାବେ ସମାଜରେ ନିଜ ଆଧିପତ୍ୟ ବିସ୍ତାର କରିଛି, ନାରୀ ମଧ୍ୟ ସମସ୍ତ ସଙ୍କୁଚିତ ପରିମଣ୍ଡଳରୁ ନିବୃତ ହୋଇ ନିଜ ପ୍ରଜ୍ଞା ପ୍ରକାଶ ଦିଗରେ ସଚେଷ୍ଟ । ରାଜନୀତିଠାରୁ ସମାଜ ସେବା ତଥା ଶିକ୍ଷ କ୍ଷେତ୍ରରେ ନାରୀର ଅନୁପ୍ରବେଶ କେବଳ ଯେ ପୁରୁଷ ସହ ପ୍ରତିଦ୍ୱନ୍ଦ୍ୱିତା କରୁଛି, ନାରୀ ମଧ୍ୟ ସମସ୍ତ ସଙ୍କୁଚିତ ପରିମଣ୍ଡଳରୁ ନିବୃତ ହୋଇ ନିଜର ପ୍ରଜ୍ଞା ପ୍ରକାଶ ଦିଗରେ ସଚେଷ୍ଟ । ରାଜନୀତିଠାରୁ ସମାଜ ସେବା ତଥା ଶିକ୍ଷ କ୍ଷେତ୍ରରେ ନାରୀର ଅନୁପ୍ରବେଶ କେବଳ ଯେ ପୁରୁଷ ସହ ପ୍ରତିଦ୍ୱନ୍ଦ୍ୱିତା କରୁଛି ତାହା ନୁହେଁ, ନିଜ



Source: Author, Digitized by PPRACHIN, SOA

ମାନସିକ ଓ ଶାରୀରିକ ପ୍ରକାର୍ଯ୍ୟ ମାଧ୍ୟମରେ ସମାଜରେ ତା'ର ଆବଶ୍ୟକତାକୁ ମଧ୍ୟ ପ୍ରତିପାଦନ କରୁଛି । ଔପନ୍ୟାସିକା ଏ ସବୁ ଦିଗ ପ୍ରତି ସଯତ୍ନଶୀଳ । ତାଙ୍କ ସୃଷ୍ଟିରେ ନାରୀର ଭୂମିକା ତଥା ନାରୀତ୍ୱବୋଧ ସ୍ପଷ୍ଟ । ସ୍ୱପ୍ନା, ସରିତା ଓ ଶିଖା ମୁଖ୍ୟ ନାରୀ ଚରିତ୍ର ଭାବେ ଉପନ୍ୟାସରେ ଯେପରି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ସେହିପରି ମହୁଆ, ଛନ୍ଦା ପ୍ରଭୃତି ଚରିତ୍ରଗଣଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ନ ହେଲେ ବି ସେମାନଙ୍କ ଭିତରେ ଥିବା Feminine sensibility କିଛି କମ୍ ନୁହେଁ । କୌଣସି ନାୟିକା ପୁରୁଷର ଦୟାର ପାତ୍ରୀ ହୋଇନାହାନ୍ତି । ସନ୍ଦୀପ ସ୍ୱପ୍ନାର ପାରିବାରିକ ଅବସ୍ଥା ସମ୍ପର୍କରେ ଜାଣିବାକୁ ଇଚ୍ଛା କଲେ ମଧ୍ୟ ପାରେ ନାହିଁ । ପରସ୍ପର ଅବୋଧ ହୋଇଉଠିଛନ୍ତି । ସନ୍ଦୀପର ଏହି ନ ପାରିବାପଣିଆର ଅସମର୍ଥତାକୁ ଅଧିକତର ସ୍ପଷ୍ଟ କରିବା ପାଇଁ ଔପନ୍ୟାସିକା କୁହନ୍ତି, "ନାରୀ ହୃଦୟ ଅଭିମାନରେ ହିମାଳୟ ପରି ସ୍ତୂପୀକୃତ ବରଫ ପାଲଟିଯାଏ କେତେବେଳେ ତ, ଆଉ କେତେବେଳେ ଝରଣାର ଉଲଙ୍ଘନ ପରି ତରଳି ବିଚଳିତ ହୋଇଯାଏ କରୁଣାର ମମତାରେ... । ବହୁଭାବରେ, ବହୁ ରୂପରେ ପରିବ୍ୟାପ୍ତ ତା'ର ନାରୀତ୍ୱର ସତ୍ତା ସେ ଯେତିକି ସହଜ ସରଳ ମନେହୁଏ, ତାହାଠାରୁ ସହସ୍ର ଗୁଣରେ ସେ ରହସ୍ୟମୟୀ ଚିରକାଳ । ସ୍ୱପ୍ନାର ସ୍ୱାଧୀନତାପ୍ରବଣ ମାନସିକତା ଶାଶୁ, ସ୍ୱାମୀଙ୍କ ଦ୍ୱାରା ପ୍ରତିହତ ହୋଇଛି । ବିଚ୍ଛିନ୍ନପକ୍ଷ ବିହଙ୍ଗ ସଦୃଶ ସ୍ୱପ୍ନା ମନରେ କେବଳ ନୀରବ ପ୍ରତିବାଦ । "ବିଶ୍ୱସ୍ତ ବଶମ୍ୱଦା ବୋହୂପଣିଆ କରିବାର ଅର୍ଥ କ'ଣ ନିଜର ସମସ୍ତ ଉନ୍ନତ ରୁଚିବୋଧ ଓ ଭାବ ଆକାଙ୍କ୍ଷାକୁ ଜଳାଞ୍ଜଳି ଦେବା ? ଅନ୍ଧ ଭାବରେ ପାରମ୍ପରିକତାକୁ ଅନୁସରଣ କରି ବାଟ ଚାଲିବା ?" ପର ମୁହୂର୍ତ୍ତରେ ତା'ର ନୀରବ ପ୍ରତିକ୍ରିୟାଶୀଳ ମନୋଭାବ ସମସ୍ତ ପ୍ରତିରୋଧକୁ ପରାହତ କରି ଶିଶୁ କଲ୍ୟାଣ ଅନୁଷ୍ଠାନରେ ଯୋଗଦିଏ, ଯାହାର ପରିଣାମ ସ୍ୱରୂପ ଶାଶୁର ବିଷମିଶା ସର୍ବତରେ ସ୍ୱପ୍ନା ମୃତ୍ୟୁବରଣ କରେ । Neo feminismର ମୁଖ୍ୟ ବିଚାର "ନାରୀ ହିଁ ନାରୀର ପ୍ରଧାନ ଶତ୍ରୁ ।" ହୁଏତ ଏହା ଔପନ୍ୟାସିକାଙ୍କ ଅଚେତନ ମନର ପ୍ରତିକ୍ରିୟା ହୋଇପାରେ; ମାତ୍ର ନାରୀର ସୃଷ୍ଟି ଓ ବିନାଶ କ୍ଷେତ୍ରରେ କ୍ରୁରତାପୂର୍ଣ୍ଣ ଭୂମିକା ଅନସ୍ୱୀକାର୍ଯ୍ୟ ।

ସରିତା (ଅନନ୍ତିକା) ଜାଣେ ଯେ, ତା'ର ସ୍ୱାମୀ ଜଣେ ଲମ୍ପଟ ବହୁନାରୀ ସମ୍ଭୋଗବିଳାସୀ ପୁରୁଷ; ତଥାପି ସ୍ୱାମୀ ଅନୁରକ୍ତା । ମନିଜିତ୍‌ଙ୍କ ସ୍ୱୀକୃତିରେସେ 'ମହିଳା ସମିତି'ର ସଭ୍ୟା ଓ ପରେ ହୁଅନ୍ତି ରାଜ୍ୟ ବିଧାନ ସଭାର ଶିଳ୍ପ ଓ ଶିକ୍ଷାମନ୍ତ୍ରୀ । ସରିତା ଚରିତ୍ର ସୃଷ୍ଟ ପଛରେ ରହିଛି ଔପନ୍ୟାସିକାଙ୍କ ନାରୀତ୍ୱବୋଧ – "ନାରୀ ଜାତିକୁ ଏଷ୍ଟିମେଟ୍ କରିବାରେ ପୁରୁଷମାନେ କେତେ ଭୁଲ୍ କରନ୍ତି ସବୁବେଳେ । ନାରୀ ଚାହିଁଲେ କ'ଣ ସୃଷ୍ଟିରେ ଏପରି କିଛି ଶକ୍ତି ଅଛି, ତା'ର ପ୍ରତିରୋଧ କରିପାରିବ ? ଅସମ୍ଭବ ସ୍ୱେଚ୍ଛାରେ ସେ ଆନୁଗତ୍ୟ ସ୍ୱୀକାର କରିଛି । ଏହାର ଅର୍ଥ ନୁହେଁ ଯେ, ସେ ଅପାରଗ, ଅକ୍ଷମ, ଅଯୋଗ୍ୟ... ଅନ୍ୟକୁ ଦେଖି ମଧ୍ୟ ମନୁଷ୍ୟ ଅନେକ କଥା ଜାଣିପାରେ ନିଜର ଦୂରଦୃଷ୍ଟି



Source: Author, Digitized by PPRACHIN, SOA

ଦ୍ୱାରା । ସେ ଅନ୍ତର୍ଦୃଷ୍ଟି ଯେ ତାଙ୍କର ନିଶ୍ଚୟ ଅଛି, ଏ କଥା ସେ ପ୍ରମାଣ କରିଦେବେ ।" କିନ୍ତୁ ପରବର୍ତ୍ତୀ ସମୟରେ ସରିତାଙ୍କୁ ରାଜନୀତି କ୍ଷେତ୍ରରୁ ନେଇଆସି ପାରିବାରିକ ବନ୍ଧନରେ ପୁନଶ୍ଚ ବାନ୍ଧିଦେବା ଔପନ୍ୟାସିକାଙ୍କ ପାରମ୍ପରିକତା ପ୍ରତି ଏକ ଦୁର୍ବଳ ମନୋଭାବର ପରିଚୟ ଦେଇଛି । ଭାରତୀୟ ନାରୀତ୍ୱ ସମ୍ପର୍କିତ ଧାରଣାଟି ଔପନ୍ୟାସିକାଙ୍କ ଅବଚେତନ ମନରେ ଦେଖାଦେଇଛି । କିନ୍ତୁ ଶିଖା (ମରୁତୀର୍ଥ) ଚରିତ୍ର ସୃଷ୍ଟି କରିବା ପଛରେ ତାଙ୍କର ଏପରି ମାନସିକତା ନାହିଁ । ସେହି ହେତୁ ଚରିତ୍ରହୀନ ମଦ୍ୟପ I.A.S. ସ୍ୱାମୀଙ୍କୁ ତ୍ୟାଗପତ (Divorce) ଦେଇ 'ଦେଶ ବଞ୍ଚାଅ' ଅନୁଷ୍ଠାନରେ ଯୋଗଦେଇଛି । ସମାଜ ସଂସ୍କର ପ୍ରବୃତ୍ତି ଯେପରି ତାଠାରେ ଦେଖାଦେଇଛି, ସେହିପରି ମଧ୍ୟ ନାରୀ ନାଗରଣ ତଥା ନାରୀ ଜାତିର ଅସ୍ତିତ୍ୱ ଜାହିର ପାଇଁ ତା ମନରେ ଦେଖାଦେଇଛି ଏକ ବିଦ୍ରୋହାତ୍ମକ ଭାବ । "ଆମେ ନାରୀମାନେ କେବଳ ଗୋଟିଏ ଛୁଆ ଜନ୍ମ କରିବା ମେସିନ୍ ପରି କାର୍ଯ୍ୟ କରୁ । ସେବାଦାସୀ ପରି ରହିବାରେ ଆମର ଗୌରବ... ଆମେ ନିର୍ଯ୍ୟାତିତା ହେବାପାଇଁ ଅଧିକ ପସନ୍ଦ କରୁ । କାରଣ ଗୋଟିଏ ମିଥ୍ୟା ଆଦର୍ଶର ଖୋଳପା ଭିତରୁ ବାହାର ଆସି ନିଜ ଆଖିରେ ଦୁନିଆଁକ୍ ଦେଖିବାକୁ କେବେ ବି ଚେଷ୍ଟା କରୁନାହିଁ । ସବୁବେଳେ ପୁରୁଷ ଉପରେ ବୋଝପରି ଲଦି ହୋଇଯିବା ଅପେକ୍ଷା ଆତ୍ମନିର୍ଭରଶୀଳ ହେବା କ'ଣ ଉଚିତ୍ ନୁହେଁ ।" କଳୁଷିତ ସମାଜକୁ ସୁଧାରିବା ପାଇଁ ଶିଖାର ମନୋବଳକୁ ଭାଙ୍ଗି ଦିଆଯାଇଥିଲେ ବି ସେ ବିଧାୟକ ସଂଗ୍ରାମ ବେହେରାଙ୍କୁ ଲୋକାରଣ୍ୟରେ ହତ୍ୟା କରେ ।

ନାରୀର ପୂର୍ଣ୍ଣତା ମାତୃତ୍ୱରେ । ଶିଶୁର ଭୂମିଷ୍ଠ ପୂର୍ବରୁ ମାତୃ ହୃଦୟରେ ଉଦିତ ବାତ୍ସଲ୍ୟବୋଧକୁ ଔପନ୍ୟାସିକା ଯଥାର୍ଥ ରୂପ ଦିଅନ୍ତି ସ୍ୱପ୍ନା, ସରିତା ଓ ଛନ୍ଦାଙ୍କ ଚରିତ୍ର ମାଧ୍ୟମରେ । ପୁରୁଷର ଶିଶୁ ଜନ୍ମ କରିବାର ଅକ୍ଷମତା ଓ ତତ୍ ସଂପୃକ୍ତ ନାରୀର ଅଭିଜ୍ଞତା ପରସ୍ପରଙ୍କ ମାନସିକତାଠାରୁ ପୃଥକ୍ କରେ । ନାରୀତ୍ୱବୋଧରେ ଏହି ଉପାଦାନଟି ସ୍ୱତନ୍ତ୍ର ଓ ନିଜସ୍ୱତାର ଉପାଦାନଟି ସ୍ୱତନ୍ତ ଓ ନିଜସ୍ୱତାର ଏକ ନିଦର୍ଶନ । "ଜନ୍ମ ଏକ ଯୁଦ୍ଧ । ଏକ ଯନ୍ତ୍ରଣା ନିଜର ଆଲୋକକୁ ଆଣିବା ପାଇଁ ଶିଶୁ ଯୁଦ୍ଧ କରେ ମା' କରେ ମା' ସହିତ । ମା' ଯୁଦ୍ଧ କରେ ବଂଶ ରକ୍ଷାପାଇଁ, ନିଜର ଜୀବନ ରକ୍ଷା ପାଇଁ । ମା' ନିଜ ସହିତ ସଂଗ୍ରାମ କରେ ସନ୍ତାନର ମୁଖଶ୍ରୀ ଦେଖିବାର ଆନନ୍ଦ ଓ ଉତ୍ତେଜନାରେ ।" (ସ୍ୱପ୍ନାହିତା,ପୃ-୭୯)

Ethics of womanରେ ଅନୁରୂପ ମନ୍ତବ୍ୟ ଦେଇ A.R. Wadia କୁହନ୍ତି, Mother-hood is the most see that this profession is duly honoured. lest a specious economic independence deviate the best of women from the paths of their sex to the determent of their home and humanity."(Page-52) ନାରୀତ୍ୱବୋଧର ଏହି ମାତୃତ୍ୱ ଦିଗଟି ପ୍ରତି ଔପନ୍ୟାସିକା ଅତ୍ୟନ୍ତ ସଚେତନଶୀଳ । ଯେଉଁଥିପାଇଁ ସ୍ୱପ୍ନା, ଛନ୍ଦା ଓ ସରିତାଙ୍କ



Source: Author, Digitized by PPRACHIN, SOA

ସନ୍ତାନ ପ୍ରତି ଗଭୀର ମମତ୍ୱବୋଧ ପ୍ରକାଶ କରିଛନ୍ତି । ସାମଗ୍ରୀକ ଭାବେ ଆଲୋଚନା କଲେ ସୁଲୋଚନା ଦେବୀଙ୍କ ଉପନ୍ୟାସରେ ଏହି ନାରୀତ୍ୱବୋଧର ସ୍ପର୍ଶ ଅନୁଭବ୍ୟ । ନାରୀ ଲେଖକର ପୁରୁଷ ଲେଖକଠାରୁ ଯେଉଁ ସ୍ୱାତନ୍ତ୍ର୍ୟ ରହିବା କଥା, ତାହା ଏଠାରେ ପ୍ରତିଫଳିତ । ନିଜ ପାରିପାର୍ଶ୍ୱିକ ଜୀବନ ସଂକ୍ରାନ୍ତୀୟ ସମସ୍ତ ଅବବୋଧକୁ ପ୍ରକାଶ କରିବା ପାଇଁ ସେ ସଯତ୍ନଶୀଳ । ସମାନ୍ତରାଳ ଗତିରେ ପରମ୍ପରା ଅନୁଗାମୀ ଓ ନାରୀ ମାନସିକତାକୁ ଉପସ୍ଥାପନା କଲେ ମଧ୍ୟ ନାରୀର ସ୍ୱାଧୀକାର ସମ୍ପର୍କରେ ଅଧିକ ସଚେତନଶୀଳ । ପୁରୁଷ ନାରୀକୁ ଦୁର୍ବଳ କରି ରଖିବାର ପ୍ରଚେଷ୍ଟା ନେଇ ଯେଉଁ କେତୋଟି ଧାରଣାଧର୍ମୀ ଶବ୍ଦ ଯଥା – Father, Mother, Activity, Passivity, Intelligible, Sensitive ପ୍ରଭୃତି ସୃଷ୍ଟି କରିଛି, ତା ବିରୁଦ୍ଧରେ ଏକ ନୀରବ ବିପ୍ଳବ । ତେଣୁ ତାଙ୍କର କୌଣସି ନାୟିକା ପରମୁଖାପେକ୍ଷୀ ନୁହଁନ୍ତି,ବରଂ ପୁରୁଷୋଚିତ କାର୍ଯ୍ୟ ଏବଂ ଭାବନାରେ ଘଟିଛି ଅଭିସାରର ଉପଢୌକନ, ଯାହା ଅମନୁଷ୍ୟତାର ଏକ ବିରୋଧାଭାଷ ।

Encyclopaedio America ରେ କୁହାଯାଇଛି – Feminism belief in or advocacy of the influence of women in spheres conventionally reserved to men or more briefly the movement of equality of the sexes."

ଏହି ଆଦର୍ଶର ଆନୁଗତ୍ୟ ସ୍ୱୀକାର କର Feminist movement ତଥା Feminist writerଙ୍କ ଉତର ଦାୟାଦ ଭାବେ ସୁଲୋଚନାଦେବୀ ନିଜକୁ ପ୍ରତିଷ୍ଠା କରିବାରେ ପ୍ରଚେଷ୍ଟିତା । କେବଳ ନାରୀ ସ୍ୱାଧିକାରଗତ ମନୋଭାବ ତାଙ୍କଠାରେ ଦେଖାଦେଇନି, ବରଂ ଏହି ସମସ୍ୟା ସହ ନାରୀସୁଲଭତା (Femininity)ର ମାର୍ମିକ ପ୍ରତିଛବି ପ୍ରତିଫଳିତ । Patricca Stubbs କୁହନ୍ତି – "The feminist novelists arrived at fiction mainly because their interest in the women's emancipation movement concided with a need a earn money and writing was still one at the few possibilities open to a middle class woman who had to work" ସୁଲୋଚନା ଦେବୀଙ୍କ ସୃଷ୍ଟିଶୀଳ ମାନସିକତା ମଧ୍ୟରେ ଅନୁରୂପ ଉନ୍ମାଦନା ସୃଷ୍ଟି ହୋଇଛି, ଯେଉଁଥିପାଇଁ ତାଙ୍କ ନାୟିକାଙ୍କର ଏକ ଭିନ୍ନ ସମ୍ଭ୍ରାନ୍ତ ମାନସିକତା । ଅପର ପକ୍ଷରେ ସେହି ମାନସିକତାର କାଳ-କୋଠରୀରେ ଆବଦ୍ଧ ଓ ସେଥିରୁ ମୁକ୍ତ ହେବାର ଅଦମ୍ୟ ପ୍ରୟାସ ।

ନାରୀ ରଚିତ ଓଡ଼ିଆ ଉପନ୍ୟାସରେ ଏହି ନାରୀତ୍ୱବୋଧ ଦିଗଟି ସେପରି ପ୍ରକଟିତ ହୋଇନାହିଁ, ଯେପରି ପ୍ରକଟିତ ହୋଇଛି ପାଶ୍ଚାତ୍ୟ ଔପନ୍ୟାସିକଙ୍କ କ୍ଷେତ୍ରରେ । ଚଳିତ ଶତାବ୍ଦୀରେ ଏହି ଚେତନାଟି ଲେଖିକାଙ୍କର ସୃଷ୍ଟିକୁ ଏକ ସ୍ୱତନ୍ତ୍ର ରୂପ ଦେବାର ଅଭିଳାଷ,



Source: Author, Digitized by PPRACHIN, SOA

ସେମାନଙ୍କଠାରେ ଉଦିତ ହେବା ଉଚିତ । ଉପନ୍ୟାସ ଜଗତରେ ସୁଲୋଚନା ଦାସଙ୍କ ନୂତନ ପାଦଶବ୍ଦ ଯେପରି ଗୁଞ୍ଜରିତ, ସେଥିରେ ନାରୀତ୍ୱବୋଧର ଛାୟାଚିତ୍ର ସେପରି ଧୂମାୟିତ । ନାରୀତ୍ୱବୋଧକୁ ଅଧିକ ସମୃଦ୍ଧ ଓ ବଳିଷ୍ଠ କେବଳ ଯେ ତାଙ୍କର ବୈଶିଷ୍ଟ୍ୟ ନିରୂପଣରେ ସହାୟକ ହେବ, ତା ନୁହେଁ, ସମାଜରେ ଛିନ୍ନପକ୍ଷ ବିହଙ୍ଗ ସଦୃଶ ନାରୀ ବିସ୍ତୃତ ଆକାଶରେ ପକ୍ଷ ବିସ୍ତାରୀ ଆନନ୍ଦ ଉପଲବ୍ଧ କରିପାରିବ ।



Source: Author, Digitized by PPRACHIN, SOA

# ଲକ୍ଷ୍ମୀଧର କାବ୍ୟ ମାନସ

କାଡ଼୍‌ୱେଲ " Illusion and Reality" ପୁସ୍ତକରେ କୁହନ୍ତି, ଭବିଷ୍ୟତ ପାଇଁ କବିତା ଗଢ଼ିଦିଏ ସ୍ୱପ୍ନର ସହରଟିଏ ଏବଂ ପରେ ସେଇ ବାଞ୍ଛିତ ସହରଟି ପାଇଁ ପ୍ରସ୍ତୁତ କରେ ।[୧] ଲକ୍ଷ୍ମୀଧରଙ୍କ କାବ୍ୟ ମାନସ ଅନୁରୁପ ପଥର ପଥିକ ଥିଲା । ରୋମାଣ୍ଟିକ ଭାବବିହ୍ୱଳତା ମଧ୍ୟଦେଇ ସଂପୂର୍ଣ୍ଣ ବିପ୍ଳବ ପାଇଁ ତାଙ୍କ ଅନ୍ତଶ୍ଚେତନରେ ଥିବା ଆହ୍ୱାନ ଗୁଡ଼ିକ ଅହରହ ଉତ୍ତେଜିତ କରୁଥିଲେ । ତେଣୁ ସେ ସ୍ଥିର ନିଶ୍ଚିତ ହୋଇପାରିନାହାନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ଅଂଚଳରେ, ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ବିଭାଗରେ । ସ୍ଥାନ ପରିବର୍ତ୍ତନ ସହିତ ବିପ୍ଳବର ମଂଜିଟିଏ ପୋତି ଦେଇ ପତ୍ର ପୁଷ୍ପଭରା ବିଶାଳ ଦ୍ରୁମଟିକୁ ଦେଖିବା ପୂର୍ବରୁ ପୁନଶ୍ଚ ଅନ୍ୟ ସ୍ଥାନରେ ନିଜର ଅସ୍ତିତ୍ୱ ସଜାଗ କରି ନେଉଥିଲେ ଲକ୍ଷ୍ମୀଧର । ସନତ୍ ରାୟଙ୍କ ମତରେ, "ଯଥାର୍ଥରେ ସେ ଥିଲେ ଜଣେ ଭ୍ରାମ୍ୟମାଣ ପ୍ରତିଭା । ସେ ଯେଉଁଠିକି ଯାଇଛନ୍ତି, ସେଠାରେ ସୃଷ୍ଟିକରିଛନ୍ତି ଆହ୍ୱାନ ଓ ଆଲୋଡ଼ନା ।"[୨] ସେ କେନ୍ଦ୍ରରେ ବିଶ୍ୱାସୀ ନଥିଲେ, ପରିଧିରେ ଆବର୍ତ୍ତିତ ତାଙ୍କର ଆତ୍ମସତ୍ତା ଅନ୍ୱେଷଣ କରୁଥିଲା ନବୀନ ଚିନ୍ତା, ନୂତନ ଆଲୋକ । ଜୀବନର ବନ୍ଧୁର ପ୍ରଶସ୍ତ ପଥରେ ନିଜ ଆଦର୍ଶ ଅନୁରୂପ ଆଶ୍ରମଟିଏ ନିର୍ମାଣ କରି ସେଠାରେ କିଛି କ୍ଷଣ ସଂକେତଟିଏ ସୃଷ୍ଟିକରୁଥିଲେ । ତାଙ୍କର ଏହି ଭବଘୂରା ଜୀବନ ଓ ଜୀବନାଦର୍ଶକୁ ବିଚାର କଲେ ମାର୍କସଙ୍କ କଥାଟି ମନେ ପଡ଼ିଯାଏ । "Consciousness does not determine life. Life determines consciousness."[୩] ଲକ୍ଷ୍ମୀଧରଙ୍କ ଜନ୍ମ ଓ କର୍ମଜୀବନ ଥିଲା ଓଡ଼ିଆ ସାହିତ୍ୟ ତଥା ଭାରତ ଇତିହାସର ଏକ ଉର୍ବର ସମୟ । ଜାତୀୟତାବାଦୀ, ରୋମାଣ୍ଟିକ ଏବଂ ପରେ ପରେ ପ୍ରଗତିବାଦୀ କାବ୍ୟ-ଭୂମିରେ ବିଚରଣ କରିଛନ୍ତି ଲକ୍ଷ୍ମିଧର । ଦ୍ୱିତୀୟତଃ ଭାରତୀୟ ମୁକ୍ତି ସଂଗ୍ରାମ ଓ ସ୍ୱତନ୍ତ୍ର ଉତ୍କଳ ଗଠନ ଠାରୁ ସୀମା ଆନ୍ଦୋଳନ ପର୍ଯ୍ୟନ୍ତ ଯେଉଁ ସମୟଟିକୁ ସେ ତାଙ୍କର ସୃଜନ ଓ ସଂଗଠନ କ୍ରିୟାରେ ବିନିଯୋଗ କରିଛନ୍ତି ତାହା ବିସ୍ମୟକର । ପ୍ରାରମ୍ଭିକ ଅବସ୍ଥାରେ ତାଙ୍କର କାବ୍ୟ-ଭାବନା ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଅନୁଗତ ନଥିଲା । କିନ୍ତୁ 'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ' ପତ୍ରିକାର ସଂସ୍ପର୍ଶରେ ଆସି ନିଜର ସାହିତ୍ୟିକ ଆଭିମୁଖ୍ୟକୁ ସ୍ପଷ୍ଟ କରିଛନ୍ତି । ଇତିହାସର କ୍ରୋଡ ପତ୍ରରେ ଲେଖକ ନିଜର ସ୍ଥିତି ନିର୍ମାଣ କରିଥାଏ । ଏ ସଂପର୍କରେ ଟେରୀ ଇଗଲଟନ୍ କୁହନ୍ତି, "Every writer is individually placed in society, responding



Source: Author, Digitized by PPRACHIN, SOA

to a general history from his own particular stand-point, making sense of life in his own concrete terms.[୪] ତେଣୁ ଲକ୍ଷ୍ମୀଧରଙ୍କ କାବ୍ୟ କବିତାର ସ୍ୱରୂପ କେବଳ ବ୍ୟକ୍ତିଗତ ପ୍ରଚେଷ୍ଟା ନୁହେଁ, ପରନ୍ତୁ ତତ୍‌କାଳୀନ ସାମାଜିକ ସାଂସ୍କୃତିକ ତଥା ରାଜନୀତିକ ଇତିହାସ ଭିତରେ ରହିଛି ତାଙ୍କ ବିଚରଣଶୀଳ ମନସ୍କତା । ଲକ୍ଷ୍ମୀଧରଙ୍କ ପ୍ରତିଭାର ପ୍ରଥମ ପରିପ୍ରକାଶ ଘଟିଥିଲା ୧୯୩୪ ମସିହାରେ ନିଖିଳ ଉତ୍କଳ ଗଂଜାମ ସମ୍ମିଳନୀରେ ପଠିତ 'ବିରହିଣୀ' କବିତା ମାଧ୍ୟମରେ ।

"ଆଜିଠାରୁ ଚଉତ୍ରିଶ ବର୍ଷତଳେ
ତୁମ ସାଥେ ଦେଖାହୋଇଥିଲା ବିରହିଣୀ
ଅକଳା ପୁରୀର ଗୀତି ଉଦ୍ୟାନ ନିଭୃତେ
ଡାକିଥିଲି ଚିଠି ଲେଖି 'ନବୀନ'ର ସଂପାଦକ ହାତେ
ଦେଖୁ ଦେଖୁ ଚିହ୍ନିଥିଲ
କୋଣାର୍କର ବିଭୋଳତା ନେଇ
ଆଖି ଆଉ ଓଠେ ।
ସେ ଛାଇର କାଳିମାରେ ଯଦି ମୋର ଫାଳେ ମୁହଁ
ଏ ଭିତରେ କଳା ପଡ଼ିଥାଏ
ତୁମେ କି ପାରିବ ଚିହ୍ନି ଏବେ କି ହଠାତ୍ ?
ଏବଂ ମୁଁ ଏଥର ଯଦି ତୁମକୁ ଆଦରେ ଡାକେ
ପଟୁଆରେ ଆସ, ଭାଗନେବ,
ସେଦିନର ମୁଗ୍‌ଧ ବିରହିଣୀ,
ଆଜି ଏଇ ବିପ୍ଳବର ଅଗ୍ନି ଜାଳିଦେବ ?"

କବି ସମ୍ମିଳନୀରେ ଏହି କବିତାଟି ଶ୍ରେଷ୍ଠ ବିବେଚିତ ହୋଇ ସ୍ୱର୍ଣ୍ଣପଦକ ହାସଲ କରିଥିଲା । କେବଳ ଓଡିଶା ନୁହେଁ, ସୁଦୂର ଜାମସେଦପୁରରେ ସେ ହୋଇଥିଲା ଖୁବ୍ ଚର୍ଚ୍ଚିତ । ଏହି ବର୍ଷରେ ଦୀର୍ଘ ୩୫୦ ପୃଷ୍ଠାର ଉପନ୍ୟାସ 'ଉଦ୍‌ଭ୍ରାନ୍ତ' ଲେଖିଥିଲେ ଆନନ୍ଦ ଲହରୀ ସିରିଜ୍ ପାଇଁ ଏବଂ 'ମଜଦୁର' କବିତା ଲେଖି ଚାକିରିରୁ ବହିଷ୍କୃତ ହୋଇଥିଲା ସାହିତ୍ୟ ଜଗତରେ ତାଙ୍କ ପଦପାତର ଆଦ୍ୟ ସ୍ଫୁରଣ ଘଟିଥିଲା ରୋମାଣ୍ଟିକ ତଥା ବୈପ୍ଳବିକ ଭାବଧାରା ଦେଇ । ଜୀବନ ଧାରା ସହ କାବ୍ୟ ଚେତନାର ସଂଯୋଗ ପ୍ରତ୍ୟେକ କବିତା ରହିବା ପରି ଲକ୍ଷ୍ମୀଧରଙ୍କ ଠାରେ ତାହା ମଧ୍ୟ ପରିଲକ୍ଷିତ । 'ନବଭାରତ' ପତ୍ରିକାର ୩ୟ ବର୍ଷ ୧୦ମ ସଂଖ୍ୟାରେ 'ସାହିତ୍ୟ ଓ ପ୍ରଗତି' ଶୀର୍ଷକ ପ୍ରବନ୍ଧରେ ସେ କୁହନ୍ତି, "ସେଇ ପାଇଁ ପ୍ରଗତିବାଦୀ ଲେଖକ କେବଳ କହିବାକୁ ଚାହେଁ ଯେ ଜୀବନର ପ୍ରଗତି ଓ ବିକାଶ କଳ୍ପନା ଯେପରି କେତେବେଳେ ହେଲେ ସାହିତ୍ୟକୁ ନିରାଟ ଭାବବିଳାସରେ ବିଚ୍ଛିନ୍ନ



Source: Author, Digitized by PPRACHIN, SOA

ନକରେ । ସେମାନଙ୍କ ପ୍ରାଣରେ ବାସ୍ତବ ଆଡ଼କୁ ଯେଉଁ ସହଜ ପ୍ରଣବତା ଅଛି ସେଇ ପ୍ରଣବାତାହିଁ ତାଙ୍କୁ ଆଗକୁ ଯିବାକୁ ଆହ୍ୱାନ କରେ । ପ୍ରକୃତ ସାହିତ୍ୟିକ ସେଇ ଡ଼ାକ ପ୍ରତ୍ୟାଖ୍ୟାନ କରିପାରେ ନାହିଁ ।"(୪)

ଅଗ୍ରଗାମୀ ସାହିତ୍ୟ ସଂସଦ ଦ୍ୱାରା ପ୍ରକାଶିତ 'ସେ' ଏବଂ 'ବିରହିଣୀ' (୧୯୪୨) କବିତା ପୁସ୍ତକରେ ପ୍ରଣୟମୁଖର ଅର୍ଥାତ୍ ମରମୀ କବି ଅନ୍ତରର ଯନ୍ତ୍ରଣାମୟ କାବ୍ୟିକୁ ଉଚ୍ଛାସ ଅନ୍ୱେଷଣ କରିଛି ମାଟିର ନଗ୍ନ ବାସ୍ତବତାକୁ ।

୧୯୫୪ ସୀମା ଆନ୍ଦୋଳନ ବେଳେ ବନ୍ଦୀଜୀବନ ଅବକାଶରେ ତାଙ୍କର ବହୁ ଚର୍ଚ୍ଚିତ 'ଖୋଲାଝର୍କା' କାବ୍ୟ ଗ୍ରନ୍ଥର ପରିକଳ୍ପନା, ଯାହା ୧୯୬୯ ମସିହାରେ ପୁସ୍ତକ ଭାବେ ପ୍ରକାଶିତ ହୋଇଛି । ଝଙ୍କାର ୨୩ବର୍ଷ / ୮ମ ସଂଖ୍ୟା, ନଭେମ୍ବର ୧୯୭୧ରେ ରାଧାମୋହନ ଗଡ଼ନାୟକ ଏହି କାବ୍ୟ ପୁସ୍ତକ ଉପରେ ମନ୍ତବ୍ୟ ଦେଇ କୁହନ୍ତି, "ଖୋଲା ଝର୍କାରେ ପ୍ରବହମାନ ଛନ୍ଦର ଏକ ଅପ୍ରତିହତ ଧାରା ଭିତରେ ଭିତରେ କଲ୍ଲୋଳିତ ହେଉଛି ଅତୀତର ସ୍ମୃତି, ବର୍ତ୍ତମାନର ବିପ୍ଳବ ଓ ଭବିଷ୍ୟତର ସ୍ୱପ୍ନ - ଜୀବନ ଏକ ମିଶ୍ର ରାଗ, ଜୀବନର ଏକ ନିର୍ଭର ପ୍ରତିଶ୍ରୁତି ।"(୬) ଗୋପାଳ କୃଷ୍ଣ ଦାସ ତାଙ୍କର 'ଖୋଲା ଝର୍କାର ଦୃଶ୍ୟ ଓ ଦୃଶ୍ୟାନ୍ତର' ପ୍ରବନ୍ଧରେ 'ଖୋଲା ଝର୍କାକୁ' ଉଭୟ ସାମ୍ୟବାଦୀ ଓ ଭାବବାଦୀର ସମ୍ମିଶ୍ରିତ ଧାରା ବୋଲି ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଅମୂଳକ ।(୭) ଲକ୍ଷ୍ମୀଧର କେବେହେଲେ ଭାବାବାଦୀ ନଥିଲେ ପରନ୍ତୁ ସେ ଥିଲେ ମାଟି ଆଉ ମଣିଷର କବି, ଯାହା ତାଙ୍କର ଜୀବନ ଦର୍ଶନକରୁ ଜଣାପଡ଼େ । ସ୍ୱାଧୀନତା ପ୍ରାପ୍ତିପରେ ଗଣତନ୍ତ୍ର ନାମରେ ଶାସନଚକ୍ରକୁ କିପରି ମଣିଷ ଭିତରେ ପ୍ରଭେଦ ସୃଷ୍ଟିକରି ନାରକୀୟ କାଣ୍ଡମାନ ସୃଷ୍ଟିକରିଛି ଏବଂ ତାକୁ ବିରୋଧ କରିବାକୁ ଯାଇ କବି କିପରି ନିଜକୁ ଲାଲ ବିସ୍ଫୋରଣ ବୋଲି ମନେ କରୁଛି ତାର ରୂପଚିତ୍ର ଦେଖି ପାରିବା 'ଖୋଲାଝର୍କା' ସଂକଳନ ସ୍ଥିତି ଆକନ୍ତୁକ କବିତାରେ ।

"ଏ ସ୍ୱାଧୀନ ଦେଶ ମୋର ଆଜି ଯେଉଁମାନେ
ଦେଶ ଆଉ ଜାତି ନାମେ ଗଣତନ୍ତ୍ର ନାମେ
ବହୁପ୍ରାଣ ହତ୍ୟାକରି, ମନମୁଖୀ ଚଳାନ୍ତି ଶାସନ
ମୁଁ ତାର ପ୍ରତିବାଦ କରେ ମୁଁ ତାର ପ୍ରତିକାର ଲୋଡ଼େ ।
ମୁଁ ଏକ ଲାଲ ବିସ୍ଫୋରଣ ।"(୮)

ଏକାଧାରରେ ମାର୍କସ ବାଦରେ ବିଶ୍ୱାସୀ ଏବଂ ଓଡ଼ିଶୀ ଜାତୀୟତା ତାଙ୍କୁ ଯଥାର୍ଥରେ ଜଣେ ଦରଦୀ ମଣିଷର ସହଯାତ୍ରୀ ଏବଂ ଉତ୍କଳୀୟ ଭାଷା ସଂସ୍କୃତିର ଏକ ପ୍ରମୁଖ ନାନ୍ଦୀକାର ରୂପେ ଅଭିହିତ କରିଛି । ... ପୁସ୍ତକରେ ବର୍ଟାଣ୍ଡ ରସେଲ କୁହନ୍ତି, ରାଷ୍ଟ୍ରର ଅର୍ଥନୈତିକ ଶକ୍ତିହିଁ ଗୋଟିଏ ଶ୍ରେଣୀ ସୃଷ୍ଟିକରିଥାଏ ଅନ୍ୟ ଗୋଟିଏ ଶ୍ରେଣୀକୁ ଅବଦମିତ କରିବା



Source: Author, Digitized by PPRACHIN, SOA

ପାଇଁ ।[୯] ତେଣୁ ଶାସନ ଚକ୍ରର ବ୍ୟୁହ ମଧ୍ୟରେ ଛଟପଟ ଖଟିଖିଆ ମଣିଷ ପ୍ରତି ମୁହୂର୍ତ୍ତରେ ଏକ ପ୍ରକାର ସଂତ୍ରସ୍ତ ଜୀବନ ଅତିବାହିତ କରିବା ପାଇଁ ବାଧ୍ୟ ହୋଇଥାଏ । ସେଥିପାଇଁ ଭାରତୀୟ ଗଣତନ୍ତ୍ରରେ ତାଙ୍କର ଆସ୍ଥାନଥିଲା । ତାଙ୍କ ଦୃଷ୍ଟିରେ :

"ପ୍ରପିତାମହର ନାତି ଅଣନାତି ଭାବେ
ଡାଇନେଷ୍ଟି ଗଢ଼ି ଗଢ଼ି ଚଳାନ୍ତି ରାଜୁତି ।[୧୦]

ତେଣୁ ଏଇ ବ୍ୟବସ୍ଥାକୁ ଭାଂଗିବା ପାଇଁ ଆଉ ଏକ ବିପ୍ଳବର ଆବଶ୍ୟକତା ରହିଛି ବୋଲି ସେ ହୃଦୟଙ୍ଗମ କରି 'ବିପ୍ଳବ ସରିନାହିଁ' କବିତାରେ କୁହନ୍ତି :

ବିପ୍ଳବ ସରିନାହିଁ, ବିପ୍ଳବ ମରିନାହିଁ
ହୁଏତ ବିପ୍ଳବ ରୁଗଣ
ତାକୁ ପୁଣି ସଂଜୀବିତ କରିବାକୁ ହେବ
ଏଥରକ ଲକ୍ଷ୍ୟ ନୁହେଁ ନୁହେଁ ସେ ବ୍ରିଟିଶ
ତାଆଠୁ ନକଲି କରା
ଭଣ୍ଡ ଡେମୋକ୍ରେସୀ" ।[୧୧]

ଲକ୍ଷ୍ମୀଧର ଥିଲେ ମୁକ୍ତିକାମୀ ମଣିଷର ସହଯାତ୍ରୀ । ମାନବାତ୍ମାର ଶାନ୍ତି ଓ ମୁକ୍ତିପାଇଁ ବିପ୍ଳବ ପାଇଁ ହିଁ ଏକମାତ୍ର ଅବଲମ୍ୱନ ବୋଲି ସେ ଅନୁଭବି ଥିଲେ । ସେଇ ବୈପ୍ଳବିକ ଭାବନା ନେଇ ସେ ଲେଖିଛନ୍ତି, ପ୍ରଳୟ ପଥେ, ପ୍ରଭାତରଯାତ୍ରା, ବଂଚିତର ବ୍ୟଥା, ଅଗ୍ନିଯୁଗ ପ୍ରଭୃତି ରାଶି ରାଶି କବିତା, ଯେଉଁ କବିତା ଗୁଡିକ ତାଙ୍କ ଅସ୍ତିତ୍ୱ ସହ ଏକାନ୍ତ ଭାବେ ଜଡ଼ିତ ତାଙ୍କର କବିତାଗୁଡିକୁ ପାଠକଲେ ପାଠକର ହୃଦୟତନ୍ତ୍ରୀ ଶିରହିତ ହୋଇଉଠେ । ସେଥି ପାଇଁ ଅସ୍ତିତ୍ୱ-ଅନୁଭବର ନିଃସୃତ ତାଙ୍କ କବିତାର କାବ୍ୟ- ଭାଷା ଅନନ୍ୟ ହୋଇପଡିଛନ୍ତି ଖୋଲା ଝର୍କାର କବିତା ସଂକଳନ ସ୍ଥିତ 'ପଲାଶର ଶିଖା' ତାଙ୍କ ରୋମାଣ୍ଟିକ୍ ବାସ୍ତବତା ତଥା ମୁକ୍ତ ଛନ୍ଦ ଯୁକ୍ତ ଅନତିକ୍ରମଣୀୟ କାବ୍ୟ ଭାଷାର ଏକ ସାର୍ଥକ ନିଦର୍ଶନ ।

"ମୁଁ ତାକୁ ଭୁଲିଲେ କେବେ
ସିଏ ମୋତେ ଭୁଲେନା କଦାପି
ଆସି ଡାକି ନିଏ ନିବିଡ଼ ଫାଲଗୁନେ
ସବୁ କିଛି ଭଦ୍ରତାରେ ମୁଁ କି ଫାଙ୍କି ଦିଏ
ଉଡିଯାଏ ନୀଳିମାର ଶୂନ୍ୟେ ।
ଭୁଲିଯାଏ ଟଙ୍କାର ଭାବନା,
ଟିକିଏ ଭୁଲି ଲାଜ
ଚେଷ୍ଟାକରି ଦେଖେ ବିବର୍ଣ୍ଣ କଳ୍ପନା



Source: Author, Digitized by PPRACHIN, SOA

ହଠାତ୍ ଜାଗ୍ରତ, ବସ୍ତି, ଜନ ପଦ,
ପାହାଡ଼, ପ୍ରାନ୍ତର, ନଦୀ ଓ ସହର ସମୁଦ୍ର
ମୁଲାୟମ ରୁଦ୍ର ।"(୧୨)

ଦୁଇଟି ଶିଳ୍ପ ସହରରେ ତାଙ୍କର ସହବାସ୍ଥାନ ହେତୁ ଶିଳ୍ପ ସଂସ୍କୃତିର ପ୍ରଚ୍ଛନ୍ନ ପ୍ରଭାତ ତାଙ୍କ ଅସ୍ତିତ୍ୱକୁ ଅନୁରୂପ ପଥରେ ପଥିକ କରିଛି । ସେଇ ଅସ୍ତିତ୍ୱରୁ ନିଃସୃତ କାବ୍ୟ ଭାବ କେବେହେଲେ ଗୂଢ଼ାର୍ଥ କିମ୍ବା ତତ୍ତ୍ୱ ଦର୍ଶନରେ ଭାରାକ୍ରାନ୍ତ ହୋଇନାହିଁ, ପରନ୍ତୁ ସରଳ ସାବଲୀଳ ଭାଷାରେ ମେହନତୀ ମଣିଷର ମର୍ମବାଣୀ ଗୁଂଜିରିତ ।" କବି ଶ୍ରୀ ନାୟକ ତାଙ୍କ ପ୍ରଗତିବାଦୀ କବିତାଗୁଡିକରେ ବିପ୍ଳବର ସ୍ୱର ଝଙ୍କାର ତୋଳିବା ସଙ୍ଗେ ସଙ୍ଗେ ସ୍ୱପ୍ନ କଳ୍ପନାର ମିନାର ବି ତୋଳିଛନ୍ତି । ସେଥିପାଇଁ ଧ୍ୱଂସ ଓ ସୃଜନ ହୋଇଛି ତାଙ୍କର କାବ୍ୟାଦର୍ଶ ।(୧୩)

'ବିଦେଶରେ ଶହେ ଦିନ' ତାଙ୍କର ଏକମାତ୍ର ଭ୍ରମଣମୂଳକ ଗଦ୍ୟ, ଯେଉଁଥିରେ ପାଳନ ସଭ୍ୟତାର ଶିକ୍ଷା ସଂସ୍କୃତି ସହ ଉତ୍କଳୀୟ ଶିକ୍ଷା ଓ ସଂସ୍କୃତିର ଏକ ତୁଳନାତ୍ମକ ଚିତ୍ର ଦେଇଛନ୍ତି । ପାଶ୍ଚାତ୍ୟରେ ଶିକ୍ଷା ସହିତ ସଂସ୍କୃତିର ମିଶ୍ରଣ ଫଳରେ ଆଜି ଯେପରି ତାହା ଅନୁକରଣ ଉତ୍କଳରେ ଶିକ୍ଷା ଓ ସଂସ୍କୃତିର ସଂଯୋଗୀକୃତ ଭାବନା ପରିଦୃଶ୍ୟ ହୋଇଥିଲେ ବିଶ୍ୱର ସର୍ବଶ୍ରେଷ୍ଠ ପ୍ରଜ୍ଞାପୀଠ ହୋଇଥାନ୍ତା ତାହା ଅନସ୍ୱୀକାର୍ଯ୍ୟ । ଅକ୍ସଫୋର୍ଡ ସମଗ୍ର ବିଶ୍ୱରେ ଶିକ୍ଷାର ଏକ ପୁଣ୍ୟତୀର୍ଥ ଭାବେ ବନ୍ଦନୀୟ । କୋଣାର୍କ ହେଉଛି ଉତ୍କଳୀୟ ଚାରୁକଳାର ଚରମ ନିଦର୍ଶନ । ଲକ୍ଷ୍ମୀଧରଙ୍କ ଭାଷାରେ ...

"ଯଦି କୋଣାର୍କ ମନ୍ଦିର ଚାରିପାଖେ ସେତେବେଳେ ସ୍ଥାପତ୍ୟ କଳାର ଉତ୍କର୍ଷ ପାଇଁ ଆମ ରାଜାମାନେ କିଛି ଆନୁଷ୍ଠାନିକ ବ୍ୟବସ୍ଥା କରିପାରିଥାନ୍ତେ, ପ୍ରସ୍ତର ଯୁଗର କଳା ନୈପୁଣ୍ୟର ବିକାଶ ପାଇଁ ଶିଳ୍ପ ସାଧନାର କର୍ମ ପୀଠ ଗଢ଼ି ପାରିଥାନ୍ତେ, ତାହାହେଲେ ଯେଉଁ ଉତ୍କଳର ସଭ୍ୟତା ଆଉ ସଂସ୍କୃତି ଇଂଲଣ୍ଡଠାରୁ ଆହୁରି ପ୍ରାଚୀନ, ଆହୁରି ମୌଳିକ, ଐତିହ୍ୟ ଆଉ ପରଂପରା ଦୃଷ୍ଟିରୁ ସେ ଯେ ପୃଥିବୀର ପ୍ରଗତି କ୍ଷେତ୍ରରେ ମାନବ ସଭ୍ୟତାକୁ ଏକ ଅଲୌକିକ ଦିଗନ୍ତ ଆଡ଼କୁ ନେଇଯାଇ ପାରିଥାନ୍ତା, ଏ କଥା କିଏ ଅସ୍ୱୀକାର କରିବ ?"(୧୪)

ଠିକ୍ ସେଇପରି ସେକେସ୍‌ପିଅରଙ୍କ ସହିତ ଉପେନ୍ଦ୍ର ଭଂଜଙ୍କ କାବ୍ୟ ପ୍ରତିଭାର ପ୍ରଚାର ପ୍ରସାରଣ ଦିଗରୁ ତୁଳନା କରି ହତୋତ୍ସାହ ହୋଇପଡିଛନ୍ତି ଲକ୍ଷ୍ମୀଧର । ଭଂଜଙ୍କୁ ଉପଯୁକ୍ତ ମାନ୍ୟତା ଦେବାରେ ଓଡ଼ିଆ ଜାତି ଯେତିକି ବୀତସ୍ପୃହ, ତତ୍କାଳୀନ ରାଜନ୍ୟବର୍ଗ ମଧ୍ୟ ତତୋଧିକ ପରିମାଣରେ ଥିଲେ ଉଦାସୀନ । କୋଣାର୍କ ମନ୍ଦିର ନିର୍ମାଣରେ ଥିଲା ରାଜାଙ୍କ ବ୍ୟକ୍ତିଗତ ଆସ୍ପୃହା । ଇତିହାସ ପୃଷ୍ଠାରେ ନିଜକୁ ସଂସ୍କୃତି ସଂପନ୍ନ ବୋଲି ପ୍ରଚାରିତ କରିବାରେ ଥିଲା ଅହଂଯୁକ୍ତ ଉଦ୍ଦୀପନା । ଲକ୍ଷ୍ମୀଧରଙ୍କ ଦୃଷ୍ଟିରେ, ଦୂରଦୃଷ୍ଟି ହୀନ ବିଚାର



Source: Author, Digitized by PPRACHIN, SOA

ରାଜାଙ୍କୁ କରିଛି ଏକ ଆତ୍ମରତି ସଂପନ୍ନ ମଣିଷ । ଏବଂ ସେଇ ଭାବନାରେ ମଗ୍ନ ରହିବାକୁ ଆହ୍ୱାନ କରିଛି ରାଜ୍ୟର ଜନଗଣଙ୍କୁ,ଯେଉଁମାନେ କେବଳ ସେଇ କଳାନେଇ ଆତ୍ମଗର୍ବୀ ତଥା ତା'ର ପ୍ରଚାର ପ୍ରସାର ପାଇଁ ଉଦ୍ୟମୀ ହେବେ ଏବଂ ଶାସକ ବର୍ଗର ସ୍ୱାର୍ଥ ପାଇଁ ଆତ୍ମବଳି ଦେବେ । ଏହି ପ୍ରସଙ୍ଗଉପରେ ଏଣ୍ଟୋନିଓ ଗ୍ରାମ୍‌ଚି ତାଙ୍କର 'Prison Note Books' ପୁସ୍ତକରେ କୁହନ୍ତି, Every State is ethical in as much as one of its most important function is to raise the great mass o fthe population level, a level (or type) which corresponds to the needs of the productive forces to the interets of the rulling classes.(୧୫)

ବିଦେଶ ଭ୍ରମଣ ସମୟରେ ରାଜକୈନ୍ଦ୍ରିକ ଉତ୍କଳୀୟ ସଂସ୍କୃତିର ସ୍ୱରୂପଟିକୁ ସେ ଖୁବ୍ ଗଭୀର ଭାବେ ଏକ ଏକ ତୁଳନାତ୍ମକ ଦୃଷ୍ଟିନେଇ ଅତିନିକଟରୁ ଅନୁଧ୍ୟାନ କରିଥିଲେ ଏବଂ ଏହା ଅନ୍ତରାଳରେ ଥିବା ସତ୍ୟଟିକୁ ଉଦ୍‌ଘାଟନ କରିଥିବାରୁ ଲକ୍ଷ୍ମୀଧରଙ୍କ ମନରେ କ୍ଷୋଭ ସୃଷ୍ଟି ହେବା ସ୍ୱାଭାବିକ ।

ସଂଗୀତ ପ୍ରତି ଲକ୍ଷ୍ମୀଧରଙ୍କ ଶ୍ରଦ୍ଧା ଥିଲା ଖୁବ୍ ଗଭୀର । ସ୍ୱପ୍ନ ଓ ସଂଗୀତ ମଧ୍ୟରେ ନିମଜ୍ଜିତ ତାଙ୍କର ଆତ୍ମ ସତ୍ତା ବିପ୍ଳବୀମୁଖୀ ହେବା ସ୍ୱାଭାବିକ । ସାଙ୍ଗୀତିକ ଅନୁରାଗ ମଧ୍ୟରେ ବିପ୍ଳବର ବୈତାଳିକ ଗାନ କରିବା ତାଙ୍କ ଅସ୍ତିତ୍ୱର ଏକ ଭିନ୍ନ ପରିଚୟ ସୃଷ୍ଟି କରିଛି । ୧୯୮୯ ମସିହାରେ ପ୍ରକାଶ ପାଇଲା ତାଙ୍କର 'ଗଜଲ ଝର୍ଣ୍ଣା' । ତାଙ୍କର ଏହି ଅନୁବାଦ ଗଜଲ ଥିଲା ଓଡ଼ିଆ ଭାଷାର ପ୍ରଥମ ଗଜଲ ପୁସ୍ତକ, ଯାହା ସେଇ ବର୍ଷ ଏଚ୍.ଏମ୍.ଭି କ୍ୟାସେଟ କମ୍ପାନୀ ତରଫରୁ ପ୍ରସ୍ତୁତ ହୋଇଥିଲା ଗଜଲ କ୍ୟାସେଟ୍ ରୂପେ । ସଂଗୀତ ରସିକ ଲକ୍ଷ୍ମୀଧର ଯେପରି ଭାବେ ଶିଳ୍ପ ଓ ଶ୍ରମିକର ମଧୁର ତିକ୍ତ ସଂପର୍କକୁ ବୁଝିଥିଲେ, ସେଇପାଇଁ ସହରତଳି ଅଂଚଳରେ ରହି ଅତି ଆବେଗରେ ନବ ସୂର୍ଯ୍ୟକୁ ପ୍ରତୀକ୍ଷା କରିଥିବା ସାଧାରଣ ମଣିଷର ଜୀବନ ଗାଥାକୁ ଉପଲବ୍ଧି କରିଥିଲେ । ତାଙ୍କର ଭ୍ରାମ୍ୟମାଣ ଜୀବନ ଓ ଜୀବନାଭୂତି ଥିଲା ଯଥାର୍ଥରେ ଖୋଲାଝର୍କା ପରି ଏବଂ ଯେଉଁଥିରୁ ଆମେ ବିନା ଦ୍ୱିଧାରେ ଦେଖିପାରୁ ଏକ ବିପ୍ଳବୀର ରୂପଚିତ୍ର । ବିପ୍ଳବ ଭିତରେ ବଂଚିରହି ବିପ୍ଳବର ବିଦଗ୍ଧ ସ୍ୱପ୍ନରେ ବିଭୋର ହୋଇ ଉଠିଛନ୍ତି କବି । ତାଙ୍କର ଏହି ବୈପ୍ଳବିକ ମାନସିକତାର ଉଚ୍ଚତମ ଆବେଗ ସଂଚରିତ କରେ 'ଖୋଲା ଝର୍କା'ର ନିମ୍ନ ପଙ୍କ୍ତିଟି :

"ଏ ବିପ୍ଳବ କେହି ଯଦି ବ୍ୟର୍ଥକରେ
ମତେ ହତ୍ୟାକରେ
ଆଉ ମାରି ପୋତିଦିଏ
ମୁଁ ପୁଣି ଉଠିବି ବନ୍ଧୁ ମାଟିର ସମାଧି ତଳୁ
ସଙ୍ଗେ ଧରି ଶତାବ୍ଦୀର ଲକ୍ଷ କୋଟି ଭୋକିଲା ମଣିଷ ।"



Source: Author, Digitized by PPRACHIN, SOA

ମାର୍କସ୍, ଗୋପବନ୍ଧୁ ଏବଂ ସୁଭାଷ ଚନ୍ଦ୍ର ବୋଷ ଥିଲେ ତାଙ୍କର ଆଦର୍ଶ । ଗୋପବନ୍ଧୁ ପରି ସେ ଯେପରି ଦରଦୀ ମଣିଷଟିଏ ଥିଲେ, ସେଇପରି ସୁଭାଷଙ୍କ ପରି ତାଙ୍କର ଜ୍ୱାଳାମୁଖୀ ଜାତୀୟତାବୋଧ ଏବଂ ମାର୍କସଙ୍କ ପରି ତାଙ୍କର ଅଭିବ୍ୟକ୍ତି ଥିଲା ଏକ ଶୋଷଣମୁକ୍ତ ଶ୍ରେଣୀହୀନ ସମାଜ ଗଠନରେ । ଏହି ତ୍ରୟୀ ମହାନ୍ ବ୍ୟକ୍ତିଙ୍କ ଭିନ୍ନ ଭିନ୍ନ ମାନସିକ ଲକ୍ଷ୍ମୀଧରଙ୍କ କାବ୍ୟ କବିତାରେ ପରିଲକ୍ଷିତ । ୬ଟି କବିତା ସଂକଳନ, ୪ଟି ଗଳ୍ପ ସଂକଳରେ ୩ଟି ନାଟକ, ୨୬ଟି ଉପନ୍ୟାସ ତଥା ସାଂବାଦିକତା ଓ ପତ୍ରପତ୍ରିକାର ସଂପାଦନ ଲକ୍ଷ୍ୟକଲେ ସେଇ ବିରଳ ବ୍ୟକ୍ତିତ୍ୱର ଅନୁସୃଜନ ପ୍ରକ୍ରିୟା ଯେ କେତେ ପରମାଣ ଉର୍ଦ୍ଧ୍ୱଗାମୀ, ତାହା ସହଜରେ ବ୍ୟକ୍ତିତ୍ୱର ଅନୁସୃଜନ ପ୍ରକ୍ରିୟା ଯେ କେତେ ପରିମାଣ ଉର୍ଦ୍ଧ୍ୱଗାମୀ, ତାହା ସହଜରେ ଅନୁଭବ କରାଯାଇପାରେ । ସୁଦୀର୍ଘ କର୍ମମୟ ଜୀବନ ଭ୍ରାମ୍ୟମାଣ ମନସ୍କତାର ଏହି କବି-ପ୍ରତିଭା ଓଡ଼ିଆ ସମାଲୋଚନା ସାହିତ୍ୟରେ ଅବହେଳି ଲକ୍ଷ୍ମୀଧରଙ୍କ ଭ୍ରମଣ ସାହିତ୍ୟ 'ବିଦେଶରେ ଶହେ ଦିନ' ଏବଂ ପ୍ରବନ୍ଧ 'ସିଂହଭୂମିରେ ଗୋପବନ୍ଧୁ'କୁ ଅନୁଧ୍ୟାନ କଲେ ତାଙ୍କ ଗଦ୍ୟ ରଚନାରେ ଥିବା ସାବଲୀଳ ତଥା ଅନ୍ତଦୃଶ୍ୟ ପାଠକ ଚିତ୍ତକୁ ମୁଗ୍ଧକରେ । ପକ୍ଷୀପରି ନୀଳ ଗଗନରେ ଉଡ଼ି ଉଡ଼ି ପ୍ରତୁଳ ଅଭିଜ୍ଞତା ହାସଲ କରିବା ଓ ତାଙ୍କୁ ପୁଞ୍ଜିକରି ସାହିତ୍ୟରେ ପରିସ୍ଫୁଟନ କରିବା କେବଳ ଲକ୍ଷ୍ମୀଧରଙ୍କ ପକ୍ଷରେ ସମ୍ଭବ ହୋଇଛି । 'ଚତୁରଙ୍ଗ' ପତ୍ରିକାର ପ୍ରଥମ ବର୍ଷ (୧୯୪୬)ରେ ପ୍ରକାଶିତ 'ପେଷଣ ଚକ୍ର ତଳେ' କବିତା ହେଉଛି ତାଙ୍କ ଦିଗ ଦିଗନ୍ତକୁ ଅଭିଯାତ୍ରା ସଂପର୍କିତ ଅଭିବ୍ୟକ୍ତି ମାନବିକ ମୂଲ୍ୟବୋଧକୁ ଗୁରୁତ୍ୱ ଦେଇ କବି କୁହନ୍ତି ।

"ଉଡିଯିବ ଦଶ ଦିଗେ ରାଜହଂସ ସମ
ପକ୍ଷପୁଟେ ଘେନି ନିମନ୍ତ୍ରଣ
ମାନବିକତାର ଯେତେ ରୁଦ୍ଧ ଦ୍ୱାର
ସବୁ ମୁଁ ଦେବଲ ଖୋଲି ବିଶ୍ୱାସର ଝଡ଼େ
ଆସ ମୋର ପଥେ ଦର୍ପଭରେ ।"

ପାଦଟୀକା :

୧. Marxism and Literary Criticism, Terry Eagleton, Routlede, London, Page -51, 2002

୨. 'ଓଡ଼ିଆ, ଭାଷା ସାହିତ୍ୟର ସମୂହ ଉପରେ ଶିଳ୍ପାୟନର ପ୍ରଭାବ' ପୁସ୍ତକ ସନ୍ନିବେଶିତ ରାଉରକେଲାରେ ଓଡ଼ିଆ ସାହିତ୍ୟର ପଚାଶ ବର୍ଷ (୧୯୫୫-୨୦୦୫), ସନ୍ଦ ରାୟ, ସଂପାଦନା, S.S. Mohanty & Debendra Kumar Dash, ଇସ୍ପାତ କଲେଜ, UGC Seminar Proceedings, ପୃ-୪୫୪)



Source: Author, Digitized by PPRACHIN, SOA

୩. Marxism and Literary Criticism, Terry Eagceton, Routledge, London, P-4,2002.
୪. Ibd, P - 7
୫.ପ୍ରଗତିବାଦୀ କାବ୍ୟଚେତନା, ଡ. ବିଜୟ କୁମାର ଶତପଥୀ, ଓଡ଼ିଶା ବୁକଷ୍ଟୋର, କଟକ, ପୃ୧୮୩,୧୯୯୨ ।
୬. ସବୁଜରୁ ସାମ୍ପ୍ରତିକ, ଡ. ନିତ୍ୟାନନ୍ଦ ଶତପଥୀ, ଗ୍ରନ୍ଥମନ୍ଦିର କଟକ, ପୃ-୪୮୫ ୧୯୮୫ ।
୭. ଲକ୍ଷ୍ମୀଧର ନାୟକ : ସାହିତ୍ୟ ଓ ସଂଗ୍ରାମ, ସଂ.ଭୂପେନ୍ ମହାପାତ୍ର, କଥାଘର, ରାଉରକେଲା, ପୃ-୫୨, ୨୦୦୮ ।
୮. ପ୍ରଗତିବାଦୀ କାବ୍ୟ ଚେତନା, ଡ.ବିଜୟ କୁମାର ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, କଟକ, ୧୯୯୨, ପୃ-୧୮୬ ।
୯. Roads to freedom, Bertrand Russell, Roultledge, London, 2005, P-96
୧୦. ଲକ୍ଷ୍ମୀଧର ଚୟନିକା, ବିପ୍ଳବ ମରିନାହିଁ, ସଂ: କମଳାକାନ୍ତ ମହାନ୍ତି, ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ୨୦୦୮, ପୃ-୩୫ ।
୧୧. ତତ୍ରୈବ, ପୃ-୩୫
୧୨. ତତ୍ରୈବ, ପୃ-୨୫
୧୩. ପ୍ରଗତି କାବ୍ୟ ଚେତନା, ଡ. ବିଜୟ କୁମାର ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, କଟକ, ୧୯୯୨, ପୃ-୧୮ ।
୧୪. ଲକ୍ଷ୍ମୀଧର ଚୟନିକା,ବିଦେଶରେ ଶହେ ଦିନ, ସଂ: କମଳାକାନ୍ତ ମହାନ୍ତି, ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ,୨୦୦୮, ପୃ-୨୦୬ ।
୫. Prison Note Books, Antonio Gramsci, Orient Longman, Chennai, 2007, P-258.



Source: Author, Digitized by PPRACHIN, SOA

# ଇଂରାଜୀରେ ପ୍ରଥମ ଓଡ଼ିଆ ନାଟକ : ବାବାଜୀ

ପ୍ରଥମ ଓଡ଼ିଆ ନାଟକ 'ବାବାଜୀ' ପ୍ରକାଶିତ ହେଲା ପରେ 'ସମ୍ବାଦ ବାହିକା'ର ୧୦/୮ ସଂଖ୍ୟା ତା ୦୧/୧୨/୧୮୭୭ ମସିହାର ଏହିପରି ସମ୍ବାଦଟିଏ ପରିବେଷିତ ହୋଇଥିଲା – "ଓଡ଼ିଶାରେ ଓଡ଼ିଆ ଭାଷାରେ ନାଟକ ନାମ ଶୁଣିବାକୁ ଆଶ୍ଚର୍ଯ୍ୟ । ଏଥିପୂର୍ବେ ଗୋପୀନାଥ ବଲ୍ଲଭ ନାମକ ଖଣ୍ଡିଏ ନାଟକ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଥିଲା । ଆମ୍ଭେମାନେ ପ୍ରଥମେ ତାହା ପାଇଁ ଅତ୍ୟନ୍ତ ଆନନ୍ଦିତ ହେଲୁଁ, ତାହାର ସ୍ୱାଦୁ ପରୀକ୍ଷା କରିବା ନିମନ୍ତେ ଇଚ୍ଛା ବଳିଲା, ମାତ୍ର ତାହା "ନାଟକ, ନା ମିଷ୍ଟ କିଛି ଜଣାଗଲା ନାହିଁ । ଆମ୍ଭମାନଙ୍କ ମାତୃଭାଷାରେ ନାଟକ ଲେଖିବାର ସମୟ ଉପସ୍ଥିତ ହୋଇଅଛି କି ନା ତାହା ଆମ୍ଭେମାନେ କହି ନ ପାରୁଁ । ତଥାପି ଯେବେ ଅଞ୍ଚଳର ଗାର୍ହସ୍ଥ ବାବାଜୀ ନାଟକର ପ୍ରଣେତା ବାବୁ ଜଗନ୍ମୋହନ ଲାଲ ସାହସ ଉପରେ ନିର୍ଭର କରି ଖଣ୍ଡିଏ ନାଟକ ପ୍ରଣୟନ କରିଅଛନ୍ତି ଅତ୍ୟନ୍ତ ପ୍ରଶଂସାର ବିଷୟ । ଜଗନ୍ମୋହନ ବାବୁ ପ୍ରଥମେ ଆମ୍ଭମାନଙ୍କୁ ଆଶାରୁ ଅଧିକ ଏହି ନାଟକ ଖଣ୍ଡିଏ ପ୍ରଦାନ କଲେ । ଏଥି ନିମନ୍ତେ ଆମ୍ଭେମାନେ ତାହାଙ୍କୁ ଧନ୍ୟବାଦ ଦେଉଅଛୁଁ ।"

'ବାବାଜୀ' ପୂର୍ବରୁ ଓଡ଼ିଶାରେ ନାଟ୍ୟ ରଚନା ଓ ମଂଚ ପ୍ରଦର୍ଶନର ଏକ ବଳିଷ୍ଠ ପରଂପରା ଥିଲା । କିନ୍ତୁ ସେସବୁ ସଂସ୍କୃତ ତଥା ଲୋକ ନାଟକ ପର୍ଯ୍ୟାୟ ଭୁକ୍ତ । ପରନ୍ତୁ ଯେଉଁ ଦୃଷ୍ଟିରୁ ସମ୍ବାଦ ବାହିକା ବାବାଜୀକୁ ପ୍ରଥମ ନାଟକର ମାନ୍ୟତା ଦେଇଛି ତାର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରାସଂଗିକତା ରହିଛି । ପାଶ୍ଚାତ୍ୟ ଆଧୁନିକ ନାଟ୍ୟ ଶିଳ୍ପ ଯେଉଁ ଭିତିଭୂମି ଉପରେ ଦଣ୍ଡାୟମାନ ସେଇ ଶୈଳୀର ପ୍ରୟୋଗ ବିଧି ଓ ଭାବର ପ୍ରଥମ ଯଥାର୍ଥ ପରିବେଷଣ ଘଟିଛି ବାବାଜୀ ନାଟକରେ । ଏଥିରେ ପ୍ରଦର୍ଶିତ ହୋଇଛି ସମସାମୟିକ ଜୀବନ ବଞ୍ଚିବା ଶୈଳୀର ଅନୁରୂପ ଅଭିନୟ ଏକ ଅଭିନବ ଉପାୟରେ । ଭାରତ ଭଳି ବହୁଧର୍ମ, ଭାଷା ଓ ଜାତି ଏବଂ ସେମାନଙ୍କ ଭିତରେ ଯୁଗାଦି ଧରି ବସା ବାନ୍ଧି ରହିଥିବା ଅନ୍ଧବିଶ୍ୱାସ, କୁସଂସ୍କାରର ଏକ ପୁଙ୍ଖାନୁପୁଙ୍ଖ ବିଚାର ବିମର୍ଶ ଘଟିଛି ଏହି ନାଟକରେ । ଷୋହଳଟି ଚରିତ୍ରକୁ ନେଇ ନାଟକଟିକୁ ସୃଷ୍ଟି କରାଯାଇଛି, ଯେଉଁଥିରେ ପ୍ରତ୍ୟେକଟି ଚରିତ୍ର ନିଜ ନିଜ ସ୍ଥିତି ଓ ଆଭିମୁଖ୍ୟକୁ ନେଇ ରଂଗ ଭୂମିରେ ଆତଯାତ । ପାରମ୍ପରିକ ନାଟ୍ୟଶୈଳୀରୁ ଦୂରତ୍ୱ ରକ୍ଷା କରି ନାଟକ କ୍ଷେତ୍ରରେ ଏକ ଅଭିନବ ପଦପାତ କରିଥିବା ବାବାଜୀ ହୁଏତ ତତ୍କାଳୀନ



Source: Author, Digitized by PPRACHIN, SOA

ସମୟରେ ଯଥାଯଥ ନାଟ୍ୟ-ମାନ୍ୟତା ପାଇପାରିନାହିଁ । ଏହାର ତିନିବର୍ଷ ପରେ ରାମଶଂକଙ୍କର ରାୟଙ୍କ ଦ୍ୱାରା ବିରଚିତ 'କାଞ୍ଚିକାବେରୀ' ନାଟକକୁ (୧୮୮୦) ପ୍ରଥମ ଓଡ଼ିଆ ନାଟକ ଭାବେ ଦାବି କରି ଗିରିଜା ଶଙ୍କର ରାୟ ତାଙ୍କର 'ଓଡ଼ିଆ ନାଟ୍ୟକଳା' ପୁସ୍ତକରେ କୁହନ୍ତି, "ଓଡ଼ିଆରେ ପ୍ରଥମ ନାଟକ ରଚିତ ହେଲା ୧୮୮୦ ମସିହାରେ । ତାହା ପୂର୍ବରୁ ଯେଉଁ 'ବାବାଜୀ' ନାଟକ ରଚିତ ହୋଇଥିଲା, ତାହା ବାସ୍ତବରେ ନାଟକ ନୁହେଁ ।" (ପୃ-୪୧) ରାମଶଙ୍କରଙ୍କୁ ପ୍ରଥମ ନାଟ୍ୟକାର ଭାବେ ପରିଚିତ କରାଇବା ପାଇଁ ବିହୁ ତର୍କବିତର୍କର ଝଡ଼ ସୃଷ୍ଟି ହୋଇଯାଇଛି । ଶାସ୍ତ୍ରାୟଣ ପ୍ରକ୍ରିୟାରେ (Cannonisation) ରାମଶଙ୍କରଙ୍କ 'କାଞ୍ଚିକାବେରୀ' ନାଟକ ପ୍ରଥମ ଓଡ଼ିଆ ନାଟକ ଭାବେ ସ୍ୱୀକୃତି ଓ ମାନ୍ୟତା ପାଇଛି । ଅପରପକ୍ଷରେ 'ବାବାଜୀ'ର ସ୍ଥିତି ଓ ତା'ର ଐତିହାସିକ ପଦଧ୍ୱନି ନିରବି ଯାଇଛି । କିନ୍ତୁ ସଂପ୍ରତି ବାବାଜୀର ନବ ମୂଲ୍ୟାୟନ ଓ ତାର ଐତିହାସିକ ସ୍ଥିତି ତଥା ଗୁରୁତ୍ୱ ନେଇ ଯେପରି ଗବେଷକମାନେ ସଚେତନ ହେଇ ଉଠିଛନ୍ତି, ସେଇପରି 'ବାବାଜୀ' ନାଟକ ରଚନାର ଅନ୍ତରାଳରେ ଥିବା ଜଗନ୍ମୋହନ ଲାଲଙ୍କ (୧୮୩୮-୧୯୧୩) ଜୀବନ ଦର୍ଶନ ଅନ୍ୱେଷଣ ଏକ ସାଧୁକାର୍ଯ୍ୟ । ଏହାର ନିଦର୍ଶନ ସ୍ୱରୂପ ଓଡ଼ିଶା ସାହିତ୍ୟ ଏକାଡ଼େମୀ କର୍ତ୍ତୃକ ଜଗନ୍ମୋହନ ଲାଲ ସଂପର୍କିତ ପୁସ୍ତକ (୨୦୦୪), ସ୍ମରଣ କୁମାର ନାୟକଙ୍କ ଦ୍ୱାରା ସଂକଳିତ 'ଆଦିନାଟ୍ୟକାର ଜଗନ୍ମୋହନ ଲାଲ ଗ୍ରନ୍ଥାବଳୀ' (୨୦୦୬) ଏବଂ ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ର ଓ ପଲ ସେଣ୍ଟପିଅରଙ୍କ ମିଳିତ ଉଦ୍ୟମରେ ୨୦୦୩ ମସିହାରେ ପ୍ରକାଶ ପାଇଛି ବାବାଜୀ ନାଟକର ଇଂରାଜୀ ଅନୁବାଦ The Holy man : A play ।

ଚାରି ଅଙ୍କ ବିଶିଷ୍ଟ ନାଟକର ପ୍ରତିଟି ଅଙ୍କରେ ଗୋଟିଏ ଗୋଟିଏ ଚିନ୍ତା ଭାବନାକୁ ଉପସ୍ଥାପନା କରାଯାଇଛି ଯାହା ସାଂପ୍ରତିକ ନାଟକର ଅନ୍ୟ ଏକ ବିଶେଷତ୍ୱ । ସମୟ ସୀମା ୧୨ ଘଣ୍ଟା ଏବଂ ୪ଟି ଦୃଶ୍ୟକୁ ନେଇ ଗଠିତ ବାବାଜୀର ଆଙ୍ଗିକ ଶୈଳୀ ଭିତରେ ରହିଛି ଜଣେ ସଂସ୍କାରଧର୍ମୀ ବ୍ରାହ୍ମଣବାଦୀ ଜଗନ୍ମୋହନଙ୍କ ଜୀବନ ଦର୍ଶନ । ପଲସେଣ୍ଟପିଅର ଅନୂଦିତ ନାଟକର ଭୂମିକାରେ କୁହନ୍ତି, "Ostenisbly a play about the important of Religion, it is fact as an argument in favour of a certain social vision."(p-9) ଜଗନ୍ମୋହନଙ୍କ ବ୍ୟକ୍ତିତ୍ୱ ଥିଲା ବୈପ୍ଲବିକ, ଦୃଷ୍ଟିଭଙ୍ଗୀ ଥିଲା ଆଧୁନିକ । ଉତ୍କଳ ସାହିତ୍ୟର ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ଯଥାର୍ଥରେ କହିଛନ୍ତି, "ପ୍ରାଚୀନ ଗୋଟିଏ ଶ୍ରେଣୀ ଉତ୍କଳରୁ କ୍ରମେ ବିଲୁପ୍ତ ହେଇଯାଇଛି – ଏତେ ଶିକ୍ଷାର ପ୍ରସାର ଏବଂ ଅନୁଷ୍ଠାନ ସଭାସମିତିର ବହୁଳତା ସତ୍ତ୍ୱେ ସେ ଶ୍ରେଣୀର ଲୋକ ଆଉ ପ୍ରାୟ ଦୃଷ୍ଟିଗୋଚର ହେଉ ନାହାନ୍ତି । ସ୍ୱର୍ଗୀୟ ଜଗନ୍ମୋହନ ଲାଲ ଜଣେ ସେହି ଶ୍ରେଣୀର ଲୋକ ଥିଲେ । ସୁଦୀର୍ଘ କାଳ ଆମ୍ଭେମାନେ ତାଙ୍କ ସଙ୍ଗେ ପରିଚିତ ଥାଇ ନାନା ଭାବରେ ତାଙ୍କର ସଂସର୍ଗ ଲାଭ କରି ତାଙ୍କ ଚରିତ୍ରରେ ଯେଉଁ ସୁଗୁଣ ରାଶି ପ୍ରତ୍ୟକ୍ଷ କରିଥିଲୁ, ଯେପରି



Source: Author, Digitized by PPRACHIN, SOA

ଗୋଟିଏ ସହଜ, ସୁନ୍ଦର, ସତେଜ ମନୁଷ୍ୟତ୍ୱର ପରିଚୟ ପାଇଥିଲୁଁ, ସାଧୁତା, ନିର୍ଭୀକତା, ମନସ୍ୱିତା, ସ୍ପଷ୍ଟ ବାଦିତା ଓ କର୍ମଠତାର ଯେଉଁ ଦୃଷ୍ଟାନ୍ତ ପାଇଥିଲୁଁ, ତାହା ଆଧୁନିକ ଉତ୍କଳରେ ବଡ଼ ବିରଳ ।"(ଉ.ସା., ୧୭, ପୃ-୨୮୦, ୧୯୧୩)

ଜଗନ୍ମୋହନ ଲାଲ ସାଧାରଣ ସ୍ତରରୁ ମୁଖ୍ୟ ସିରସ୍ତାଦାର (ଅନେକ ଆଲୋଚକ ତାଙ୍କୁ ଡେପୁଟୀ କଲେକ୍ଟର ବୋଲି କୁହନ୍ତି ଯାହା ସତ୍ୟ ନୁହେଁ) ପଦବୀକୁ ଉନ୍ନୀତ ହେବା ମୂଳରେ ରହିଛି ତାଙ୍କର ସାଧୁତା, କର୍ତ୍ତବ୍ୟନିଷ୍ଠା, କାର୍ଯ୍ୟ କରିବାର ଦକ୍ଷତା ତଥା ଜନସେବା ପ୍ରତି ତାଙ୍କର ପ୍ରତିବଦ୍ଧତା (ଯଦିଓ ସେ ଅବସର ଗ୍ରହଣ ସମୟରେ ନାନାବିଧ ପ୍ରଶାସନିକ ରୋଷର ଶିକାର ହୋଇଛନ୍ତି ।) ବହୁ ଭାଷାରେ ପାରଦର୍ଶିତା ଲାଭ କରିଥିଲେ ମଧ୍ୟ, ଓଡ଼ିଆ ଭାଷା ହିଁ ହୋଇଛି ତାଙ୍କ ଜୀବନ ଦର୍ଶନ ପ୍ରକାଶ କରିବାର ଏକମାତ୍ର ମାଧ୍ୟମ । ଉଭୟ ବୃତ୍ତି ଓ ପ୍ରବୃତ୍ତି ମଧ୍ୟରେ ସମାନ୍ତରାଳ ସ୍ତରର ତାଙ୍କ ପ୍ରତି ଲୋକମାନଙ୍କର ଶ୍ରଦ୍ଧା ଓ ସମ୍ମାନ ଥିଲା । ଉଭୟ ଗ୍ରାମ୍ୟ ଓ ସହରୀ ସଂସ୍କୃତି ସର୍ବଦା ତାଙ୍କ କର୍ମଧାରାକୁ ନିୟନ୍ତ୍ରଣ କରିଛି । ନିଜ ଗ୍ରାମ ମାହାଙ୍ଗାରେ ରାଧାକାନ୍ତ ରଂଗମଂଚ (ଅନୂଦିତ ଇଂରାଜୀ ପୁସ୍ତକର Jagan Mohan Lala : A profile ଶୀର୍ଷକ ଆଲୋଚନାରେ ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ର ଏବଂ ଶେଖ ମତଲୁବ ଅଲ୍ଲୀ କହନ୍ତି ଯେ ୧୮୭୭ ଏବଂ ୧୯୯୫ ମସିହାରେ ଦୁଇଥର ରାଧାକାନ୍ତ ମଂଚରେ ବାବାଜୀ ନାଟକ ମଂଚସ୍ଥ ହୋଇଥିଲା, ଯାହାର ପ୍ରତିଷ୍ଠାକାଳ ୧୮୭୫) ୧୮୭୫ ମସିହାରେ ରାଧାକାନ୍ତ ରଂଗମଂଚ ନିର୍ମାଣ ହୋଇଥିବାର କୌଣସି ଐତିହାସିକ ପ୍ରମାଣ ନାହିଁ, ଦ୍ୱିତୀୟତଃ ସେହି ମଂଚରେ ୧୮୯୫ ମସିହାରେ କେବଳ ଥରୁଟିଏ ପାଇଁ ବାବାଜୀ ନାଟକ ଅଭିନୀତ ହୋଇଥିଲା । ତେଣୁ ମଂଚର ପ୍ରତିଷ୍ଠା କରି ନାଟକ ମଂଚସ୍ଥ କରିବା, ଯେଉଁଥିରେ ସ୍ୱୟଂ ଜଗନ୍ମୋହନ ଏବଂ ତାଙ୍କ ପରିବାରର ସଦସ୍ୟଙ୍କୁ ଅଭିନୟ କରିବା ପାଇଁ ପ୍ରୋତ୍ସାହନ ଦେବା ତତ୍‌କାଳୀନ ସାମାଜିକ ପରିପ୍ରେକ୍ଷୀରେ ଏତେ ସହଜ କଥା ନୁହେଁ । ଓଡ଼ିଶାରେ ପ୍ରଥମେ ବହୁ ପତିକୂଳ ପରିସ୍ଥିତିକୁ ସାମନା କରି ନିଜ ବିଧବା କନ୍ୟାକୁ ପୁନଃ ବିବାହ କରାଇବା (୧୯୦୬) ଏପରିକି ନିମନ୍ତ୍ରଣ ପତ୍ରରେ 'ବାଳ ବିଧବା କନ୍ୟାର ବିବାହ' ଛାପି ବଣ୍ଟନ କରିବା ପରି ସେ ଯେଉଁ ବୈପ୍ଲବିକ ପଦକ୍ଷେପ ନେଇଛନ୍ତି ତାହା ଅବିସ୍ମରଣୀୟ । ମାନସିକ ସ୍ତରରେ ଦୃଢ଼ତା, ସମାଜ ପାଇଁ କିଛି ତ୍ୟାଗ କରିବାର ସଂକଳ୍ପବୋଧ ହିଁ ଜଗନ୍ମୋହନଙ୍କୁ ଅଦ୍ୟାବଧି ସ୍ମରଣଯୋଗ୍ୟ କରିପାରିଛି । ଗବେଷକ ଦେବେନ୍ଦ୍ର କୁମାର ଦାଶଙ୍କ ମତରେ, "ଉନବିଂଶ ଶତକ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରରେ ତାଙ୍କ ଜୀବନର ବହୁ ସମୟ କଟିଛି । କଟକ କଲେକ୍ଟରରେ ଚଉଦ ବର୍ଷରୁ ଅଧିକ କାଳଧରି, ସେ ଥିଲେ ପ୍ରଧାନ ଅମଲା, ତା ସହିତ କଟକର ସାଂସ୍କୃତିକ ଓ ରାଜନୈତିକ (ଅଗଷ୍ଟ- ଅକ୍ଟୋବର, ୨୦୦୩) ଜଗନ୍ମୋହନ କେବଳ ପ୍ରଶାସନିକ କ୍ଷେତ୍ରରେ ନିଜର ଦକ୍ଷତା ପ୍ରକାଶ କରିନାହାନ୍ତି, "କଟକ ସହରର ସେ ଥିଲେ ଜଣେ ସଚେତନ ଓ ଦୂର ଦୃଷ୍ଟି ସଂପନ୍ନ ବୁଦ୍ଧିଜୀବୀ ଓ ନାଗରିକ ।"



Source: Author, Digitized by PPRACHIN, SOA

ଉତ୍କଳ ଦୀପିକା ପୃଷ୍ଠାରେ 'ବାବାଜୀ' ନାଟକର ପ୍ରଥମ ପ୍ରକାଶର ବିଜ୍ଞାପନରେ କୁହାଯାଇଥିଲା, "ଏ ପୁସ୍ତକରେ ଜଣେ ଯଥାର୍ଥ ସାଧୁର ସୁଚରିତ୍ର ଓ ଉପଦେଶ, ବାବାଜୀର ମହିମା, ମଠାଧାରୀଙ୍କ ଆଚରଣ, ହିନ୍ଦୁବାବୁଙ୍କ ସୁରାପାନ, ନବ୍ୟବାବୁ ଓ ଦେଶୀୟ ଖ୍ରୀଷ୍ଟିୟାନର କୁସଂସ୍କାର, ଡାଆଣୀ ଭୂତ, ଗାରିଡି ବିଦ୍ୟା ଓ ରହସ୍ୟ ଓ ହିତକର କଥାମାନ ଅଛି ।" (୧୨/୪୨. ୨୭,୧୦,୧୮୭୭, ପୃ-୬୮) 'ବାବାଜୀ' ନାଟକର ପ୍ରଥମ ପ୍ରକାଶନର ୧୨.୭ ବର୍ଷ ପରେ 'The holy man : A play, ନାମରେ ଇଂରାଜୀରେ ଅନୁବାଦ କରାଯାଇଅଛି (By Ganeswar mishra & Paul St. pierre, Grass roots, Kolkata, 2004) । ଜଗତୀକରଣ ପରିପ୍ରେକ୍ଷୀରେ ଅନୁବାଦ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଛି । ଆଂଚଳିକ ଜ୍ଞାନ ଭଣ୍ଡାର ଦ୍ୱାରକୁ ବିଶ୍ୱ ଦରବାର ପାଇଁ ଉନ୍ମୁକ୍ତ କରିବାର ଏକ ଅଭିନବ ପ୍ରୟାସ ହେଉଛି ଅନୁବାଦ । ତେବେ ୧୨୭ ବର୍ଷ ତଳର 'ବାବାଜୀ' ନାଟକକୁ ଯେତେବେଳେ ଇଂରାଜୀ ଅନୁବାଦ କରିବାର ଉଦ୍ୟମ କରାଯାଇଛି ସେତେବେଳେ ଏହାର ଉଦ୍ଦେଶ୍ୟ ଯାହା ହେଉନା କାହିଁକି କିନ୍ତୁ ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ଯେଉଁ ଉପନିବେଶିକ ଶାସନ ଅଧିକୃତ ଓଡ଼ିଶାର ସାମାଜିକ, ସାଂସ୍କୃତିକ ପରିମଣ୍ଡଳରେ ଏଭଳି ନାଟକଟିଏ ରଚନା କରି ଜଗନ୍ମୋହନ ଲାଲ ଯେଉଁ ନୈତିକ ସାହସର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ତାର ଏକ ସଫଳ ମୂଲ୍ୟାଙ୍କନ ପାଇଁ ଓଡ଼ିଶା ବାହାରର ପାଠକ ତଥା ସମୀକ୍ଷକମାନଙ୍କ ପାଇଁ ଉପଯୁକ୍ତ ବିଚାର ବିମର୍ଶ ନିମନ୍ତେ ନୂତନ ମାର୍ଗଟିଏ ପ୍ରସ୍ତୁତ କରିବା । ଦ୍ୱିତୀୟତଃ ଯେଉଁ ସମୟରେ ଭାରତର ସ୍ଥାନୀୟ ଭାଷାରେ ପୌରାଣିକ, ଐତିହାସିକ କିମ୍ବା କିମ୍ବଦନ୍ତୀ ଆଧାରିତ ବିଷୟ ବସ୍ତୁକୁ ଆଧେୟ କରି ନାଟକ ଲେଖାଯାଇଛି ସେ ସମୟରେ ଓଡ଼ିଆ ଭାଷାରେ ସଂସ୍କାର ମୂଳକ ସାମାଜିକ ନାଟକ ଲେଖାଯିବାର ବ୍ୟତିକ୍ରମ ଘଟିଛି । ଜଗନ୍ମୋହନଙ୍କ ପ୍ରତିଭାକୁ ଚିହ୍ନିବା ତଥା ତର୍ଜମା କରିବାର ଅବକାଶଟିଏ ସୃଷ୍ଟି କରିବା ଏକ ସାଧାରଣ କଥା ନୁହେଁ । ଜଗନ୍ମୋହନଙ୍କ 'ଭ୍ରମ ଭଞ୍ଜନ' (୧୮୬୮) କାବ୍ୟଟି ଇଂରାଜୀ କବି ଥୋମାସ୍ ପର୍ଣ୍ଣେଲଙ୍କ The Hermit କାବ୍ୟର ଭାବାନୁବାଦ (ଅନୁଦିତ ପୁସ୍ତକରେ Parnell ସ୍ଥାନରେ Purnell ହୋଇଛି) ଯାହା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ଛନ୍ଦବଦ୍ଧ କାବ୍ୟ, ଓଡ଼ିଶା ବିଜୟ, (୧୮୭୬) ଯାହା Toyanabeeଙ୍କ A Sketch of the History of Orissa ପୁସ୍ତକ ଆଧାରରେ ରଚିତ (ଅନୂଦିତ ପୁସ୍ତକରେ କେବଳ History of Orissa ଲେଖାଯାଇଛି), ସତୀ (୧୮୮୬), ପ୍ରୀତି (୧୮୮୬) ଏବଂ ବୃଦ୍ଧ ବିବାହ (୧୯୦୮) ନାଟକ ତଥା ଅନ୍ୟାନ୍ୟ ସାମାଜିକ ଉପାଦେୟ ସୃଷ୍ଟି, ସଂପର୍କରେ ପାଠକମାନଙ୍କୁ ଅବଗତ କରାଇବା ପାଇଁ ଉଭୟ ଶ୍ରୀଯୁକ୍ତ ଗଣେଶ୍ୱର ଦାଶ ଏବଂ ପଲ ସେଣ୍ଟପିଅରଙ୍କ ଉଦ୍ୟମ ପ୍ରଶଂସନୀୟ ।



Source: Author, Digitized by PPRACHIN, SOA

## ତିନି

ଅନୁବାଦକ ଦ୍ୱୟ ବାବାଜୀ ନାଟକର ଆକ୍ଷରିକ ଅନୁବାଦ କରି ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଭାବାବେଗକୁ ବାନ୍ଧି ରଖିବାର ଯଥା ସମ୍ଭବ ପ୍ରୟାସ କରିଛନ୍ତି । ମୂଳ ଓଡ଼ିଆର ଇଂରାଜୀ ଅନୁବାଦର କିଛି ଉଦାହରଣ ନିଆଯାଇପାରେ ।

ବାବାଜୀ – ଆମେ ତମାଖୁ ଖାଉଁ ନା ବାବା । ଗଞ୍ଜା କଣ ହେବ ? ଚିଲମ ରଖନ୍ତୁ । ଗଞ୍ଜା ଭାଙ୍ଗ ଆଦି ଆମର କିଛି ହୁଏ ନାହିଁ । ଭୋଜନ ନ କଲେ ଜୀବନ ନ ରହିବ ଏଥିପାଇଁ ଭୋଜନ ଆବଶ୍ୟକ । ନିଶା ପାଣିରୁ କି କାର୍ଯ୍ୟ ? ସେଥିରେ ମତି ଗତି ଠିକ୍ ରହେ ନାହିଁ । (୧ମ ଅଙ୍କ)

Holy man - *What would I want with ganja when I do not even smoke, my son keep chillum. I donot need ganja or bhang only food, since it's necessary to live, What use are intoxicants ? They keep the mind from functioning properly.* (p-18)

ବାବୁ – ମତି ଗତି ଠିକ୍ ରହେନା ? ତେବେ କିପରି ବୈରାଗୀମାନେ ନିଶା ଖାନ୍ତି ? ଆହୁରି ଗୋଟିଏ ବଚନ ଅଛି, "ଯୋଗୀ ଖାଓ୍ୱେ ଯୋଗ ଧ୍ୟାନ ଧରେ ହରିଙ୍କେ ନାମ ଉଚାରନେକୁ ।"

Babu - *They keep the mind from functioning, did you say ? They why do holy men become addicted to them? Isn't there a saying : to mediate on the lord, the holy man takes intoxicants" ?* (P-18)

ଦାମା – ଶୁଣିଲୁ "ସ୍ୱର୍ଗକୁ ନିଶୁଣି ନାହିଁ, ବଡ଼ ଲୋକଙ୍କୁ ଉତ୍ତର ନାହିଁ ।" ସେମାନଙ୍କୁ ସବୁ ସାଜେ । ତୁ ଯେବେ ବାବାଜୀ ପାଇଁ ସିଧା ଆଣି ତାକୁ ଖାଇବାକୁ ନଦେବୁ ବାବୁ ଶୁଣିଲେ ତୋର କି ଦଶା ହେବ, ଆଜି ତୋ କପାଳରେ ଗାଳି ଗୁଡିଏ ଅଛି । (ଦ୍ୱିତୀୟ ଅଙ୍କ)

Dama - *Do not you know there is no ladder to heaven and no replaying to important men. Cook the food for the holyman. If you do not, what will happen when the babu finds out ? He will abuse and scold you.* (p-23)

ପୂଜାରୀ – ମହାରାଜା !" ଷଟ୍‌କର୍ଣ୍ଣମନ୍ତ୍ରଭେଦଁ ଏପରି ନିଷେଧ ଅଛି ମୁଁ ତାହା କହିବି ନାହିଁ, ତାହା ପ୍ରକାଶ ହେଲେ ମୋ ବୃତ୍ତି ମରିଯିବ । ମୋ ଦୋଷ କ୍ଷମା କର । (ଚତୁର୍ଥ ଅଙ୍କ)



Source: Author, Digitized by PPRACHIN, SOA

ଏହି ନାଟକର ପ୍ରଥମ ଅଙ୍କରେ ବ୍ୟବହୃତ ଗୋଟିଏ ସଂଗୀତର ଉଦାହରଣ ନିଆଯାଉ ।

ଯଶୁ – (ତବଲା ନେଇ) ମହାରାଜ ! ଭଜନ କି କିଏ ।

ଭଜନ – (ରାଗିଣୀ ଜଙ୍ଗଲା, ତାଳ ଠୁମୁରି)

ପତିତପାବନ ସତେ କି ଦର୍ଶନ କରିବି ଏ ପାପୀ ପାଦ ତୁମ୍ଭରି । ସେହି ଯେ ଚରଣ ଅମୃତ ପୂରଣ କୋଟି କୋଟି ସାପ ସନ୍ତାନ ହାରୀ । ମୋହରେ ଜଡ଼ିତ ହୋଇଛି ମୋର ଚିତ୍ତ ଜଟିଳ ଘୋର ସଂସାରୀ । ଉପାୟ ନାହିଁ .ତ ତୁମରି ବ୍ୟତୀତ ରଖ ହେ ଅଧମ ଉପକାରକାରୀ । ଯେ ଇଚ୍ଛା ସେ ଦଣ୍ଡ ଦେଇ ପାପ ଖଣ୍ଡ କର ମୋତେ ତବ ସେବନକାରୀ । କରିଣ କରୁଣା ଏତିକି କାମନା ପୂର୍ଣ୍ଣ କର ଶୁଣ ମୋର ଗୁହାରି ।

Jashu - Maharaj, begin the chanting.

Holy man (chanting)

Can this sinner have darshan of your feet,

O saviour of the Fallen!

Those feet, like nectar, dissolve the sins of millions

My heart is immersed in attachment

Out and out I am a man of the world

There is no one except you

Save me, O protector of the Fallen.

Punish me the way you like and save me from sin.

I am your servant

Kindly fulfill my wish

Listen to my prayer. (p-21)

ଓଡ଼ିଆ ହେଉ କିମ୍ବା ଇଂରାଜୀ ହେଉ, ପ୍ରତ୍ୟେକ ଭାଷାରେ ନିହିତ ଥାଏ ନିଜସ୍ୱ ବୈଶିଷ୍ଟ୍ୟ । ତେଣୁ ଶବ୍ଦ ସମୂହରେ ଆନୁଷଙ୍ଗିକ ଭାବ-ବିଳାସ ରହିବା ସ୍ୱାଭାବିକ । ଅକ୍ଷରାନୁବାଦ ସମୟରେ କେତେକ ସ୍ଥଳରେ ଭାବାଭିବ୍ୟକ୍ତି ପ୍ରକାଶ କରିବାରେ ଅସୁବିଧାର ସମ୍ମୁଖୀନ ହୋଇଥାଏ ଅନୁବାଦକ । ଗୋଟିଏ ଜାତି ଓ ତାର ସାଂସ୍କୃତିକ ପୃଷ୍ଠଭୂମି ନିର୍ଭରଶୀଳ । 'ବାବାଜୀ' ନାଟକର ଭାଷା ଶୈଳୀ 'The Holyman : A play' ରେ ଅବିକଳ ଉପସ୍ଥାପିତ ହୋଇନଥିଲେ ସୁଦ୍ଧା ଓଡ଼ିଆ ରଚନାର ସାବଲୀଳତା ଓ ସ୍ୱଚ୍ଛତା ରକ୍ଷା କରିବା ପାଇଁ ଅନୁବାଦକ ଦ୍ୱୟ ପ୍ରୟାସ କରିଛନ୍ତି । କେତେକ ସ୍ଥଳରେ ମୂଳ ରଚନାକୁ ଆକ୍ଷରିକ ଅନୁବାଦ ପରିବର୍ତ୍ତେ ଭାବାନୁବାଦ ମାଧ୍ୟମରେ ସଂଦିଗ୍ଧ ଭାବକୁ ପ୍ରକାଶ କରାଯାଇଛି ।



Source: Author, Digitized by PPRACHIN, SOA

ଫକୀର ମୋହନଙ୍କ ଭାଷା ଶୈଳୀ ଓ ପ୍ରକାଶ ଭଙ୍ଗୀ ଜଗନ୍ମୋହନଙ୍କ ବାବାଜୀରେ ଏତେଟା ପରିଦୃଶ୍ୟ ହୋଇନଥିବାରୁ ଅନୁବାଦକ ଦ୍ୱୟ ଖୁବ୍ ଯତ୍ନ ସହକାରେ ଏକ ପରିପୂର୍ଣ୍ଣ ଅନୁବାଦ କରିବାର ସମର୍ଥ ହୋଇଛନ୍ତି । ତଥାପି ଅନୁବାଦ ହୋଇପାରିନାହିଁ, ଯେପରି, 'ରକ୍ତ ପିତ୍ତରୋଗ' ସୁକ ମଦରଙ୍ଗା ବା କତରାଲଗା କିମିଆ, ଲୋକେ ଦେଖିବାକୁ (ଚତୁର୍ଥ ଅଙ୍କ) । ଏତଦବ୍ୟତୀତ ଏହି ନାଟକରେ ବିଭିନ୍ନ ରାଗରାଗିଣୀ ଯୁକ୍ତ ଛନ୍ଦ ପୂର୍ଣ୍ଣ ଯେଉଁ ତିନୋଟି ସଂଗୀତ ଅଛି, ତାର ଅନୁବାଦ ଓଡ଼ିଆ ଅନୁରୂପ ହୋଇନାହିଁ, ହେବା ସମ୍ଭବ ମଧ୍ୟ ନୁହେଁ । ତେବେ ଯେଉଁ ରାଗ ଓ ତାଳର ବ୍ୟବହାର କରାଯାଇଛି (ପ୍ରଥମ ସଂଗୀତ – ରାଗ ଝିଝିଂଟି, ତାଳ-ଏକତାଲ, ଦ୍ୱିତୀୟ ସଂଗୀତ-ରାଗିଣୀ ଜଂଗଲା, ତାଲ-ଠୁମୁରି, ତୃତୀୟ ସଂଗୀତ-ରାଗିଣୀ ସିନ୍ଧୁ, ତାଳ ଆଡତାଳ (ଧାମରା) ସେସବୁଗୁଡିକର ସ୍ୱରୂପ ଓ ବୈଶିଷ୍ଟ୍ୟ ସଂପର୍କରେ ଯଦି ପାଟଟୀକା କିମ୍ବା ପ୍ରସ୍ତାବନାରେ ଦିଆଯାଇଥାନ୍ତା, ତେବେ ଅଣଓଡ଼ିଆ ପାଠକମାନଙ୍କ ନିକଟରେ ଭାରତୀୟ ଶାସ୍ତ୍ରୀୟ ସଂଗୀତର ଗାୟନ ପଦ୍ଧତିର ଧାରଣା ସୃଷ୍ଟି କରିପାରିଥାନ୍ତା । ଏତଦ୍ ବ୍ୟତୀତ କଥିତ ଭାଷାର ବ୍ୟବହୃତ ହେଇଥିବା ବ୍ୟଙ୍ଗୋକ୍ତି କିମ୍ବା ଚାତୁର୍ଯ୍ୟପୂର୍ଣ୍ଣ ଭକ୍ତିର ଅଭାବ ଉକ୍ତ ଅନୂବାଦରେ ଅନୁଭବ କରାଯାଇପାରେ ।

ଉଦାହରଣ ସ୍ୱରୂପ -

ରାମ - ସେ ତ ଶୋଇବାକୁ ଯାଉଛି, ମୁଁ କହିଲି ମାତ୍ରକେ ଡେଇଁ ପଡ଼ିବ, ମୋ ଉପରକୁ କାମୁଡ଼ି ହେବ ।

Rama - He's about to take a nap. If I ask him to cook, he'll be angry with me. (p-19)

ତେବେ ଆଶ୍ଚର୍ଯ୍ୟର କଥା, ଅନୂବାଦକଦ୍ୱୟ ସମୟରେ ଅନେକ ଗୁଡିଏ ସଂଳାପ ଅନୁବାଦ କରିନାହାନ୍ତି । ବିଶେଷ କରି ଏହା ଚତୁର୍ଥ ଅଙ୍କରେ ଘଟିଛି । ହୁଏତ ଅନୁବାଦକ 'ବାବାଜୀ' ନାଟକର ମୂଳ ଲେଖା / ପାଠ ଦେଖିବାର ସୁଯୋଗ ପାଇନାହାନ୍ତି କିମ୍ବା ଇଚ୍ଛାକୃତ ଭାବେ ସେଗୁଡିକୁ ଅନୁବାଦରୁ ବାଦ ଦେଇଛନ୍ତି । ତେବେ ଯେଉଁସବୁ ନାଟ୍ୟ ସଂଳାପ ଗୁଡିକର ଅନୁବାଦ ହୋଇନାହିଁ ସେଗୁଡିକର ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

( ୧ ) ପୂଜାରୀ – ଏ ପ୍ରକାର ହେଉଚି ।

ବାବାଜୀ – ତେବେ ତୁ ଏ ବ୍ୟବସାୟ ଛାଡ଼ିଦେ, ଠକ ବୃତ୍ତି ମନ୍ଦ ।

(ଗ୍ରନ୍ଥାବଳୀ, ପୃ-୧୪୩)

( ୨ ) ପୁଝାରୀ – ଆପଣ ଗୁରୁଦେବଠୁଁ ବଳିଲେ, ଯଥାର୍ଥ ଗୁରୁ ତ ଆପଣ ହେଲେ । ମୋ ଲାଗି ଅନେକ କଷ୍ଟ ପାଇଲେ ଏହା ମୋ ମନକୁ ଯିବ ନାହିଁ, ରାତ୍ର ବିଶେଷ ହେଲାଣି ଆପଣ ଶୟନ କରନ୍ତୁ; ମୁଁ ଆସେଁ ।



Source: Author, Digitized by PPRACHIN, SOA

ବାବାଜୀ – ଆଚ୍ଛା ବାବା ଆ, ଆମ କଷ୍ଟ କଥା ତୋ ମନକୁ ଯାଉଁ, ମାତ୍ର ଉପଦେଶ ସବୁ ଯେପରି ତୋ ମନରୁ ନ ଯାଉଁ ।

ପୂଜାରୀ – (ଆନନ୍ଦିତ ହୋଇ) ଆପଣ ସେହି କଲ୍ୟାଣ କରନ୍ତୁ, ନମସ୍କାର ।

ବାବାଜୀ – ନମସ୍କାର – ଈଶ୍ୱର ସେହିପରି ସୁମତି ଦିଅନ୍ତୁ । (ଗ୍ରନ୍ଥାବଳୀ-ପୃ-୧୪୪) ୪ର୍ଥ ଅଙ୍କରେ ବାବାଜୀ ଓ ପୂଜାରୀଙ୍କ ମଧ୍ୟରେ ହୋଇଥିବା ଶେଷ କଥୋପକଥନ)

ବାବାଜୀ ନାଟକର କେଉଁ ସଂସ୍କରଣ ଆଧାରରେ ଏହି ଅନୁବାଦଟି ସଂଘଟିତ ହୋଇଛି ତାହା ଅଗୋଚର୍ । ପରବର୍ତ୍ତୀ ସଂସ୍କରଣରେ ଅନୁବାଦକ ତ୍ୟାଗ କରିଥିବା ଉପରୋକ୍ତ ସଂଳାପପ୍ରତି ଧ୍ୟାନ ଦେଲେ ନାଟକଟି ପୂର୍ଣ୍ଣାଙ୍ଗ ଅନୁବାଦ ହେଇପାରିବ ।

ଅନୁବାଦରେ ବ୍ୟବହୃତ ଅନେକ ଇଂରାଜୀ ଶବ୍ଦ ଓଡ଼ିଶାମାଟି ସଂଲଗ୍ନ ନୁହେଁ କିମ୍ବା ଓଡ଼ିଶୀ ସଂସ୍କୃତିର ବାହକ ନୁହେଁ । ପାଠରେ ଏକଥା ସ୍ପଷ୍ଟ କରି କୁହାଯାଇଛି - *"Needless to say, translating a text like Babaji Nataka, written in the Oriya spoken a hundred years ago, is not easy, Some of the cultural nuances and suggestions implied in the original can not be carried over to the English Language. "* (page-8, The Holyman : A play)

ଊନବିଂଶ ଶତକର ଚତୁର୍ଥ ଦଶକ ବେଳକୁ ଜଗନ୍ମୋହନ ଲାଲଙ୍କ ପରିବାର ଓଡ଼ିଶାରେ ସ୍ଥାୟୀ ବାସିନ୍ଦା ହୋଇସାରିଥିଲା । "ଶାସକମାନଙ୍କର ଅନୁଗ୍ରହରୁ ଜଗନ୍ମୋହନଙ୍କ ପରିବାର ଏକ ଅଭିଜାତ ଓ ବିତ୍ତ ସଂପନ୍ନ ପରିବାର କେବଳ ନଥିଲେ, ସମକାଳରେ ଉପଲବ୍ଧ ଶିକ୍ଷାର ଆଲୋକରେ ସେମାନେ ଥିଲେ ଆଲୋକିତ ।" (ଦେବେନ୍ଦ୍ର କୁମାର ଦାଶ, ପୃ-୨୧୩)

ଉଚ୍ଚ ଶିକ୍ଷିତ ପ୍ରଶାସକ, ସମାଜ ସଂସ୍କାରକ ତଥା ବିତ୍ତଶାଳୀ ଜମିଦାରୀ ପରିବେଷ୍ଟନୀରେ ଜଗନ୍ମୋହନ ଲାଲ (ଅନୂଦିତ ପୁସ୍ତକରେ ଜଗନ୍ମୋହନଙ୍କ ନାମ ଓ ସଂଜ୍ଞା Jagan Mohan Lala ବୋଲି ଉଲ୍ଲେଖିତ ଅଛି । ଇଂରାଜୀରେ ଜଗନ୍ମୋହନ ନିଜ ନାମକୁ Jagan Mohan Lall ବୋଲି ଲେଖୁଥିଲେ ଏବଂ ଓଡ଼ିଶାରେ ଜଗନ୍ମୋହନ ଲାଲ)ଙ୍କ ଚେତନାର ଚୌହଦୀ ଥିଲା ବ୍ୟାପ୍ତ । ବହୁ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିବାର ପ୍ରମାଣ ବାବାଜୀ ନାଟକକୁ ପାଇପାରିବା । କିନ୍ତୁ ଫକୀରମୋହନଙ୍କ କୃତିରେ ଯେଉଁ ପରିମାଣରେ ବ୍ୟଂଜନା ପୂର୍ଣ୍ଣ ଗ୍ରାମୀଣ ଭାଷାର ପ୍ରୟୋଗ ଘଟିଛି ସେଇ ପରିମାଣରେ ଜଗନ୍ମୋହନଙ୍କ କୃତିରେ ପରିଲକ୍ଷିତ ହୁଏ ନାହିଁ ପରନ୍ତୁ ତାଙ୍କର ଭାଷା ଅନେକାଂଶରେ ସଂସ୍କୃତାୟିତ ।



Source: Author, Digitized by PPRACHIN, SOA

# ଚାରି

ପାରଂପାରିକ ନାଟ୍ୟ ଶୈଳୀରୁ ବିଚ୍ୟୁତ ହୋଇ ଆଧୁନିକ ମନସ୍କ ଜଗନ୍ମୋହନ ଲାଲ (୧୯୩୮-୧୯୧୩) (ସରକାରୀ ନଥି ପତ୍ରରେ ଜଗନ୍ମୋହନଙ୍କ ଜନ୍ମ ତାରିଖ ହେଉଛି ୨୮-୧୧-୧୮୩୯) ପ୍ରଥମେ ପରୀକ୍ଷା ମୂଳକ ନାଟକ ରଚଂନା କରିଛନ୍ତି । ଜଣେ ସଂସ୍କାରବାଦୀ ମନନଶୀଳ ବ୍ୟକ୍ତିତ୍ୱର ଅଧିକାରୀଙ୍କ ନିକଟରୁ ଏହା ଆଶା କରାଯାଇପାରେ । କେବଳ ସାହିତ୍ୟ କୃତିରେ ସେ ସମାଜ ସଂସ୍କାରର ବାର୍ତ୍ତା ଦେଇନାହାନ୍ତି ; ବ୍ୟକ୍ତିଗତ ଜୀବନ କ୍ଷେତ୍ରରେ ନିଜ ବାଲ୍ୟ ବିଧବା କନ୍ୟାକୁ ପୁନଃ ବିବାହ ଦେଇ ଏକ ବୈପ୍ଳବିକ କାର୍ଯ୍ୟର ଶୁଭାରମ୍ଭ କରିଛନ୍ତି ।

(Jagan Mohan Lala : a profile ରେ ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ର ଏବଂ ସେକ୍ ମତ୍ଲବ ଅଲ୍ଲୀ କୁହନ୍ତି ଯେ ଜଗନ୍ମୋହନ ନିଜ ବାଲ୍ୟ ବିଧବା ଦ୍ୱିତୀୟ କନ୍ୟାର ପୁନଃ ବିବାହ କରାଇଥିଲେ । ଏହାର କୌଣସି ପ୍ରାମାଣିକ ତଥ୍ୟ ଦିଆଯାଇନାହିଁ, ପରନ୍ତୁ ସାନ ଝିଅକୁ ପୁନଃ ବିବାହ (୧୯୦୬) ବୋଲି ଉତ୍କଳ ଦୀପିକା ପ୍ରଭୃତି ପତ୍ର ପତ୍ରିକାରେ ଉଲ୍ଲେଖ ରହିଛି ।) ପଶ୍ଚିମ ବଙ୍ଗରେ ଈଶ୍ୱର ଚନ୍ଦ୍ର ନିଜ ପୁଅକୁ ଏକ ବାଲ୍ୟ ବିଧବା ସହିତ ପୁନଃ ବିବାହ ଦେଇ ଯେଉଁ ଇତିହାସ ରଚନା କରିଛନ୍ତି ଓଡ଼ିଶାରେ ଜଗନ୍ମୋହନ ବହୁ ପ୍ରତିରୋଧର ସମ୍ମୁଖୀନ ହୋଇ ପ୍ରଥମେ ବାଲ୍ୟ ବିଧବାର ପୁନଃ ବିବାହ କରାଇବାରେ ସକ୍ଷମ ହେଇଛନ୍ତି ।

ଜଗନ୍ମୋହନ ଲାଲଙ୍କ ପରି ଜଣେ ଐତିହ୍ୟ-ସଂସ୍କୃତି ସଂପନ୍ନ ବ୍ୟକ୍ତିଙ୍କର କୃତିକୁ ଇଂରାଜୀରେ ଅନୁବାଦ କରି ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ର ଏବଂ ପଲସେଣ୍ଟ ପିଅର ସାଧୁକାର୍ଯ୍ୟଟିଏ କରିଛନ୍ତି, ଯାହା କେବଳ ଓଡ଼ିଶା ନୁହେଁ ସମଗ୍ର ବିଶ୍ୱ ସାହିତ୍ୟରେ ତାହା ଆଦୃତ ହେବ । ଅନୁବାଦକମାନଙ୍କ ନିଷ୍ଠାପର ଉଦ୍ୟମରେ ପ୍ରଥମେ ଓଡ଼ିଆ ନାଟକ 'ବାବାଜୀ' ବର୍ତ୍ତମାନ ବିଶ୍ୱ ପରିଭ୍ରମଣ କରିବାର ସୌଭାଗ୍ୟ ଲାଭ କରିବ ।



Source: Author, Digitized by PPRACHIN, SOA

# ଫକୀରମୋହନଙ୍କ ଶାସ୍ତ୍ରାୟଣ ପ୍ରସଂଗ : 'ଛ'ମାଣ ଆଠଗୁଣ୍ଠ

ଗୋଟିଏ ଭାଷାର ପ୍ରାଣପ୍ରାଚୁର୍ଯ୍ୟ, ଆତ୍ମଶକ୍ତି ଅଧିକ କ୍ରିୟାଶୀଳ ହୁଏ ଗଦ୍ୟ ରଚନା ମାଧ୍ୟମରେ – ପଦ୍ୟ ରଚନାରେ ନୁହେଁ । ପ୍ରାଥମିକ ସ୍ତରରେ ଭାଷା ଦୁର୍ବଳ ଥିବାରୁ ପ୍ରତ୍ୟେକ ଭାଷାର ଆଦିରୂପ ଥିଲ ପଦ୍ୟମୟ । ଫକୀରମୋହନ ଏହି ସତ୍ୟକୁ ବୁଝିଥିଲେ । ତେଣୁ ସେ ପଦ୍ୟ ଅପେକ୍ଷା ଉତ୍କୃଷ୍ଟ ଗଦ୍ୟ ରଚନାରେ ମନୋନିବେଶ କରିଥିଲେ । ଯଦିଓ ପଦ୍ୟ ରଚନାରେ ସେ ସିଦ୍ଧହସ୍ତ ଥିଲେ । ତାଙ୍କର ଏହି ଅଭିନବ ପ୍ରୟାସ ଓଡ଼ିଆ ଭାଷାକୁ ଏକ ତୀକ୍ଷଣ, ମାର୍ଜିତ ତଥା ବଳିଷ୍ଠ ଗଦ୍ୟ ବିଭାଗ ଦେବାରେ ସମର୍ଥ ହୋଇଥିଲା । ଯେଉଁ ସମୟରେ ଶିକ୍ଷାର ସର୍ବୋଚ୍ଚ ଆସନରେ ଉପନୀତ ହୋଇ ରାଧାନାଥ ପଦ୍ୟ ରଚନା ସହିତ ତାଙ୍କର ସୃଷ୍ଟି ସମୂହକୁ ଶାସ୍ତ୍ରାୟଣ ମାଧମରେ ସଫଳ ହେଇଥିଲେ, ସେଇ ସମୟରେ ଫକୀରମୋହନ ଓଡ଼ିଆ ଶାସ୍ତ୍ରାୟଣ କରି ସଫଳ ହେଇଥିଲେ, ସେଇ ସମୟରେ ଫକୀର ମୋହନ ଓଡ଼ିଆ କଥା-ସାହିତ୍ୟକୁ ଏକ ଉପଯୁକ୍ତ ମାନ୍ୟତା ଦେବାରେ ସେଇ ପଦ୍ଧତିକୁ ଗ୍ରହଣ କରିଥିଲେ । ତେବେ ସେମାନଙ୍କ ମଧ୍ୟରେ ଏତିକି ଫରକ ଯେ ରାଧାନାଥ ସରକାର ଶକ୍ତିକେନ୍ଦ୍ରରେ ଥାଇ ଯେଉଁ ପରିମାଣରେ ଶାସ୍ତ୍ରାୟଣ ପ୍ରକ୍ରିୟାକୁ ଅଧିକ ତୀବ୍ର କରିପାରିଥିଲେ, ଫକୀର ମୋହନ ଯଦିଓ ପରିଧିରେ ବିଶ୍ୱାସୀ ତଥାପି ସେଇ ଶକ୍ତି କେନ୍ଦ୍ର ପ୍ରତି ତାଙ୍କର ଦୁର୍ବଳତା ଥିବାରୁ ସେଇ ପ୍ରକିୟାକୁ ସ୍ୱୟଂ ଆପଣେଇ ନେଇଥିଲେ । ତେଣୁ ଦୀର୍ଘ ଦିନ ଧରି ସାଂସ୍କୃତିକ କେନ୍ଦ୍ର କଟକରେ ପ୍ରକାଶ ପାଉଥିବା 'ଉତ୍କଳ ଦୀପିକା' (୧୯୦୪ ପର୍ଯ୍ୟନ୍ତ) ଏବଂ 'ଉତ୍କଳ ସାହିତ୍ୟ' ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରିପାରିଥିଲେ । ରାଧାନାଥଙ୍କ ଯୋଗସୂତ୍ରଧରମାନେ ଏକାନ୍ତ ଅନୁରକ୍ତି ପୂର୍ବକ୍ ଯେଉଳି ରାଧାନାଥଙ୍କୁ ଯୁଗସ୍ରଷ୍ଟାର ମାନ୍ୟତା ଦେବାରେ ସମସ୍ତ ସୀମା ଉଲ୍ଲଂଘନ କରିଥିଲେ ଫକୀରମୋହନ କିନ୍ତୁ ସେଇ ସ୍ତରକୁ ଯାଇପାରିନଥିଲେ । ତେଣୁ ଶାସ୍ତ୍ରାୟଣ ଯୁଦ୍ଧରେ ସେ ନିଜେ ସେନାପତି ହୋଇ ଯଥାସମ୍ଭବ ପ୍ରୟାସ କରିଛନ୍ତି ଓଡ଼ିଆ ଗଦ୍ୟ ରଚନାର ପରକାଷ୍ଠା ପ୍ରଦର୍ଶନ ପାଇଁ ।

ଓଡ଼ିଆ ଉପନ୍ୟାସ ଇତିହାସରେ ଫକୀରମୋହନ ସେନାପତିଙ୍କ 'ଛ ମାଣ ଆଠଗୁଣ୍ଠ' ଏକ ଅନବଦ୍ୟ ସୃଷ୍ଟି । ଉପନିବେଶିକ ଶାସନ କେନ୍ଦ୍ରରେ ଥାଇ ସୁଦ୍ଧା ତା'ର ନାଭିକେନ୍ଦ୍ରକୁ ଆଘାତ ଦେଇ ଫକୀରମୋହନ ଯେଉଁ ଅଭିନବ ଚିନ୍ତା-ତରଙ୍ଗ ସୃଷ୍ଟି କରିଛନ୍ତି ତାହା



Source: Author, Digitized by PPRACHIN, SOA

ଉପନିବେଶ-ମୁକ୍ତ ବୁଦ୍ଧିବାଦୀଙ୍କ ମନରେ ବିସ୍ମୟ ସୃଷ୍ଟି କରେ । ତତ୍‌କାଳୀନ ସାମାଜିକ ବ୍ୟବସ୍ଥାର କ୍ରିୟା ପ୍ରତିକ୍ରିୟାକୁ ଅତି ନିଖୁଣ ଭାବେ ନିରୀକ୍ଷଣ କରିବାର ଅନନ୍ୟ ସାମର୍ଥ ରଖିଥିବା ଫକୀରମୋହନ 'ଛ ମାଣ ଆଠଗୁଣ୍ଠ'କୁ ସାଧାରଣ ପାଠକ କିମ୍ବା ଗବେଷକ ସହଜରେ ବୁଝିବା ଯେ କଠିନ ତାହା ଅନସ୍ୱୀକାର୍ଯ୍ୟ । 'ଛମାଣ ଆଠଗୁଣ୍ଠ' ରଚିତ ହେବା ପରେ ଏହାର ଗଠନ କୌଶଳ ଏବଂ ଲୋକ ପ୍ରତିକ୍ରିୟା ସମ୍ବନ୍ଧରେ ଦୁଇଟି ମିଥ୍ ଗଠନ ହୋଇଛି । ପ୍ରଥମ ମିଥ୍‌ଟି ସୃଷ୍ଟି କରିଛନ୍ତି ଫକୀରମୋନ ପୁତ୍ର ମୋହିନୀ ମୋହନ ସେନାପତି । 'ଆତ୍ମ ଚରିତ'ରେ ଛମାଣ ଆଠଗୁଣ୍ଠ' ଉପନ୍ୟାସ ପ୍ରସଙ୍ଗରେ ମୋହିନୀ ମୋହନ ଲେଖିଛନ୍ତି, "କଟକ ବାସ ସମୟରେ ମୋର ଉପନ୍ୟାସ ଲେଖା ଆରମ୍ଭ ହୁଏ । ... ତତପରେ 'ଛମାଣ ଆଠଗୁଣ୍ଠ' ନାମରେ ଗୋଟିଏ ଗଳ୍ପ ଆରମ୍ଭ କଲି । ତାହା କ୍ରମଶଃ ବଢ଼ି ବଢ଼ି ଗୋଟିଏ ଉପନ୍ୟାସ ପରିଣତ ହେଲା ।" (ଫ. ଗ୍ରନ୍ଥାବଳୀ,ପୃ-୨୦୮)[୧] ପ୍ରଥମ କଥା ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ'ର ପରିକଳ୍ପନା ଗୋଟିଏ ଗଳ୍ପ ମଧ୍ୟରେ ସୀମିତ ନ ଥିଲା । ଉତ୍କଳ ସାହିତ୍ୟରେ (୧/୧୦-୧୮୯୭) ପ୍ରଥମ କରି ତିନୋଟି ପରିଚ୍ଛେଦ (ରାମଚନ୍ଦ୍ର ମଙ୍ଗରାଜ, ସୁନାମ ପୁରୁଷୋଧନ୍ୟ, ବାଣିଜ୍ୟେ ବସତେ ଲକ୍ଷ୍ମୀ ସ୍ତଦର୍ଦ୍ଧଂ କୃଷିକର୍ମଣି) ପ୍ରକାଶ ପାଇଲା । ସେଥିରୁ ସହଜରେ ଅନୁମିତ ହୁଏ ଯେ ଏହା କେବେହେଲେ ଗୋଟିଏ ଗଳ୍ପର ଗଠନ ପ୍ରକ୍ରିୟା ନୁହେଁ, ପରନ୍ତୁ ଏହାର ଗତି ଉପନ୍ୟାସମୁଖୀ । ତତ୍‌କାଳୀନ ଗ୍ରାମୀଣ ସଭ୍ୟତାରେ ସୃଷ୍ଟି ହୋଇଥିବା ରାମଚନ୍ଦ୍ର ମଙ୍ଗରାଜ ପରି ନବ୍ୟ-ଜମିଦାରଙ୍କ କାର୍ଯ୍ୟକଳାପର ପୃଷ୍ଠଭୂମିରେ ଯେଉଁ ତିନୋଟି ପରିଚ୍ଛେଦ ଫକୀରମୋହନ ରଚନା କଲେ ତାହା ଗଳ୍ପ-ପ୍ରାରୂପ ନୁହେଁ । କାରଣ ସଂପତ୍ତି ବୃଦ୍ଧି ନେଇ ମଙ୍ଗରାଜଙ୍କ ବିଚକ୍ଷଣତା, ଦୁଷ୍ଟ ବୁଦ୍ଧି, ଷଡ଼ଯନ୍ତ୍ର ଏବଂ ପାପବୋଧ ଅପେକ୍ଷା କରିଛି, "ଥା-ମା-ଆ-ଗୁ" ଜୀବନର ଅନ୍ତିମ ଉଚ୍ଚାରଣ ପର୍ଯ୍ୟନ୍ତ । ଦ୍ୱିତୀୟ ମିଥ୍‌ଟି ହେଲା, "ଏହି ଉପନ୍ୟାସ ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣୀ ଯେତେବେଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଉଥିଲା, ସେତେବେଳେ ମଫସଲରୁ କେତେକ ଅଜ୍ଞ ଲୋକ ମକଦ୍ଦମା ବିଚାର ଦେଖିବା ପାଇଁ କଟକ ଆସିଥିଲେ ।" (ଫଂ.ଗ୍ର.ପୃ-୨୦୮)[୨] ଏହା ଏକ ମନଗଢ଼ା କଥା । ଏହାର ସତ୍ୟତା କେଉଁଠି ନାହିଁ । ତତ୍‌କାଳୀନ କୌଣସି ସମ୍ବାଦ ପୃଷ୍ଠାରେ ଏପରି ଖବର ପ୍ରକାଶ ପାଇନାହିଁ । ରାଧାନାଥ ସ୍ୱସୃଷ୍ଟି ସଂପର୍କରେ ଯେଉଁଠି କିଛି କହିଛନ୍ତି ତାହା ଯେପରି ସଂପୂର୍ଣ୍ଣ ମିଥ୍ୟା ଠିକ୍ ସେହିପରି ମୋହିନୀ ମୋହନଙ୍କ ଦୁର୍ବଳ ସ୍ମୃତି ହେତୁ ଅନେକ ଭୁଲ୍ ତଥ୍ୟ ଦେଇଛନ୍ତି । ଅନ୍ୟ ଏକ ଆଶ୍ଚର୍ଯ୍ୟର କଥା ଯେ ଫକୀର ମୋହନଙ୍କ ସମ୍ବନ୍ଧୀୟ ଏହି ମିଥ୍‌ଗୁଡିକୁ ଅଧିକ ଉଜ୍ଜ୍ୱଳ କରିବା ପାଇଁ ପରବର୍ତ୍ତୀ ଗବେଷକମାନେ କାହିଁକି ଯେ ବ୍ୟଗ୍ର ତାହା ଜଣାପଡ଼େ ନାହିଁ । ଏହା ଯେ ଅନାବଶ୍ୟକ ସେଥିପ୍ରତି ଗବେଷକ – ବୁଦ୍ଧିଜୀବୀମାନେ ସଚେତନ ନୁହନ୍ତି ।



Source: Author, Digitized by PPRACHIN, SOA

ସାଆନ୍ତାଣିଙ୍କ ଗୋଟିଏ ବାକ୍ୟ, "ମୁଁ କହୁଚି ରାତି ହେଲାଣି, ଶୋଇପଡ଼, ଆଉ ସେ କଥାଗୁଡ଼ା ପାଞ୍ଚ ନାହିଁ।" ଏବଂ ମଙ୍ଗରାଜଙ୍କ ଅବଜ୍ଞା ସୂଚକ ଉତ୍ତର "ହୁଁ" ଭିତରେ ଉପନ୍ୟାସରେ ଆନ୍ତରୀଣ ଗଠନ ପ୍ରତିକ୍ରିୟା ସମାୟିତ।[୩] 'ଛମାଣ ଆଠଗୁଣ୍ଠ'ର ପ୍ରଥମ ସଂସ୍କରଣର ଭୂମିକାରେ ପ୍ରକାଶକ ମନ୍ତବ୍ୟ କରିଥିଲେ, "ଓଡ଼ିଶାରେ ଚିତ୍ତବିନୋଦନର ସୁପାଠ୍ୟ ଗଦ୍ୟ ପୁସ୍ତକ ନାହିଁ, ଏ ଅପବାଦ ଅନେକଙ୍କ ମୁଖରୁ ଶୁଣାଯାଏ। ଅନେକ ସ୍ଥଳରେ ଆମ୍ଭେମାନେ ଉଲ୍ଲିଖିତ ମର୍ମର ପ୍ରଶ୍ନଶୁଣି ଲଜ୍ଜାରେ କ୍ଷୋଭରେ ନତମସ୍ତକ ହୋଇରହିଅଛୁ। ଆମ୍ଭେମାନେ ଜାଣୁ, ବର୍ତ୍ତମାନ ନାଟକ, ଉପନ୍ୟାସ ଲେଖିବାର ପ୍ରବୃତ୍ତି ଅନେକଙ୍କ ମନରେ ଜାଗ୍ରତ ହୋଇଅଛି ଏବଂ ଏ ଶ୍ରେଣୀରେ କେତେଗୁଡ଼ିଏ ମୁଦ୍ରିତ ଓ ଅମୁଦ୍ରିତ ପୁସ୍ତକ ଆମ୍ଭମାନଙ୍କ ହସ୍ତଗତ ହୋଇଅଛି। ସେସବୁଥିରେ ପରିପକ୍ୱତା ଓ ସୂକ୍ଷ୍ମ ଦର୍ଶନର ପରିଚୟ ଅତି ଅଳ୍ପ ପାଇଅଛୁ। ଉପରେ ସାଧନା ଓ ଭୂୟୋପୋଦର୍ଶନ ନଥିଲେ ଯାହା ହୁଏ, ଏ କ୍ଷେତ୍ରରେ ତାହାହିଁ ଘଟିଅଛି। 'ଛ ମାଣ ଆଠଗୁଣ୍ଠ'ର ଲେଖକ ମହାଶୟ ଉତ୍କଳଭୂମିର ଜଣେ ଲବ୍ଧ ପ୍ରତିଷ୍ଠ ସୁପ୍ରଣୀତ 'ଛମାଣ ଆଠଗୁଣ୍ଠ' ତାହାର ଉଜ୍ଜ୍ୱଳ ପ୍ରମାଣ। ଏହା ଉତ୍କଳ ସାହିତ୍ୟ କ୍ଷେତ୍ରରେ ଚିତ୍ତବିନୋଦନ, ସୁପାଠ୍ୟ ଗଦ୍ୟ ପୁସ୍ତକର ଅଭାବ କିୟତ ପରିମାଣରେ ପୂର୍ଣ୍ଣ କରିବ। 'ଉତ୍କଳ ସାହିତ୍ୟ'ରେ ଖଣ୍ଡକାରରେ ପ୍ରକାଶିତ ହେଉଥିବା ସମୟରେ ପ୍ରାୟ ସକଳ ଶ୍ରେଣୀର ପାଠକଗଣ ଏଥିପ୍ରତି ଅତ୍ୟନ୍ତ ଅନୁରାଗ ପ୍ରଦର୍ଶନ କରିଥିବାର ଆମ୍ଭେମାନେ ଜାଣିଅଛୁ। ଏହା ମଧ୍ୟ ଆମ୍ଭମାନଙ୍କୁ ଏ ପୁସ୍ତକ ପ୍ରକାଶ କରିବା ବିଷୟରେ ସମୁତ୍ସାହିତ କରିଅଛି।(୨୫.୬.୧୯୦୨)[୪]

ଫକୀରମୋହନ ନିଜେ ଜାଣିଥିଲେ ଏବଂ ତାଙ୍କର ଆତ୍ମବିଶ୍ୱାସ ମଧ୍ୟ ଥିଲା ଯେ 'ଛମାଣ ଆଠଗୁଣ୍ଠ' ଉଭୟ ଓଡ଼ିଆ ଭାଷା ଓ ସାହିତ୍ୟରେ ଏକ ନୂତନ ଧାରା ସୃଷ୍ଟି କରିଛନ୍ତି। କିନ୍ତୁ ତତ୍‌କାଳୀନ ବୁଦ୍ଧିଜୀବୀମାନେ କବିତାର ଭାବ ରାଜ୍ୟରେ ବିଚରଣ କରୁଥିଲେ। ତେଣୁ ଫକୀରମୋହନ ଉତ୍କୃଷ୍ଟ ଗଦ୍ୟ ରଚନା ଓ ତାର ଶୈଳୀ ପ୍ରତି କେହି ଧ୍ୟାନ ଦେଇନାହାନ୍ତି କିମ୍ବା ସେ ସଂପର୍କରେ ସାମୟିକ ଆଲୋଚନାରେ ବ୍ରତୀ ହୋଇନାହାନ୍ତି। ଏପରିକି ଶ୍ରେଷ୍ଠ ଉପନ୍ୟାସ ହୋଇମଧ୍ୟ ଛମାଣ ଆଠଗୁଣ୍ଠ ଦ୍ୱିତୀୟ ସଂସ୍କରଣ ପାଇଁ ଅପେକ୍ଷା କରିଛି ଦୀର୍ଘ ୧୪ବର୍ଷ। କିନ୍ତୁ ଆଶ୍ଚର୍ଯ୍ୟର କଥା ୧୮୯୩ରେ ପ୍ରକାଶ ପାଇଥିବା ଦ୍ୱିତୀୟ ଉପନ୍ୟାସ 'ମାମୁଁ'ର ଦ୍ୱିତୀୟ ସଂସ୍କରଣ ସ୍ୱଳ୍ପ ସମୟ ମଧ୍ୟରେ ଘଟିଛି। ଏପରି ହେବାର କାରଣ ପଛରେ ଯେଉଁ ଲୁକ୍କାୟିତ ସତ୍ୟଟି କାର୍ଯ୍ୟ କରିଛି ତାହାହେଲା ଶାସ୍ତ୍ରାୟଣ।

ଗ୍ରନ୍ଥାୟନ ଓ ଶାସ୍ତ୍ରାୟଣ ଦୁଇଟି ପ୍ରକ୍ରିୟା ସର୍ବଦା ସ୍ରଷ୍ଟା ଓ ସମୀକ୍ଷକର ଅବଚେତନ ମନର ପରିପ୍ରକାଶ। 'ଛମାଣ ଆଠଗୁଣ୍ଠ'ର ଗ୍ରନ୍ଥାୟନ କପୋଳକଳ୍ପିତ ନୁହେଁ। ଫକୀରମୋହନ ଢୋମପଡ଼ାରେ ଏକ ବର୍ଷ ପାଇଁ ଦେବାନ ପଦରେ ଅବସ୍ଥାପିତ ଥିବା ସମୟରେ (୧୮୭୬) ସେଠା ଜମିଦାର ମଙ୍ଗରାଜଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲେ।



Source: Author, Digitized by PPRACHIN, SOA

ଉକ୍ତ ମଙ୍ଗରାଜଙ୍କ କାର୍ଯ୍ୟକଳାପକୁ ଗମ୍ଭୀକରଣ ସହିତ ମୁଖ୍ୟ ଚରିତ୍ର ଭାବେ ଛମାଣ ଆଠଗୁଣ୍ଠରେ ଚିତ୍ରିତ କରିଛନ୍ତି । ଏହି ଉପନ୍ୟାସର ରଚନା କାଳରେ ଫକୀରମୋହନ ଚାହିଁଛନ୍ତି ତାଙ୍କୁ ଲୋକପ୍ରିୟ କରାଇବା ଲାଗି । ତେଣୁ ୧.୧୦.୧୮୯୮ ମସିହାରେ ଫକୀର ମୋହନ ଉତ୍କଳ ଦୀପିକାରେ 'ଦାଶରଥି ଓ ପଦ୍ମନାଭ' କଥନ ଛ ମାଣ ଆଠଗୁଣ୍ଠର ୧୯ଶ ପରିଚ୍ଛେଦ (ପୁଲିସ ତଦାରଖ)ର ପରିସମାପ୍ତି ଘଟିଛି । ତିନି ମାଣ ସାତ ଗୁଣ୍ଠ ନାମକ ଅନ୍ୟ ଏକ ସମାଲୋଚନା ମଧ୍ୟ ପ୍ରକାଶିତ ହୋଇଛି ୨୯.୦୪.୧୮୯୮ରେ । ଏଥିମଧ୍ୟରେ ଛମାଣ ଆଠଗୁଣ୍ଠର ୨୬ଟି ପରିଚ୍ଛେଦ ପ୍ରକାଶିତ । ଏହାପରେ ଶ୍ରୀଯୁକ୍ତ ଦୈତାରୀ କର ୪.୧୦.୧୮୯୮ରେ ସମ୍ବଲପୁର ହିତୈଷିଣୀରେ 'ଛ'ମାଣ ଆଠଗୁଣ୍ଠ' ସଂପର୍କରେ ନିଜର ମତାମତ ଦିଅନ୍ତି । ୧୮୯୯ ଜାନୁଆରୀଟି 'ରେବତୀ' ଗଳ୍ପର ପ୍ରଚାର ପାଇଁ ଫକୀରମୋହନ ଯେଉଁ ସମାଲୋଚନାଟି ରଚନା କରିଥିଲେ ସେଥିରେ ମଧ୍ୟ ଛମାଣ ଆଠଗୁଣ୍ଠ ସଂପର୍କରେ ଚର୍ଚ୍ଚା କରିଛନ୍ତି । ଏହି ସମାଲୋଚନାର ପିତୃତ୍ୱ ଏବଂ ସେଥିରେ ଇଙ୍ଗିତ ଘଟଣାବଳୀକୁ ଏକ ଐତିହାସିକ ପରିପ୍ରେକ୍ଷୀରେ ଡ.କୈଳାଶ ପଟ୍ଟନାୟକ ଆଲୋଚନା କରିଥିବାବେଳେ ଏହି ସମାଲୋଚନାର ସମୟଗତ ଆନ୍ତରୀଣ ଭାବ ପ୍ରତି ଧ୍ୟାନ ଦେଇନାହାନ୍ତି – ତାହା ହେଲା ସାରିଆର ଝିଅ ରେବତୀ ପ୍ରସଙ୍ଗ । ସାରିଆର ମୃତ୍ୟୁ ଘଟେ ଆଶ୍ୱିନ ମାସରେ (୧୮୯୮) ତାର ପରମାସ କାର୍ତ୍ତିକ (୧୮୯୮)ରେ ରେବତୀର ମୃତ୍ୟୁ ଘଟେ । ଟ୍ରାଜେଡ଼ି ଆମକୁ ଅତଳ ଦୁଃଖ, ବିଶାଦ ଭିତରକୁ ଟାଣି ନେଇଥିଲେ ମଧ୍ୟ ପାଠକ ହୃଦୟରେ କାଥାରସିସ୍ ମାଧ୍ୟମରେ ପ୍ରଶାନ୍ତ ଭାବ ସୃଷ୍ଟିକରିଥାଏ । ସେଇ ନ୍ୟାୟରେ ଫକୀରମୋହନ ଦୁଇ ଦୁଇଟି ଦୁଃଖଦ ଘଟଣା ଘଟେଇ ପାଠକୀୟ ସହାନୁଭୂତି ଉଦ୍ରେକ କରାଇଛନ୍ତି । ଶ୍ରୀଯୁକ୍ତ ଦେବେନ୍ଦ୍ର ଦାଶ, କୈଳାଶ ପଟ୍ଟନାୟକ, ଲକ୍ଷୀକାନ୍ତ ତ୍ରିପାଠୀ, ସ୍ମରଣ ନାଏକ ପ୍ରଭୃତି ଗବେଷକମାନେ ଏହି ସମାଲୋଚନାର ପିତୃତ୍ୱର ଅଧିକାରୀ ଫକୀରମୋହନ ବୋଲି ମାନି ନେଇଛନ୍ତି । ଛମାଣ ଆଠଗୁଣ୍ଠର ସମସାମୟିକ ସମାଲୋଚନାର ଶେଷ ପର୍ବରେ ଆମେ ଦେଖୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ସେପ୍ଟେମ୍ବର ୧୯୦୨ରେ ଉତ୍କଳ ସାହିତ୍ୟରେ ପ୍ରକାଶିତ 'ଦୁଇଖଣ୍ଡି ଓଡ଼ିଆ ପୁସ୍ତକ' ଶୀର୍ଷକ ସମାଲୋଚନାରେ । ଏହି ସମାଲୋଚନାରେ ଶ୍ରୀଯୁକ୍ତ ପ୍ରହରାଜ 'ଛ'ମାଣ ଆଠଗୁଣ୍ଠ' ଏବଂ 'ରାମଶଙ୍କର ରାୟଙ୍କ ନାଟକ 'ଯୁଗଧର୍ମ' ସଂପର୍କରେ ଏକ ସମାନ୍ତରାଳ ମତ ପ୍ରଦାନ କରିଥିଲେ ମଧ୍ୟ 'ଛମାଣ ଆଠଗୁଣ୍ଠ' ଅପେକ୍ଷା ଯୁଗଧର୍ମକୁ ଏକ ଶ୍ରେଷ୍ଠ ରଚନା ବୋଲି ଅଭିହିତ କରିଛନ୍ତି । 'ଛମାଣ ଆଠଗୁଣ୍ଠ' ପ୍ରତି ଏକ ପ୍ରଚ୍ଛନ୍ନ ସାହିତ୍ୟ ରୁଚି ଏବଂ ଶାସ୍ତ୍ରାୟଣ କେଉଁ ରୂପରେ ପ୍ରକାଶ ପାଇଥାଏ ତାହା ବିଚାର୍ଯ୍ୟ । ଏହି ପରିପ୍ରେକ୍ଷୀରେ ଛମାଣ ଆଠଗୁଣ୍ଠର ୫ଟି ସମସାମୟିକ ସମାଲୋଚନାର ମୂକ ରୂପ ଦିଆଯାଇପାରେ ।

ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ସମୟାନୁକ୍ରମିକ ପରିଚ୍ଛେଦ ।



Source: Author, Digitized by PPRACHIN, SOA

ବି.ଦ୍ର. : ଉତ୍କଳ ସାହିତ୍ୟ ନିୟମିତ ରୂପେ ପ୍ରକାଶ ପାଉନଥିଲେ ସୁଦ୍ଧା ପତ୍ରିକାର ପରିପୂର୍ଣ୍ଣତା ପାଇଁ ବାରଟି ସଂଖ୍ୟାର ଉଲ୍ଲେଖ କରାଯାଉଥିଲା ।

(କ) (୧,୨,୩) ପରିଚ୍ଛେଦ, କାର୍ତ୍ତିକ, ୧୩୦୫, (୧.୧୦.୧୮୯୬) - ରାମଚନ୍ଦ୍ର ମଙ୍ଗରାଜ, ସ୍ୱନାମ ପୁରୁଷୋଧନ୍ୟଃ, ବାଣିଜ୍ୟେ ବସତେ ଲକ୍ଷ୍ମୀସତର୍ଦ୍ଧଂ କୃଷି କର୍ମଣି ।

(ଖ) (୪,୫) ପରିଚ୍ଛେଦ, ମାର୍ଗଶୀର, ୧୩୦୫, (୧.୧୧.୧୮୯୬୦ - ଚାଷ ତଦାରଖ, ମଙ୍ଗରାଜଙ୍କ କୁଟୁମ୍ବ, ଚମ୍ପା ।

(ଗ) (୬,୭,୮) ପରିଚ୍ଛେଦ, ପୌଷ, ୧୩୦୫ (୨.୧.୧୮୯୭)- ବୁଢ଼ୀମଙ୍ଗଳା, ଜମିଦାର ସେଖ୍ ଦିଲଦାର ମିଆଁ ।

(ଘ) (୯,୧୦,୧୧) ପରିଚ୍ଛେଦ, ଚୈତ୍ର୍ୟ, ୧୩୦୫ (୨.୩.୧୮୯୮) - ଗାଁର ହାଲଚାଲ, ଭଗିଆ ଆଉ ସାରିଆ, ଗୋବରା ଜେନା ।

(ଙ) (୧୨) ପରିଚ୍ଛେଦ, ଚୈତ୍ର୍ୟ, ୧୩୦୫ (୨.୩.୧୮୯୮)-ଅସୁରଦୀଘି ।

(ଚ) (୧୩) ପରିଚ୍ଛେଦ, ଜ୍ୟେଷ୍ଠ, ୧୩୦୫ (୨.୫.୧୮୯୮)- ହିତୋପଦେଶ ।

(ଛ) (୧୪) ପରିଚ୍ଛେଦ, ଆଷାଢ଼, ୧୩୦୫ (୨.୬.୧୮୯୮)- ମନ୍ତ୍ରଣା ।

(ଜ) (୧୫,୧୬,୧୭) ପରିଚ୍ଛେଦ, ଶ୍ରାବଣ, ୧୩୦୫ ସ (୨.୭.୧୮୯୮) – ବାଘସିଂହ ବଂଶ, ଟାଙ୍ଗୀମାଉସୀ, କିପରି ଘର ପୋଡ଼ିଲା ।

(ଝ) (୧୮) ପରିଚ୍ଛେଦ, ଭାଦ୍ର, ୧୩୦୬ (୨.୮.୧୮୯୮) ସାଆନ୍ତାଣୀ ।

(ଞ) (୧୯) ପରିଚ୍ଛେଦ, ଆଶ୍ୱିନ, ୧୩୦୬ (୨.୯.୧୮୯୮) – ପୁଲିଶ ତଦାରଖ ।

(ଟ) (୨୦,୨୧) ପରିଚ୍ଛେଦ, ମାର୍ଗଶିର, ୧୩୦୬ (୨.୧୧.୧୮୯୮) - ଓକିଲ ରାମଚନ୍ଦ୍ର ଲାଲ, କଟକ ସେସନ୍ ଜଜ୍ କୋର୍ଟ ।

(ଠ) (୨୨) ପରିଚ୍ଛେଦ, ପୌଷ, ୧୩୦୬) (୨.୧୨.୧୮୯୮)-ଗୋପୀସାହୁ ଦୋକାନ ଘର ।

(ଡ) (୨୩,୨୪) ପରିଚ୍ଛେଦ, ମାଘ, ୧୩୦୬ (୩.୧.୧୮୯୯)- କର୍ମଫଳ, ଖୁଣି ତଦାରଖ ।

(ଢ) (୨୫,୨୬) ପରିଚ୍ଛେଦ, ଫାଲଗୁନ, ୧୩୦୬ (୩.୨.୧୮୯୯) - ମଙ୍ଗରାଜ ଘରର ହାଲଚାଲ, ବାବାଜୀ ଲଳିତା ଦାସ ।

(ଣ) (୨୭) ପରିଚ୍ଛେଦ, ଜ୍ୟେଷ୍ଠ- ଆଷାଢ଼, ୧୩୦୬ (୩/୫-୧୮୯୯) ଅପୂର୍ବ ମିଳନ ।

(ତ) (୨୮) ପରିଚ୍ଛେଦ, ଶ୍ରାବଣ, ୧୩୦୬ (୩.୭.୧୮୯୯) ଉପସଂହାର ।



Source: Author, Digitized by PPRACHIN, SOA

## ସମାଲୋଚନା -୧

ମହାଶୟ,

ଦାଶରଥି ଓ ପଦ୍ମନାଭଙ୍କର ସାହିତ୍ୟିକ କଥୋପକଥନ ।

ଦାଶ - ଉତ୍କଳ ସାହିତ୍ୟରେ "ଛମାଣ ଆଠଗୁଣ୍ଠ" ପଢ଼ିଚ ?

ପଦ୍ମନାଭ - ହଁ ପଢ଼ିଚି । ବଡ଼ ଚମତ୍କାର ହେଇଚି ।

ଦାଶ - ଲେଖକ କିଏ ଜାଣ ?

ପଦ୍ମନାଭ - ନା, ତୁମେ ଜାଣ କି ?

ଦାଶ - ହଁ, ଜାଣେ ଯେ ଅନୁମାନ ପ୍ରମାଣରେ ।

ପଦ୍ମ - କିଏ କହିଲ ?

ଦାଶ - ସେ ତ' ନାମ ଲୁଚାଇଛନ୍ତି, ମୁଁ କିପରି କହିବି ।

ପଦ୍ମ - ତାଙ୍କ ନାମ ପରା ଧୂର୍ଜଟୀ ?

ଦାଶ - ସେଟା ଗୋଟେ ଢ଼ାଙ୍କୁଣୀ ।

ପଦ୍ମ - ଢାଙ୍କୁଣୀ କାଇଁକି ?

ଦାଶ - ଲୁଚି କରି ସାଧାରଣ ମତ ଜାଣିବାକୁ ।

(ଶାସ୍ତ୍ରାୟଣ ପ୍ରତିକ୍ରିୟା ଅନ୍ୟ ଏକ ରୂପ)

ପଦ୍ମ - ପ୍ରବନ୍ଧଟି ଯେତେବେଳେ ଚମତ୍କାର ହେଇଚି ସେତେବେଳେ ପ୍ରକୃତ ଲେଖକଙ୍କୁ ଜାଣି ତାଙ୍କୁ ଭକ୍ତି କରିବାକୁ ମନ ହଉଚି । ଓଡ଼ିଶାରେ ଏପରି ଶ୍ରେଣୀ ଲେଖକ ଅତି ଅଳ୍ପ ।

ଦାଶ - ପ୍ରକୃତ ସତ, ତେବେ କହିବି କିନ୍ତୁ ଠାରାଠାରିରେ ।

ପଦ୍ମ - କ'ଣ କହିଲ ?

ଦାଶ - "ଛ ମାଣ ଆଠଗୁଣ୍ଠ"ର ଅର୍ଥ "ଛ" ଫୁଟ ଆଠଇଞ୍ଚ ।

ପଦ୍ମ - ଛ'ଫୁଟ ଆଠଇଞ୍ଚ କ'ଣ ?

ଦାଶ - ମୁଁ ଫୁଟ ଇଞ୍ଚ କିଛି ବୁଝିପାରୁ ନାହିଁ, ମଫସଲିଆ ଲୋକ, ମତେ ବଳଦିଆ ହିସାବରେ ବୁଝାଇ ଦିଅ ।

ଦାଶ - ଛ ଫୁଟ ଆଠ ଇଞ୍ଚର ମନୁଷ୍ୟଟି କେତେ ଲମ୍ୱ ହେବ ସମୁଜି ପାରେନା ?

ପଦ୍ମ - ନା ।

ଦାଶ - ତାଳଗଛ ଦେଖିଛ ତ ।

ପଦ୍ମ - ହଁ, ଦେଖିଚି ।

ଦାଶ - "ଛ ଫୁଟ ଆଠ ଇଞ୍ଚ" ଠିକ୍ ମଧ୍ୟ ତାଳଗଛ ।

ପଦ୍ମ - ତେବେ ଲେଖକମାନଙ୍କ ମଧ୍ୟରେ ଅଧା ତାଳଗଛ ପରି ଉଚ୍ଚତା କାହାର ହେବ ?



Source: Author, Digitized by PPRACHIN, SOA

ଦାଶ -- ଅଧା ତାଳଗଛ ତମରି -

ପଦ୍ମ - (ଅତି ଆନନ୍ଦରେ କର ତାଳଦେଇ) ହଁ ହଁ ଜାଣିଲି ।

ଦାଶ - କହିଲ ?

ପଦ୍ମ - ଅଧାତାଳ ଗଛ ତମରି ...

ଦାଶ - Character Study କରିଅଛି ସେ ନିପୁଣ ।

ପଦ୍ମ - ସେ ନୋଇଲେ ପୁଣି ଏପରି କିଏ ଲେଖକ ହେବ ? ହେ ଲେଖକ-ମହୋଦୟ ! ଶରୀରରେ ଦୀର୍ଘଜୀବୀ ହୋଇଥାଅ । ଆପଣ ଉତ୍କଳ ସାହିତ୍ୟାକାଶରେ ଗୋଟିଏ ଅତି ଉଜ୍ଜ୍ୱଳ ନକ୍ଷତ୍ର । ଆପଣଙ୍କୁ ମୋର ଅଶେଷ ଭକ୍ତିପୂର୍ଣ୍ଣ ନମସ୍କାର (ଉତ୍କଳ ଦୀପିକା-ଅକ୍ଟୋବର-୧ ତାରିଖ ୧୮୯୮)

## ସମାଲୋଚନା -୨

ମୋହନ - ରେବତୀ କି ଦେଖିଚ ?

ଶଙ୍କର - ରେବତୀ କିଏ ?

ମୋହନ - ରେବତୀ ଗୋଟିଏ ଦୁଇତିନିମାସିଆ ଝିଅ ।

ଶଙ୍କର - କାହା ଝିଅ ?

ମୋହନ - ସାରିଆ ଭଉଣୀ ।

ଶଙ୍କର - କାହା ଝିଅ ?

ମୋହନ - ତାର ଗୋଟିଏ ଭାଇ ନାଁ - ଛମାଣ ଆଠଗୁଣ୍ଠ ।

ଶଙ୍କର - ମୁଁ ପଚାରୁଛି କାହା ଝିଅ, ନା ଛମାଣ ଆଠଗୁଣ୍ଠ ।

ମୋହନ - ରେବତୀ ବାପ ଗସ୍ତ କରିବାବାଲା ।

ଶଙ୍କର - କିଏ ମ ? କେଉଁଠି ଗସ୍ତ କରନ୍ତି ?

ମୋହନ - ଓଡ଼ିଶା ଗସ୍ତ କରିଛନ୍ତି ? ପୁଣି ଦକ୍ଷିଣାପଥ ଗସ୍ତ କରିବେ ପରା ।

ଶଙ୍କର - ସେ କିଏ ?

ମୋହନ - ସେ ବାଲ୍ମୀକି ।

ଶଙ୍କର - ତମରତ ସେ ସ୍ୱଭାବ । ଗୋଟିଏ କଥା ପଚାରିଲେ, କେଉଁ ସିଧାସଳଖ ଉତ୍ତର ଦେବନାହିଁ ।

ମୋହନ - ସେ ଓଡ଼ିଆ ବାଲ୍ମୀକି ମ ।

ଶଙ୍କର - କହ, କହ ରେବତୀ କାହା ଝିଅ ?

ମୋହନ - ଶ୍ୟାମବନ୍ଧୁ ମହାନ୍ତି ଝିଅ ।

ଶଙ୍କର - ଶ୍ୟାମବନ୍ଧୁ ମହାନ୍ତି କିଏ ?

ବି:ଦ୍ର - ବାଲ୍ମୀକି : ରାମାୟଣ ଅନୁବାଦକ ଫକୀର ମୋହନ



Source: Author, Digitized by PPRACHIN, SOA

ମୋହନ - ତାଙ୍କ ଘର ପାଟପୁର ମୌଜାରେ, ସେ ଜଣେ ଜମିଦାରୀ ଗୁମାସ୍ତା ।

ଶଙ୍କର - କଉଁ ପାଟପୁର ? ଆମ ଅଳସୁଆ ପାଟପୁର ନା ?

ମୋହନ - ହରିହରପୁର ପାଟପୁର । ଅଳସୁଆ ପାଟପୁରତ ବାଲେଶ୍ୱରରେ ।

ଶଙ୍କର - ଏ ପାଟପୁର କଅଣ ବାଲେଶ୍ୱରରେ ନୁହେଁ କି ?

ମୋହନ - ହଁ ହଁ ରେବତୀ ବାପ ବି ବାଲେଶରିଆ, ତାଙ୍କ ଘର ଗୁପାଳପୁରର ଦକ୍ଷିଣ ଆଡ଼କୁ ଗୁଡିପୁଖରୀ ନିକଟରେ; ଗୁବିନ୍ଦବାବୁଙ୍କର ତାଙ୍କର ଭାରି ଭାବ ।

ଶଙ୍କର - କଅଣ ଗୁଡାଏ କହୁଛ ?

ମୋହନ - ହଇ ହେ ରେବତୀ କି ଦେଖିବ, ଦେଖିବ ?

ଶଙ୍କର - କଅଣ, ଅନ୍ତୁଡିଶାଳରୁ ଉଠେଇ ଆଣିଛ କି ?

ମୋହନ - ହଁ, ଦେଖାଉଛି ।

* * *

ଶଙ୍କର - ହଁ ଦେଖିଲି ।

ମୋହନ - ଦେଖିଲ ? କିପରି ?

ଶଙ୍କର - ବେସ୍ ବହି ଖଣ୍ଡିଏ । ଧୂର୍ଜଟୀ ବେସ୍ ଲେଖକ ।

ମୋହନ - ଆଉ ?

ଶଙ୍କର - କିନ୍ତୁ - ଏତିକିରେ ଶେଷ କରିଦେଲ ।

ମୋହନ - ଆଉ କେତେ ହୁଅନ୍ତା କି ?

ଶଙ୍କର - ରେବତୀ ଷ୍କଟଙ୍କ ରେବେକା ପରି, କିମ୍ବା ଦ୍ୱିତୀୟଚନ୍ଦ୍ରର ଦୁର୍ଗେଶନନ୍ଦିନୀ ପରି ଖଣ୍ଡିଏ ହୋଇଥାନ୍ତି କି । ଏ ତ ଦଣ୍ଡକେ ସରିଗଲା ।

ମୋହନ - ଲେଖକ ବଡ଼ ଚତୁର । ଦେଶ କାଳ ପାତ୍ର ଜ୍ଞାନ ତାଙ୍କଠିଁ ଖୁବ୍ ଅଛି । ବାଲ୍ମୀକି ରୂପରେ ଅବତୀର୍ଣ୍ଣ ହେବାରୁ ସବୁଘରକୁ ଯାଇପାରିଲେ ନାହିଁ । କେବଳ ଭାଗବତ ଘରେ ରୁଦ୍ଧ ହୋଇ ରହିଲେ, ହେରଡଟସ୍ ରୂପ ଧାରଣ କରିବାରୁ ତାଙ୍କୁ କିଛି କାଳ ଛାତ୍ରବୃତ୍ତିକୁ ଦେଇ, ପଶ୍ଚାତ୍ ଛାପାଖାନାରେ ସଡ଼ାଇଲେ; ସେଠୁ କିଛି ନୀରବ ହୋଇ ପ୍ରଚ୍ଛନ୍ନ ଫକୀରବେଶରେ ଗସ୍ତ କରି ଗସ୍ତଲବ୍ଧ ଜ୍ଞାନବଳରେ ନବନିର୍ମିତ ଗୃହରେ ଧୂର୍ଜଟୀରୂପେ ରେବତୀକୁ ଜନ୍ମଦାନ କଲେ । ରେବୀ ପ୍ରତି ସାଧାରଣଙ୍କ ଆଦର ଦେଖିଲେ ଆଉ ଗସ୍ତ କରି ରେବୀର ଭାଇ ଭଉଣୀ ଗୁଡିକୁ ପଦାକୁ ବାହାର କରିବେ ।

ଶଙ୍କର - ଆଛା, ସବୁଗୁଡିକ ମାରିପକାଇଲେ କାହିଁକି ? ବଡ଼ ନିଷ୍ଠୁର ଲୋକ; ଜଣକୁ ସୁଦ୍ଧା ତାଙ୍କ ସାନଭାଇ ମଧୁଡାକ୍ତରଙ୍କ ଔଷଧ ଖୁଆଇ ବଞ୍ଚାଇ ପାରିଲେ ନାହିଁ ?

ମୋହନ - ମାଳୀ ସାହିରେ ଓଲଉଠା ହେବାରୁ ଭୋବନୀ ବିଶ୍ୱାଳ ଘରେ ସାତ ପ୍ରାଣୀ ଯାକ ଯେ ଏକାଦିନେ ମରିଗଲେ ।

ଶଙ୍କର - ହଁ, ସେ ଏ ସମାନ, ନୁହେଁ ? ହଉ, ରେବତୀର କି ଦୋଷ ଯେ ସେ ମଲା ?



Source: Author, Digitized by PPRACHIN, SOA

ବାସୁଦେବ ତ ବଡ଼ି ନିରୀହ ଲୋକ ?

ମୋହନ - ଠିକ୍ ଏକାଡ଼େମୀର ମାଷ୍ଟର ଜୀବନବାବୁ, ହରିକୃଷ୍ଣ ବାବୁ ଦିପୋଟି, ଦାମୋଦର ପୁରର ରଘୁନାଥ ଭୂୟାଁ, ଏଗୁଡ଼ିକ ସେମିତି ଭଲ ଲୋକ ଥିଲେ ।

ଶଙ୍କର - ଆଉ, ସେ ସବୁକଥା ଗଲା । କିନ୍ତୁ ଲେଖକ ପ୍ରାଚୀନତା ପ୍ରିୟ, ତାଙ୍କର ଉଦରତା ନାହିଁ ।

ମୋହନ - ଓଆଜୀବ୍ । ତାଙ୍କ ମୁଣ୍ଡବାଳ ଗୋଟିଏ ଗୋଟିଏ ପାଚି ଆସିଲାଣି । ଲେଖନୀଟା ବି ପାରିଆସିଲାଣି, ଆଉ ତାଙ୍କର ଧାର ନାହିଁ ।

ଶଙ୍କର - ବାଃ,ବଡ଼ ବାହାଦୂର, ରାୟ ବାହାଦୂର ତୁମକୁ ଭାରି ଶରଦି ହେଇଛି, ଜଣାଗଲା । ଆଚ୍ଛା, ତାଙ୍କ ମତଟା ସଂକୀର୍ଣ୍ଣ ନୁହେ ? ସେ ଆଧୁନିକ ସ୍ତ୍ରୀଶିକ୍ଷାର ବିରୋଧୀ; ନୁହେଁ ?

ମୋହନ - ହଁ ; ମୁଁ ମଧ୍ୟ ପ୍ରଥମେ ସେୟା ବୁଝି କାର୍ଯ୍ୟବିଧିର ଦଫା ୨୫୦ ଅନୁସାରେ କୈଫିୟତ ତଲବ କରିଥିଲି କି ସେ ପିନାଲକୋଡ ଦଫା ୫୧୨ ଓ ୫୧୩ ଅନୁସାରେ କି ନିମନ୍ତେ ଅଭିଯୁକ୍ତ ନ ହେବେ, କେବେହେଲେ ଏହାର ସନ୍ତୋଷଜନକ ହେତୁ ଦର୍ଶାଇବେ । ତାଙ୍କ କୈଫିୟତ ପାଇବା ପୂର୍ବରୁ ଉଦାରତା ଗୁଣରେ ମୁଁ ନିଜେ ଗୋଟିଏ କୈଫିୟତ ଲେଖିଥିଲି ; ଦିନେ ହରିହର ତୀର୍ଥରେ ତାଙ୍କ ସହିତ ମୁଲାକାତ ହେବାରେ ତାଙ୍କ ପ୍ରଶ୍ନରେ ତାଙ୍କର ସମ୍ଭାବ୍ୟ ଉତ୍ତର ପରତାଳ କରିବାରେ ପ୍ରଥମ ଦିଓଟିର ମେଳ ସତ୍ୟ ସାବ୍ୟସ୍ତ ହେଲା । ତୃତୀୟଟିକି ଫଲଗୁନଦୀକି ଫେରାର୍ କରାଗଲା ।

ଶଙ୍କର - ବେସ୍ ବୁଝିଲି । ଆଚ୍ଛା ସମସ୍ତେ ମଲେ, ଅଶୌଚ ପାଳିଲା କିଏ ? ବୁଢ଼ୀ ଆଉ ରେବତୀକି ନିଆଁ ଦେଲା କିଏ ?

ମୋହନ - ଅଶୌଚ ଘେନିଲା ଲାଟ୍ କାଉନସିଲ । ଡୁଗୁରୀ ରେବୀକି ଚୁହ୍ଲା ନିଆଁଦେଇ ସାଙ୍ଗେ ସାଙ୍ଗେ ଆପଣା ମୁହଁରେ ନିଆଁଦେଲା ।

ଲେଖକ - ପାଠକ ଅବଧାନ ! ସାବଧାନ, ଶେଷ ପଂକ୍ତିଟି ମନେ ମନେ ପଢ଼ିବା ହେବେ ।

୧୮୯୯- ଜାନୁଆରୀ, ଉତ୍କଳ ସାହିତ୍ୟ

## ସମାଲୋଚନା -୩

ତିନିମାଣ ସାତ ଗୁଣ୍ଠ (ପ୍ରାପ୍ତ)

"ଉତ୍କଳ ସାହିତ୍ୟ"ରେ "ଛମାଣ ଆଠଗୁଣ୍ଠ" ପାଠକରୁ କରୁ ଆମ୍ଭେମାନେ ''ତିନିମାଣ ସାତଗୁଣ୍ଠ" ପ୍ରତ୍ୟକ୍ଷ ଦେଖିବୁ ବୋଲି ଭାବି ନଥିଲୁ । ଧୁମାତ୍ ଶାସନ ଗୋଟିଏ ସମୃଦ୍ଧିଶାଳୀ ଗ୍ରାମ । ବନମାଳୀ ଶତପଥୀ ସେହି ଗ୍ରାମର ଜଣେ ନୈଷ୍ଠିକ ବାହ୍ମଣ । ଆଠ



Source: Author, Digitized by PPRACHIN, SOA

ଅଙ୍କରେ ଅନାବୃଷ୍ଟି ହେତୁରୁ ଯେତେବେଳେ ଚାରିଆଡ଼େ ହାହାକାର ପଡିଲା, ଶତପଥୀ ଯଜ୍ଞ କରିବାରୁ ଅଶ୍ରାଏ ମେଘ ବର୍ଷିଗଲା । ତଦ୍ୱାରା କୃଷି ରକ୍ଷା ନ ହେଲେ ହେଁ ଶତପଥୀ ଯଜ୍ଞ କରିବାରୁ ଅଶ୍ରାଏ ମେଘ ବର୍ଷିଗଲା । ଶତପଥୀଙ୍କର ଯେ କରାମତି ଅଛି ତାହା ଲୋକେ ବୁଝିପାରିଲେ । ଶତପଥୀଙ୍କର ଖୁଲ୍ୟତାତ ଦାଶରଥିଙ୍କ ଘର ଶତପଥୀଙ୍କ ଘରଠାରୁ ଦଶହାତ ହେବ । ଦାଶରଥିଙ୍କର କିଛି ବାହେଲି ଲାଖରାଜ ଜମିଗଲା । ତହିଁ ମଧ୍ୟରୁ କେତେକ ଗବାଏତ, କେତେକ ଖାନାବାରି, ଅବଶିଷ୍ଟ ଶାରଦ ଜମି । ବେଉଷଣ ନକଲେ ସୁଦ୍ଧା ତିନି ଭରଣ ଫଳେ । ମୋଟରେ ତାହା ନିତିମାଣ ସାତଗୁଣ୍ଠ ।

ଆନ୍ଦାଜ କୋଡିଏ ବର୍ଷ ହେବ ଦାଶରଥିଙ୍କର ମୃତ୍ୟୁ ହେଲା । ସେ ଅପୁତ୍ରିକ, ଗୋଟିଏ ମାତ୍ର ଝିଅ ଥିଲା । ବିଧବା ପତ୍ନୀ କୌଶଲୀର ଆଉ କେହି ସମ୍ବଳ ନଥିଲା । ଦାଶରଥିଙ୍କର ମୃତ୍ୟୁର କିଛିଦିନ ଉତ୍ତାରେ ବାହେଲି ଜମି ଦାଖଲ ଖାରଜ ହେବାର ହୁକୁମ ଜାରି ହେଲା । ଚାରିଆଡ଼େ ସାତ ଆଇନ ଗପ । ଶତପଥୀ ଦେଖିଲେ କୌଶଲୀ ଯଦି ଏ ସମୟରେ ଆପଣା ନାମା ଦାଖଲ ଖାରଜ କରାଇ ନିଏ ତେବେ ଆଏନ୍ଦାକୁ ଆଉ ବାଟ ରହିବ ନାହିଁ । ଗୋଟିଏ ଦୁର୍ବଳମନା, ସହାୟ ବିହୀନ ସ୍ତ୍ରୀ ଲୋକକୁ ବଶୀଭୂତ କରିବା ନିମନ୍ତେ ଯେତେ ଉପାୟ ପ୍ରୟୋଜନ ଶତପଥୀ ତଦପେକ୍ଷା ଚତୁର୍ଗୁଣ ଉପାୟ ଅବଲମ୍ବନ କଲେ । ସେ ଫାନ୍ଦ ସାମାନ୍ୟ ନୁହେଁ । କୌଶଲୀର ବୁଦ୍ଧି କେତେ ଯେ ସେ ତାହା ଏଡି ଦିଅନ୍ତା ? ଅବଶେଷରେ କୌଶୁଲୀ ସମ୍ମତି ଅନୁସାରେ ସେ ତିନିମାଣ ସାତଗୁଣ୍ଠ ଶତପଥୀଙ୍କ ନାମରେ ଫଏସଲା ହେଲା । ଶତପଥୀ ଅଙ୍ଗୀକାର କଲେ ସେ ଜମିରେ ଧାନ ଫଳୁ ବା ମରୁଡି ହେଉ ସେ କୌଶୁଲୀକୁ ବର୍ଷକୁ ବର୍ଷ ଦେଢ଼ ଭରଣ ଧାନ ପଢ଼ି ଦେଉଥିବେ ।

ଶତପଥୀ ସେହି ଅଙ୍ଗୀକାର ଆଦୌ ପାଳନ କରି ନାହାନ୍ତି, ଏହା ନୁହେଁ । କେତେକ ବର୍ଷ ଯାଏ ସେ ଦେଢ଼ ଭରଣ ଲେଖାଏଁ ଧାନ ମାପି ଦେଉଥିଲେ । କୌଶୁଭୀ କେତେଥର କହେ ତହିଁରୁ ଡୋଲିଏ ଅଗାଡ଼ି ବାହାରେ କିନ୍ତୁ ସେ ଦୋଷ ଶତପଥିଙ୍କର ନୁହେଁ କୌଶୁଲୀ ଜମିରେ ବହୁତ ଅଗାଡ଼ି ଫଳେ । ଆମ୍ବ ପଣସ ପାଚିବା ବେଳେ କୌଶୁଲୀ ଝିଅ ଗଛମୂଳେ ଛିଡ଼ା ହେଲେ ଶତପଥୀ ନାକଟା ଟେକି ଦିଅନ୍ତି । କୌଶୁଲୀ ମୁହଁରେ କିଛି କହି ନ ପାରିଲେ ସୁଦ୍ଧା ମନେ ମନେ ଯାହା ଅନୁଭବ କରେ, ତାହା ଶତପଥୀ ବୁଝିପାରିନଥିଲେ ସୁଦ୍ଧା ଆଉ କେହି କେହି ବୁଝିପାରୁଥିଲେ ।

କିଛି ଦିନ ଉତ୍ତାରେ କୌଶୁଲୀର ଦୁହିତାର ପରିଣୟ ହେଲା । ଜ୍ୱାଇଁଟି ଦରିଦ୍ର କିନ୍ତୁ ଗୁଣବାନ । ସେ ପ୍ରକୃତରେ ସୁଶ୍ରୀ ନୁହେଁ କେହି କେହି କହନ୍ତି ସେ ଛେଳି ମୁହାଁ କିନ୍ତୁ କୌଶୁଲୀର ଆନ୍ତରିକ ସ୍ନେହର ପାତ୍ର ଥିଲା ଏବଂ କୌଶୁଲୀ କେତେଥର ଗର୍ବରେ କହେ ଏପରି କେହି ପାଇନଥିଲା କି ପାଇବ ନାହିଁ ।

ଯେତେବେଳେ ଓଡ଼ିଶାରେ ବନ୍ଦୋବସ୍ତ ସଂକ୍ରାନ୍ତ କରିବ ଆରମ୍ଭ ହେଲା, କେତେ ଲୋକଙ୍କର ଶ୍ମଶାନ ମଧ୍ୟରୁ, କବର ମଧ୍ୟରୁ ଉତ୍ତରାଧିକାରୀ ବାହାରିଲେ । ଖସଡ଼ା ନ



Source: Author, Digitized by PPRACHIN, SOA

ହେଉଣୁ କେତେ ଲୋକ ଦୁମ୍‌ଦୁମ୍ କଚଡ଼ା ଖାଇଲେ । କୌଶୁଲୀ ଦିନେ ଗ୍ରାମ୍ୟ ପାର୍ଲିଆମେଣ୍ଟରୁ ବନ୍ଦୋବସ୍ତ ଗପ ଶୁଣି ମନେ ମନେ ଭାବିଲା "ମୋହନ ତିନିମାଣ ସାତ ଗୁଣ୍ଠ ଜମି ଯଦି ମୋହ ନାମରେ ଅମୀନ ଲେଖେଇ ଦିଅନ୍ତା ତେବେ ସେତକ ଜ୍ୱାଇଁକୁ ଦିଅନ୍ତି । ମୁଁ ମରିଗଲେ ସେ ମୋ ମୁହଁରେ ଟିକିଏ ନିଆଁ ଦିଅନ୍ତା ମୋହାର କାୟା ମୁକ୍ତ ପାଆନ୍ତା ।" ସେ ଦିନେ ଅମୀନ ପାଖକୁ ଯାଇ ଗୋଟିଏ ବଦର ଦାଏର କରିଦେଲା । ହେଡ଼ ଅମୀନ ପାଇଁ ଦୁଇଟା ନଡିଆ ନେଇଯାଇଥିଲା । ହେଉ ଅମୀନ ତାକୁ ବୁଝାଇ ଦେଲା ଯେ ତାହା ଜମି ତାହାର ହେବ, ବନମାଳୀ ଶତପଥୀ କେହି ନୁହେଁ ।

କୌଶୁଲୀ ଘରକୁ ଫେରି ଆସୁ ଆସୁ ବାଟରେ ଭାବିଲା, ଜ୍ୱାଇଁ ନାମ ହେବ । ଅମୀନ ପାଖରେ ଲେଖାଇ ଦେଇଥିଲେ ଭଲ ହୋଇଥାନ୍ତା । ସେ ଫେରି ଆସି ଘରେ ପହଞ୍ଚିବା ବେଳକୁ ବଦର କଥା ଶତପଥୀଙ୍କ କର୍ଣ୍ଣଗୋଚର ହୋଇସାରିଥିଲା । ଘୋର ବାକ୍ ଯୁଦ୍ଧ ଲାଗିଗଲା । କୌଶୁଲୀ ସେ ଯୁଦ୍ଧରେ ଏ ରୂପ ନିପୁଣ ବୋଲି ଗ୍ରାମ ସ୍ତ୍ରୀ ଲୋକମାନେ ଆଜିଯାଏ ଟେର ପାଇନଥିଲେ । କିନ୍ତୁ ସ୍ୱୀକାର କରିବାକୁ ହେବ ଯେ କଟକର ଯେଉଁ ସ୍ତ୍ରୀଲୋକମାନଙ୍କର ରଣ ନୈପୁଣ୍ୟ ଦେଇ ବିଧାତା ତାଙ୍କର ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ କରିଥିଲେ ଯେ କଟକରେ ଜନ୍ମଗ୍ରହଣ କଲେ ନାରୀମାନେ ଜିହ୍ୱା ବିହୀନ ହେବେ, କୌଶୁଲୀ ସେମାନଙ୍କ ଅପେକ୍ଷା କୌଣସି ଅଂଶରେ ଅଧିକ ପାରଦର୍ଶୀ ନୁହେଁ ।

ଆଷାଢ଼ ମାସ ରାତି ମେଘ ଅନ୍ଧାର । ଅରଖ ପାରି ମସାଣି ତୋଟାରେ ବନ୍ଦୋବସ୍ତ ହାକିମକଙ୍କ ଡ଼େରା ପଡିଅଛି । ରାତି ଠିକ୍ ନଅ ଘଡି ସମୟରେ କୌଶୁଲୀ ବେଓ୍ୱାକୁ ଡାକରା ହେଲା ସେ ଗରହାଜର ଥିବାରୁ ବଦର ଖାରଜ ହେଲା । ଶତପଥୀ ସେଠାରେ ହାଜର ଥିଲେ । ହେଡ଼ ମୋହରିର ତାଙ୍କୁ ବୁଝାଇଦେଲା, ମୋକଦ୍ଦମା ତାଙ୍କର ଡିଗ୍ରୀ ହେଲା । ହେଡ଼ ମୋହରିର କାନରେ ସେ କଅଣ ବିପଦ କହିଦେଇ ବୟାନ କରୁଅଛନ୍ତି ।

କୌଶୁଲୀର ହୃଦୟରେ ଯେଉଁ ଅନଳ ଜଳୁଥିଲା, ଶତପଥୀ ତହିଁରେ ଟିକିଏ ଆହୂତି ହେଲେ । କୌଶୁଲୀର ମୁହଁରୁ ଯେଉଁ ମହାଭାରତ ବାହାରିଲା, ତାହା ଶତପଥୀ ଆଉ ସହି ପାରିଲେ ନାହିଁ । ଖଣ୍ଡିଏ କଞ୍ଚା ବାଉଁଶର ବାଡି ଧରି କୌଶୁଲୀ ମୁଣ୍ଡରେ ସେ ଆଠଦଶ ପାହାର ଦେଲେ । ସେହିଠାରେ କୌଶୁଲୀର ଚମରଦଶା ଉପସ୍ଥିତ ହେଲା ।

ପୋଲିସ୍ ସମ୍ବାଦ ପାଇ ତଦାରଖ କରିବାକୁ ଆସିଲେ । ଶତପଥୀ ଚାଲାଣ ହେଲେ । ଡାକ୍ତର ସାହେବ ହଲପ ନେଇ ଯବାନବନ୍ଦୀ ଦେଲେ ଯେ କୌଶୁଲୀର ମୁଣ୍ଡର ହାଡ଼ ମାଡ ଆଘାତରେ ଖଣ୍ଡ ଖଣ୍ଡ ହୋଇ ଫାଟି ଯିବାରୁ ତାହାର ମୃତ୍ୟୁ ଘଟିଥିଲା । ଦୌରା ଅଦାଲତରେ ଜଜ୍ ସାହେବ ଶତପଥୀଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦେଲେ ଏବଂ "ଦୂର୍ଜଟୀ" ମହାଶୟ ଖୁଣ ମୋକଦ୍ଦମାର ଆସାମୀକୁ କୁମ୍ଭୀରକୁ ଦେବାରୁ କାହାରି କାହାରି ଯେଉଁ ଅବସୋସ ଥିଲା ତାହା ମେଣ୍ଟିଗଲା ।

୧୨୯.୪/୧୮୯୯, ଉତ୍କଳ ଦୀପିକା



Source: Author, Digitized by PPRACHIN, SOA

## ସମାଲୋଚନା-୪

ଦୈତାରୀ କର

ଶୁଭକ୍ଷଣରେ ଉତ୍କଳ ଭୂମିରେ ଜନ୍ମଲାଭ କରି ଉତ୍କଳ ଶିକ୍ଷିତ ସମାଜ ମଧ୍ୟରେ ନାନା ପ୍ରକାର ଶିକ୍ଷା ବିସ୍ତାର କରୁଅଛି ।

* * *

ସେ ଯାହାହେଉ ଧନ ଯୋଗୁଁ ଉତ୍କଳ ସାହିତ୍ୟ ସ୍ୱର୍ଗକୁ ଚଢ଼ୁ ବା ପାତାଳକୁ ଖସୁ ତାର ଜନ୍ମରେ ସେ ଅନେକ ମହତ କାର୍ଯ୍ୟ କଲାଣି । ଆଉ କିଛି ନ କରୁ ପଛରେ "ଛ ମାଣ ଆଠଗୁଣ୍ଠ"ରୂପୀ ଅମୂଲ୍ୟ ରତ୍ନଟିଏ ସଞ୍ଚୟ କରିସାରିଲାଣି । ଏହି ଏତିକିବେଳେ ହିଁ ତାର ଜନ୍ମ ସାର୍ଥକ ହେଲାଣି । ସୁଖର କଥା ଧୂର୍ଜଟୀ ମହାଶୟ "ଛ ମାଣ ଆଠ ଗୁଣ୍ଠ" ପୂର୍ଣ୍ଣ କରି ପ୍ରତ୍ୟେକ ଉତ୍କଳ ସନ୍ତାନଙ୍କର କୃତଜ୍ଞତାସ୍ପଦ ହୋଇଅଛନ୍ତି । ବାସ୍ତବରେ ଉତ୍କଳ ସାହିତ୍ୟ ମୋର ହସ୍ତଗତ ହେଲାକ୍ଷଣି, ମୁଁ ପ୍ରଥମେ ଦେଖେ ଲେଖକମାନଙ୍କ ନାମ ଓ ପ୍ରବନ୍ଧ ନାମ । କାରଣ ଉତ୍କଳର ଲବ୍ଧପ୍ରତିଷ୍ଠ ଲେଖକମାନେ ଲେଖି ଅଛନ୍ତି କି ନାହିଁ ଏବଂ ଧୂର୍ଜଟୀଙ୍କ "ଛ ମାଣ ଆଠଗୁଣ୍ଠ" ଅଛି କି ନାହିଁ । ୨ୟରେ ଦେଖେ କାର୍ଯ୍ୟାଧ୍ୟକ୍ଷ ମହୋଦୟଙ୍କ ନିବେଦନ ଯଥାର୍ଥ କି ନା ଏଥିଲାଗି ମୂଲ୍ୟ ପ୍ରାପ୍ତିର ପୃଷ୍ଠାଟି ଦେଖେ । ଚତୁର୍ଥରେ "ଛ ମାଣ ଆଠଗୁଣ୍ଠ" ଥିଲେ ତାହା ପାଠ କରିସାରି ଅପରପର ପ୍ରବନ୍ଧାଦି ପାଠ କରେ । ମୁଁ ଏକା ନୁହେଁ ପ୍ରାୟ ଉ.ସା.ର ଅଧିକାଂଶ ଗ୍ରାହକ ଓ ଉପଗ୍ରାହକ ପ୍ରବନ୍ଧ ପାଠ ପୂର୍ବରୁ "ଛ ମାଣ ଆଠଗୁଣ୍ଠ" ପଢ଼ିଥାନ୍ତି । ଅନେକ ଅଶିକ୍ଷିତ ଲୋକ ମଧ୍ୟ "ଛ ମାଣ ଆଠ ଗୁଣ୍ଠ" ଶୁଣିବା ନିମନ୍ତେ ବ୍ୟଗ୍ର । ଅଶିକ୍ଷିତ ଲୋକମାନଙ୍କ କଥା ଛାଡ଼ । ସେମାନେ ଯେଉଁଠାରେ ମିଳିଲେ କିମ୍ବା ଦୁଇଚାରି ଜଣ କୌଣସିଠାକୁ ଏକତ୍ର ଗଲେ ସେମାନଙ୍କ ସଂଗେ ସଂଗେ ଧୂର୍ଜଟୀ । ବନ୍ଧୁମାନେ କୌତୁକୀ ହୋଇ କହିଥାନ୍ତି ବୁଝି ବୁଝି ବ୍ୟବହାର କର,ନୋହିଲେ ଧୂର୍ଜଟୀ ଚିତ୍ରକରି ଘେନିଯିବ ଯେ ବାସ୍ତବରେ ଧୂର୍ଜଟୀଙ୍କ ଚିତ୍ର ସବୁଠାରେ ମିଳେ । ସେହି ହେତୁରୁ ସମସ୍ତେ ତାହା ଆଗ୍ରହ ସହକାରେ ପାଠ କରିଥାନ୍ତି । ପାଠ କଲାବେଳେ କ୍ଲାନ୍ତିବୋଧ ହୁଏ ନାହିଁ କାରଣ ତାହା ହୃଦୟ ସଂଗେ ମିଶିଯାଏ ଏବଂ. ଇନ୍ଦ୍ରୀୟ ବିଷୟୀଭୂତ ହୋଇଯାଏ । "ଛ ମାଣ ଆଠଗୁଣ୍ଠ"ର ସମସ୍ତ ଚିତ୍ର ବିଶଦ ଓ ପ୍ରାଞ୍ଜଳ । ସେ ସମସ୍ତ ଯଥାର୍ଥ ଘଟଣାର ଭ୍ରମ ଜନ୍ମାଇ ଦିଏ । ଉପନ୍ୟାସର ଏହି ଗୁଣ ହିଁ ସର୍ବପ୍ରଧାନ । ବସ୍ତୁତଃ ଏହା ସାମାଜିକ ଉପନ୍ୟାସ ବିଶେଷ ଛଡ଼ା ଆଉ କିଛି ହୋଇ ନ ପାରେ । ତାର ଶେଷାଂଶ ଚିତ୍ରଟି ଏପରି ଭାବରେ ପୂର୍ଣ୍ଣ ହୋଇଛି ଯେ ତାର ବିଷୟ ଆକାଙ୍‌କ୍ଷା ପୂର୍ଣ୍ଣଭାବରେ ନିବୃତ୍ତ ହୋଇଅଛି । ଶେଷ ଚିତ୍ରଟିକୁ ମାନବ ସମାଜରେ ଅନ୍ତିମ କାଳରେ ସାଧାରଣ ସୃଷ୍ଟି ବୋଲାଯାଇପାରେ । ଯେ ଯାହା କରିବ, ସେ ତାହା ଫଳ ଅବଶ୍ୟ ଭୋଗ କରିବ । ଯେ ପ୍ରଭୁଙ୍କୁ ଯେପରି ଭାବରେ ଚିହ୍ନିବ ତାର ମନ ସେହିପରି ଭାବ ଚାଳିତ ହେବ । ମାତ୍ର ପ୍ରଭୁଙ୍କୁ ଯେ ଯେତେବଡ଼



Source: Author, Digitized by PPRACHIN, SOA

ଜାଣିବ ତାର ମନ ତେତେ ବଡ଼ ହେବ । ମନ ତେତେ ଉନ୍ନତ ହେବ ଯାହାର ମନ ଯେଡ଼େ ତାର ପ୍ରଭୁ ତେଡ଼େ । ଏହି ସମସ୍ତ ଶିକ୍ଷଣୀୟ ବିଷୟମାନ ବା ଫଳଲାଭରେ ଚିତ୍ରମାନ ଶେଷାଂଶରେ ପ୍ରକାଶିତ ହୋଇଅଛି । ମଙ୍ଗରାଜଙ୍କ ଜୀବନୀ ପ୍ରତ୍ୟେକଙ୍କ ସମକକ୍ଷରେ ସବୁବେଳେ ଉପସ୍ଥାପିତ କରିବା ଲାଗି ଲେଖକ ମହୋଦୟ ତାହାକୁ ସଂଗତ ଭାବରେ ବ୍ୟକ୍ତ କରିଅଛନ୍ତି । ତାହା ପ୍ରତ୍ୟେକଙ୍କ ସ୍ମରଣରେ ରହିଲେ ଅବଶ୍ୟ ପାପ, ଦୁରାଚାର ପ୍ରତି ବିରକ୍ତି ଜନ୍ମିବ । ପରମେଶ୍ୱରଙ୍କ ଦୟା ଅନନ୍ତ ତାଙ୍କର କ୍ଷମା ଅନନ୍ତ । ଦେଖନ୍ତୁ ମଙ୍ଗରାଜ ତାଙ୍କର ନାମ ଗ୍ରହଣ କରିବା ପୂର୍ବରୁ କି ଯନ୍ତ୍ରଣା ଭୋଗ କରୁଥିଲେ, ଏବଂ ନାମ ଗ୍ରହଣ କଲାକ୍ଷଣି କି ଶାନ୍ତିର ସାନ୍ତ୍ୱନା ଲାଭ କଲେ । ଧର୍ମପତ୍ନୀ ହିଁ (ଧର୍ମ ବନ୍ଧୁ ମଧ୍ୟ) ପ୍ରକୃତ ପକ୍ଷରେ ଧର୍ମପଥରେ ସହଯାତ୍ରୀ ଏବଂ ଧର୍ମପଥର ପଥିକ । ପତି ପଥଭ୍ରଷ୍ଟ ହେଲେ ପତ୍ନୀ ତାହାଙ୍କୁ ସତ୍‌ପଥ ଆଡ଼କୁ ଟାଣିପାରନ୍ତି । କିନ୍ତୁ ଯେଉଁ ପତି ଭକ୍ତି ପବିତ୍ର ନିୟମର ଅବମାନନା କରନ୍ତି ସେ ସଂସାରରେ ଥାଉଁ ଥାଉଁ କି ଭୟଙ୍କର ଗୌରବରେ ପତିତ ହୁଅନ୍ତି, ତାହା ମଙ୍ଗରାଜଙ୍କ ଜୀବନରେ ଲେଖକ ସ୍ପଷ୍ଟ ଭାବରେ ଚିତ୍ର କରିଅଛନ୍ତି । ଧର୍ମଦ୍ୱାରରେ ଆପଦ ପଡ଼ିଲେ ପତ୍ନୀ ବିନା ଅନ୍ୟ କେହି ସାହାଯ୍ୟ କରିପାରନ୍ତି ନାହିଁ । ଅନ୍ୟ କେହି ସାନ୍ତ୍ୱନା ଦେଇପାରିନ୍ତି ନାହିଁ । ସଂସାରରେ ପତ୍ନୀ କି ନାନା କାରଣରୁ ଉପେକ୍ଷା କରି ଦୁଷ୍ଟ ରିପୁମାନଙ୍କୁ ଚରିତାର୍ଥ କରିବା ନିମନ୍ତେ ଯେଉଁମାନେ କୁତ୍ସିତ ରମଣୀର ପାଦତଳରେ ଆପଣାର ଜୀବନକୁ ଉତ୍ସର୍ଗ କରିଥାନ୍ତି, ସେମାନଙ୍କର ସେହି ଅସାରପ୍ରାଣ, ସେହି ବିଭୀଷିକାମୟ ପ୍ରାଣ ପରିତ୍ରାଣ ପଥରେ ଏକମାତ୍ର ସେହି ଧର୍ମପତ୍ନୀର ସାହାଯ୍ୟ ବିନା ତିଳମାତ୍ର ଅଗ୍ରସର ହୋଇପାରେ ନାହିଁ । କି ଘୋର ଯନ୍ତ୍ରଣା, କି ଘୋର ପ୍ରମାଦ । କିନ୍ତୁ ସୁଖର ପୂର୍ଣ୍ଣତା ଅଛି । ଦୁଃଖର ପୂର୍ଣ୍ଣତା ଅଛି । ଦୁଃଖ ପୂର୍ଣ୍ଣ ହେଲେ ସୁଖୋଦୟ ହୁଏ । ମାତ୍ର ସୁଖ ପୂର୍ଣ୍ଣ ହେଲେ ଦୁଃଖୋଦୟ ହୁଏ ନାହିଁ । ଯେତେବେଳେ ସେହି ସୁଖର ସାର ପରମେଶ୍ୱରଙ୍କ ପଦାମୃତ ସୁଖ ଭୋଗ୍ୟ । କିନ୍ତୁ ସାଂସାରିକ ସୁଖ ଦୁଃଖ କଥା ଭିନ୍ନ ପ୍ରକାର । ସେଥିରେ ସୁଖ ଶେଷରେ ଦୁଃଖ ଜନ୍ମେ, ଦୁଃଖ ଶେଷରେ ସୁଖ ଜନ୍ମେ । ଏହି ଯେ ସଂସାରରେ ସୁଖ ଶେଷରେ ଦୁଃଖ ଭୋଗ ଓ ଦୁଃଖ ପରେ ସୁଖ ଭୋଗ । ତାହାହିଁ ମନୁଷ୍ୟର ସ୍ୱକର୍ମ ଫଳ ଭୋଗ । ଏହା ମଙ୍ଗରାଜଙ୍କ ଜୀବନୀରୁ ପ୍ରକାଶ ପାଉଅଛି । ଯେତେବେଳେ ଦୁଃଖ ଶେଷ ସୀମାରେ ପ୍ରବେଶ କରେ, ମାନବ ନିଜର କାର୍ଯ୍ୟ ଅନୁସାରେ ପୂର୍ଣ୍ଣଫଳ ଭୋଗ କରେ । ଅଥବା ଯେତିକି ଫଳଭୋଗ କରିବାର କ୍ଷମତା ମାନବର ଥାଏ ଅର୍ଥାତ୍ ଯେତିକି ଭୋଗ କରିବାର ଉଚିତ ତେତିକି ପୂର୍ଣ୍ଣ ଭୋଗ କରେ । ଆଉ ଭୋଗ କରିବାର ଶକ୍ତି ତାହାଠାରେ ନ ଥାଏ । ତେତେବେଳେ ଦୟାମୟ ପରମେଶ୍ୱର ତାର କଣ୍ଠସ୍ଥ ହୋଇ ତାଙ୍କରି ପବିତ୍ର ନାମ ଉଚ୍ଚାରଣ କରାଇ ତାହାକୁ ପାପମୁକ୍ତ କରନ୍ତି । ତାହା ପୂର୍ବରୁ ମାନବ ଅନ୍ଧ । ମାନବ ବଧିର । ତାର ଜ୍ଞାନ ନଥାଏ । ତାର ଚେତନା ନଥାଏ । ସେହି ହେତୁରୁ ସେ ପରିତ୍ରାଣର ପଥା ଯାଏ ନାହିଁ । ଧର୍ମପତ୍ନୀ କେଉଁ ଦିଗରେ



Source: Author, Digitized by PPRACHIN, SOA

ଆଶ୍ୱାସନାମୃତ ଢାଳୁଅଛନ୍ତି – କେଉଁ ଦିଗରେ ହସ୍ତ ପ୍ରସାରଣ କରୁଅଛନ୍ତି ତାହା ଜାଣିପାରେ ନାହିଁ । ମାତ୍ର ପରମେଶ୍ୱରଙ୍କ ନାମ ପରକ୍ଷଣରେ ହିଁ ପରିତ୍ରାଣ ପଥ ଦୃଷ୍ଟ ହୁଏ । ପତ୍ନୀର ସାନ୍ତ୍ୱନା ଶ୍ରୁତିଗୋଚର ହୁଏ । ସେତେବେଳେ ମାନବ ଜାଣିପାରେ ଏହି ପତ୍ନୀ ହିଁ ସନ୍ତାନର ମାତା, ଏହି ମାତା ହିଁ ମହାମାତା ଜଗଦ୍ଧାତ୍ରୀଙ୍କର ଦୟାମୂର୍ତ୍ତି । ଯେତେବେଳେ ଏହି ଦୟାମୂର୍ତ୍ତି ମାନବର କଳୁଷିତ ଆତ୍ମାକୁ ଶାନ୍ତିଜଳରେ ଧୌତକରି ତାହା ସଂଗେ ନିଜେ ଜଗଦ୍ଧାତ୍ରୀଙ୍କ ପଦରେ ସର୍ବୋଚ୍ଚ ଭାବେ ବିଲୀନ ହୁଏ । ମଙ୍ଗରାଜେ ସେହି ଯେଉଁ ଦୟା ମୂର୍ତ୍ତି ସନ୍ଦର୍ଶନ କରି ପବିତ୍ର ହେଲେ ସେହି ମୂର୍ତ୍ତି କିସ ? ତାହା ପାଠକମାନଙ୍କୁ ଅବିଦିତ ନାହିଁ । ସୁତରାଂ ବୋଲାଯାଇପାରେ ଯେ ଛ ମାଣ ଆଠଗୁଣ୍ଠର ଶେଷାଂଶରେ ଲେଖକ ମହୋଦୟ ପତିପତ୍ନୀଙ୍କ ଘନିଷ୍ଠତା ଅତି ସୁନ୍ଦର ରୂପେ ଚିତ୍ରିତ କରିଅଛନ୍ତି ।

ମୁଁ ଛ' ମାଣ ଆଠଗୁଣ୍ଠର ଆଲୋଚନା କରୁନାହିଁ ତାହା ଉତ୍ପତ୍ତି – ପରିପୁର ଅଟେ । ମୋର ବକ୍ତବ୍ୟ ଏହି ଛ'ମାଣ ଆଠଗୁଣ୍ଠ ସରିଲା । କିନ୍ତୁ ଲେଖକ ମହୋଦୟଙ୍କୁ ଅନୁରୋଧ ଏହି ଉତ୍କଳଙ୍କୁ ନିରାଶ ନ କରି ଆଜୀବନ ଏହିପରି ପବିତ୍ର ଅନୁଷ୍ଠାନରେ କାଳକ୍ଷେପଣ କରନ୍ତୁ । ତାଙ୍କର ଲେଖନୀରେ ପୁଷ୍ପବୃଷ୍ଟି ହେଉ ।

(ସମ୍ବଲପୁର ହିତୈଷିଣୀ,୪.୧୦.୧୮୯୯)

## ସମାଲୋଚନା –୫

ଗୋପାଳ ଚନ୍ଦ୍ର ପ୍ରହରାଜ

ଦୁଇଖଣ୍ଡି ଓଡ଼ିଆ ପୁସ୍ତକ

ଅଳ୍ପ ଦିନ ହେଲା ଶ୍ରୀଯୁକ୍ତ ଫକୀରମୋହନ ସେନାପତିଙ୍କ ପ୍ରଣୀତ ସାମାଜିକ ଉପନ୍ୟାସ 'ଛ ମାଣ ଆଠଗୁଣ୍ଠ' ଓ ଶ୍ରୀଯୁକ୍ତ ରାମଶଙ୍କର ରାୟଙ୍କ ପ୍ରଣୀତ ସାମାଜିକ ନାଟକ 'ଯୁଗଧର୍ମ' ପ୍ରକାଶିତ ହୋଇଅଛି । ଏ ଦୁଇଖଣ୍ଡି ପୁସ୍ତକ ଆଧୁନିକ ଉତ୍କଳ ସାହିତ୍ୟରେ ନବଯୁଗର ଆରମ୍ଭ (ଆପାତତଃ ଭିତ୍ତିର ଦୃଢ଼ତା ସଂପାଦନ) କରିଥିବାର ଆମ୍ଭମାନଙ୍କର ପ୍ରତୀତି । 'ଛ ମାଣ ଆଠ ଗୁଣ୍ଠ' ପୂର୍ବେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଖଣ୍ଡଶଃ ପ୍ରକାଶିତ ହୋଇଥିଲା । ଯଦିଚ ଏ ଦୁଇଖଣ୍ଡି ପୁସ୍ତକ ସାହିତ୍ୟର ଭିନ୍ନ ଭିନ୍ନ ଶାଖାକୁ ଆବଲମ୍ବନ କରି ଲିଖିତ, ତଥାପି ଉଭୟରେ ସେ କୃତିତ୍ୱ ପୂର୍ଣ୍ଣ ମାତ୍ରାରେ ବିଦ୍ୟମାନ, ଏଥିରେ ସନ୍ଦେହ ନାହିଁ । ଦିଓଟି ପୁସ୍ତକ ଦିଓଟି ଉଚ୍ଚପଦସ୍ଥ ଅର୍ଥଲୋଲୁପ ଓ ଇନ୍ଦ୍ରିୟାସକ୍ତ ନରପିଶାଚରଙ୍କର (ରାମଚନ୍ଦ୍ର ମଙ୍ଗରାଜ ଓ ମହନ୍ତ ଉଦ୍ଧବ ଦାସ) ରାକ୍ଷସୀ ଲୀଳାର ଅଭିନୟ ଓ ବିଷମୟ ପରିଣାମ, ଧର୍ମର ଜୟ ପାପର ପରାଜୟ, ସଂସାରରେ ସରଳ ସଚ୍ଚରିତ୍ର ଲୋକଙ୍କର ଚରିତ୍ରହୀନ ରାକ୍ଷସ ରାକ୍ଷସୀଙ୍କ ଦ୍ୱାରା ଲୋମହର୍ଷଣକାରୀ ଅନିଷ୍ଟର ଚିତ୍ର ଉତ୍ତମରୂପେ ଚିତ୍ରିତ କରିଅଛି । ଆଧୁନିକ ଉତ୍କଳୀୟ ସମାଜ ଓ ସାହିତ୍ୟ ପ୍ରତି ଏ ପୁସ୍ତକ ଦୁଇଖଣ୍ଡି ଯେ କେତେଦୂର



Source: Author, Digitized by PPRACHIN, SOA

ଉପଯୋଗୀ ହୋଇଅଛି (ଆମ୍ଭେମାନେ ଏଠାରେ ପଦ୍ୟପୁସ୍ତକର କଥା ଆଲୋଚନା କରୁନାହିଁ) ତାହା ଉକ୍ତ ପୁସ୍ତକଦ୍ୱୟ ପାଠ ନ କଲେ ସଂପୂର୍ଣ୍ଣ ରୂପେ ହୃଦୟଙ୍ଗମ ହେବା ନୁହେଁ । ପୁସ୍ତକ ଦୁଇଖଣ୍ଡି ଥରେ ପଢ଼ିବାକୁ ଆରମ୍ଭ କଲେ ଶେଷ ଅଧ୍ୟାୟ କିମ୍ବା ଦୃଶ୍ୟରେ ଉପନୀତ ନ ହେବା ଯାକେ ଛାଡ଼ି ହେବ ନାହିଁ । ଚରିତ୍ର ଚିତ୍ରଣ, ଉତ୍କଳଗୃହର ଚିତ୍ର ଓ ସାମାଜିକ ପ୍ରତିକୃତି ଗ୍ରନ୍ଥକାରଦ୍ୱୟ ସାଧାରଣ ସମକ୍ଷରେ ରଖିବାକୁ ଯାଇ ବିଶେଷ କୃତିତ୍ୱ ଦେଖାଇଅଛନ୍ତି । ଜଣେ କୃତବିଦ୍ୟ ଯୁବକ 'କାହାଣୀ' ପଢ଼ି କହିଥିଲେ ଯେ ଏଗୁଡ଼ିକ ଲେଖିବା ଦ୍ୱାରା ବିଦ୍ୟା ଓ ବୁଦ୍ଧିର ଅପବ୍ୟବହାର ଛଡ଼ା ଆଉ କ'ଣ ହୋଇପାରେ ? ଏ ଦୁଇଖଣ୍ଡି ପୁସ୍ତକ ପଢ଼ି ଆମ୍ଭମାନଙ୍କର କୌଣସି କୌଣସି ଶିକ୍ଷିତ ଓଡ଼ିଆ ଭାଇ ଯେ ଏପରି ମତ ଦେବେ ଏହା ବିଚିତ୍ର ନୁହେଁ । ଆମ୍ଭେମାନେ ତେତେ ଉଚ୍ଚାସନରେ ବସିନାହୁଁ, କିମ୍ବା ସର୍ବସାଧାରଣଙ୍କୁ ସେ ଉଚ୍ଚ ଆସନରେ ବସିବାକୁ ଅନୁରୋଧ କରି ପାରୁଁ । ଇଂରାଜୀରେ ଗୋଟିଏ ପ୍ରଧାନ ନିୟମ "That is art which conceals Art" ଅର୍ଥାତ୍ ଯେଉଁ କୃତିତ୍ୱ ଦ୍ୱାରା କୃତିତ୍ୱ ପ୍ରଚ୍ଛନ୍ନ ରହେ (ସାଧାରଣ ପାଠକଙ୍କ ଦୃଷ୍ଟି ଓ ବୁଦ୍ଧିର ଗୋଚର ନ ହୁଏ) ତାହା ପ୍ରକୃତ କୃତିତ୍ୱ । ଉଦାହରଣସ୍ୱରୂପ ଆମ୍ଭେମାନେ ସର୍ବଦା ମାର୍ଜିତ ଓ ଶିକ୍ଷିତ ସମାଜର ଘର୍ଷଣରେ ରହି ତତ୍ ପ୍ରଚଳିତ ଭାଷା (ବିଶେଷ ହେଉ କି ଅଳ୍ପ ହେଉ) ବ୍ୟବହାର କରିବାରେ ଅଭ୍ୟସ୍ତ ହୋଇଅଛୁ । ଏପରି ଘର୍ଷଣ ଯେତେକ ବୃଦ୍ଧିପାଉଥିବ ତେତିକି 'ବିଶୁଦ୍ଧ ଘରୋଇ ଭାଷା' କ୍ରମଶଃ ଲୋପପାଇ ଉଚ୍ଚସ୍ଥାନ ପ୍ରଚଳିତ ମାର୍ଜିତ ଭାଷାକୁ ସ୍ଥାନ ଦେବ । ଆମ୍ଭେମାନେ ଏ ଭାଷା ପ୍ରଚଳନର ବିରୁଦ୍ଧରେ ଲେଖୁନାହୁଁ । ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ଯେତେଦୂର ପର୍ଯ୍ୟନ୍ତ ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷା ବ୍ୟବହାର କରି ଆମ୍ଭମାନଙ୍କ ଭାବ ବ୍ୟକ୍ତ କରିବା ତେତିକି ଉତ୍ତମ । ଯେଉଁଠାରେ ଉପାୟାନ୍ତର ନାହିଁ, କିମ୍ବା ନ କଲେ ଶୋଭନୀୟ ନାହିଁ, ସେଠାରେ ମାର୍ଜିତ, ଆମଦାନୀ ଓ Conventional (ଆଡମ୍ବରଯୁକ୍ତ) ଭାଷା ବ୍ୟବହାର କରିବା ଯୁକ୍ତିସିଦ୍ଧ । କିନ୍ତୁ ଅଧିକାଂଶ ଓଡ଼ିଆ ପୁସ୍ତକ ଓ ପତ୍ରିକାରେ ଦେଖାଯିବ ଯେ ଯେଉଁଠାରେ ଘରୋଇ ଭାଷା କିମ୍ବା ଶବ୍ଦ ଦେଲେ ଚଳନ୍ତା, ସେଠାରେ ଲେଖକ ବିଦ୍ୟାବୁଦ୍ଧି ପ୍ରକାଶ କରିବାରେ କୁଣ୍ଠିତ ନ ହୋଇ ଗୋଟିଏ ଆଡମ୍ବରଯୁକ୍ତ ଶବ୍ଦ ବା ବାକ୍ୟ ବସାଇଦେଇଛନ୍ତି । ତା ନ କଲେ ଆପଣାର ବିଦ୍ୟାବତ୍ତାର ପରିଚୟରେ ବାଧା ପଡ଼ିବ । କିନ୍ତୁ ପୃଥିବୀରେ ଆଧୁନିକ ଉଚ୍ଚ ଭାଷାମାନଙ୍କରେ ନିୟମ ଭିନ୍ନରୂପ । ଇଂରାଜୀ ଭାଷା କଥା ଧରନ୍ତୁ – ଯେଉଁ ପୁସ୍ତକରେ Anglo-Saxon (ଆଦିମ ଇଂରାଜୀ) ଶବ୍ଦ ଯେତେ ଅଧିକ ଓ ଲାଟିନ୍ ଏବଂ ଗ୍ରୀକ୍ (ଆମଦାନୀ) ଶବ୍ଦ ଯେତିକି ଅଳ୍ପ, ସେ ପୁସ୍ତକ ତେତିକି ବେଶି ଆଦୃତ । କିନ୍ତୁ ଆମ୍ଭମାନଙ୍କର ଆଧୁନିକ ସାହିତ୍ୟନେତାମାନଙ୍କର ମତ ଓ କାର୍ଯ୍ୟ ଅନ୍ୟରୂପ ହୋଇଆସୁଥିଲା । ଗତ କେତେକ ବର୍ଷ ଏ କ୍ଷେତ୍ରରେ ସଂସ୍କାର ଆରମ୍ଭ ହୋଇଅଛି, ପୂର୍ଣ୍ଣ ହେବାର ଆଶା ବର୍ତ୍ତମାନ ତେବେ ଅନେକ ଦୂରରେ ।



Source: Author, Digitized by PPRACHIN, SOA

ଆମ୍ଭେମାନେ ମଧ୍ୟ ଏହି ବହିଃପ୍ରଚଳିତ, ଆଡମ୍ବରଯୁକ୍ତ ମାର୍ଜିତ ଭାଷା ବ୍ୟବହାର କରି ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷା କେତେକ ପରିମାଣରେ ଭୁଲି ଯାଇଅଛୁଁ । ଏପରିକି ଅଶିକ୍ଷିତା, ଅସଂସ୍କୃତା ଓ ଅପମାର୍ଜିତା ଅଙ୍କଲକ୍ଷ୍ମୀମାନଙ୍କ ସଂଗେ କଥୋପକଥନ କରିବା ସମୟରେ ଅଭ୍ୟାସବଶତଃ ଇଂରାଜୀ, ହିନ୍ଦୀ, ବଙ୍ଗଳା ଶବ୍ଦ ଓ Idiom ବାହାରି ପଡିବାର ମଧ୍ୟ ଅନେକ ଶିକ୍ଷିତ ଓ ନିଷ୍କପଟ ଓଡ଼ିଆପୁଏ ସ୍ୱୀକାର କରିବେ । ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷଣ କେତେକ ଲୋକଙ୍କ ନିକଟରେ ହେୟ, ଅବ୍ୟବହାର୍ଯ୍ୟ ଓ ଇତରପ୍ରଚଳିତ ! ଏ ସଂକ୍ରାମକ ବ୍ୟାଧିଦ୍ୱାରା ଅନେକ ଉଚ୍ଚାସନ ମଧ୍ୟ ପ୍ରଭାବିତ । ସେ ଯାହାହେଉ, ଯେବେ ଆମ୍ଭମାନଙ୍କ ମଧ୍ୟରୁ କେହି ଚେଷ୍ଟା କରି ପରୀକ୍ଷା କରନ୍ତି ତେବେ ବୁଝିପାରିବେ ଯେ ବିଶୁଦ୍ଧ ଘରୋଇ ଶବ୍ଦ ଓ ଭାଷା ବ୍ୟବହାର କରି ଚାରି ଧାଡ଼ି ଲେଖିଦେବା ପ୍ରଥମେ ଯେତେଦୂର ସହଜ ଓ ହେୟ ବୋଲି ବୋଧହୁଏ, ପ୍ରକୃତରେ ତାହା ନୁହେଁ । ଏଥିରେ କୃତିତ୍ୱ ଅଛି । ସେ କୃତିତ୍ୱ ସହଜରେ ଧରା ନ ପଡ଼େ ବୋଲି ଏକା ସେ କୃତିତ୍ୱ ପଦବାଚ୍ୟ । ଶ୍ରୀଯୁକ୍ତ ନନ୍ଦକିଶୋର ବଳଙ୍କର 'ପଲ୍ଲୀଚିତ୍ର' ଓ 'ନିର୍ଝରଣୀ' କେତେକ ଶିକ୍ଷିତ ଭାଇଙ୍କ ମଧ୍ୟରେ 'ଚନ୍ଦ୍ରାବତୀହରଣ' 'ରାମଲୀଳା' ପ୍ରଭୃତି ମଧ୍ୟରେ ଗଣ୍ୟ । Wordsworth, Tennyson, Dickens Thackeray, George Eliot ଇତ୍ୟାଦିଙ୍କୁ ଯେ ଇଂରାଜୀରେ ଏହି ଶ୍ରେଣୀରେ ନେଇନାହାନ୍ତି, ଏହା ହିଁ ବିଚିତ୍ର ! ଏହା ବୋଲି କି 'ବିଶୁଦ୍ଧ ଘରୋଇ ଭାଷା' ଓ 'ବାଉରି କଣ୍ଡରାଙ୍କ ଭାଷା' ମଧ୍ୟରେ ପ୍ରଭେଦ ନାହିଁ ? ଘରୋଇ ଭାଷାର ଦ୍ୱାହି ଦେଇ ଚାଉଳକୁ ଚାଉର, ନେଉଳକୁ ନେଉର, ମତେକୁ ମେତେ, ପଠେଇବାକୁ ବୁଟେଇବା, ବାପକୁ ବୋପା, ଏପରି କରି ଦେଇ ବସିଲେ ଆମ୍ଭେମାନେ ନାଚାର । ଯେଉଁ ଭଦ୍ରପରିବାର ପ୍ରଚଳିତ ଘରୋଇ ଭାଷାକୁ ଆମଦାନୀ ଓ ମାର୍ଜିତ ଭାଷା ଅତି ଅଳ୍ପ ପରିମାଣରେ ଦୋଷମୁକ୍ତ କରିଅଛି, ତାହାକୁ ଆମ୍ଭେମାନେ ଆଦର୍ଶ ବୋଲି ମନେ କରୁଁ । ବହୁଶତାବ୍ଦୀ ବ୍ୟାପି ବିଦେଶୀୟ ରାଜା ଓ ଭାଷାମାନଙ୍କ ଅଧୀନ ରହି ଓଡ଼ିଆ ଭାଷାର ପ୍ରାଥମିକ ଅକୃତ୍ରିମ ସରଳତା ଓ ବିଶୁଦ୍ଧତା ଯେ ଅନେକ ପରିମାଣରେ ଲୁପ୍ତ, ଏହା କିଏ ନାହିଁ କରିବ ? ତେବେ ଯାହା ହୋଇଯାଇଅଛି ତହିଁର ତ ସଂସ୍କାର ଆବଶ୍ୟକ, ଅପାତତଃ ଚେଷ୍ଟା ଅବଶ୍ୟ କର୍ତ୍ତବ୍ୟ । ଆଲୋଚ୍ୟ ପୁସ୍ତକଦ୍ୱୟ ଯେ ଏ ବିଷୟରେ ସଂପୂର୍ଣ୍ଣ ଦୋଷଶୂନ୍ୟ ଏହା ବୋଲିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ଘରୋଇ ଭାଷାକୁ ସାହିତ୍ୟଗତ ଭାଷାରେ ପରିଣତ କରିବା ନିମନ୍ତେ ଉକ୍ତ ପୁସ୍ତକଦ୍ୱୟରେ ସବିଶେଷ ଚେଷ୍ଟା, ଯତ୍ନ ଓ ପରିଶ୍ରମ ହୋଇଅଛି । ବର୍ତ୍ତମାନ ଅବସ୍ଥାରେ ସଂପୂର୍ଣ୍ଣ କୃତକାର୍ଯ୍ୟ ହେବାର ଆଶା ଦୂରାଶା କହିଲେ ଚଳେ । ଯେଉଁଦିନ ଇଂରଜୀ ପ୍ରଚଳିତ ସୁନିୟମ "Write as you speak" (ଯେପରି କଥା କହ ସେହିପରି ଲେଖ) ଓଡ଼ିଆ ଭାଷାରେ ଅନୁଧାବିତ ହେବ ସେଦିନ ଓଡ଼ିଆ ଭାଷା ଓ ସାହିତ୍ୟର ସୁଦିନ । ଉତ୍କଳ ସାହିତ୍ୟରେ ବର୍ତ୍ତମାନ ପର୍ଯ୍ୟନ୍ତ ଚଳି



Source: Author, Digitized by PPRACHIN, SOA

ଆସୁଥିବା ଯୁଗକୁ 'ଶିକାଙ୍କ ଉପରେ' ଯୁଗ ଆଖ୍ୟା ଦିଆଯାଇପାରେ । ଏ ଅଞ୍ଚଳରେ ଗୋଟିଏ ରମ୍ୟ ପ୍ରବାଦ ଅଛି । ଜଣେ ଶିକ୍ଷିତ, ମାର୍ଜିତରୁଚି ପୁତ୍ର ତଦୀୟ ପିତାଙ୍କୁ ପ୍ରଶ୍ନ କରିଥିଲେ "ଘୃତ କେଉଁଠାରେ ଅଛନ୍ତି" ପିତା ପୁତ୍ରଙ୍କର ବର୍ଦ୍ଧିଷ୍ଣୁ ବିଦ୍ୟାବୁଦ୍ଧି ଓ ଗ୍ରସିଷ୍ଣୁରୁଚିର ପରିଚୟ ପାଇ ଈଷହାସ୍ୟ କରି ଉତ୍ତର କଲେ "ଘୃତ ଶିକାଙ୍କ ଉପରେ ଘଡ଼ିଙ୍କ ଭିତରେ ଅଛନ୍ତି ।" ସେ ଯାହାହେଉ, ପଦ୍ୟରେ ଏବଂ ଗଦ୍ୟରେ ଅଧୁନା ଏ ଯୁଗର ଆରମ୍ଭମାତ୍ର ସୂଚିତ ହୋଇଅଛି । ଈଶ୍ୱର କରନ୍ତୁ, ସୁଦିନ କ୍ରମଶଃ ନିକଟବର୍ତ୍ତୀ ହେଉ । ଏ ଚେଷ୍ଟାରେ କେଉଁମାନେ ବ୍ରତୀ ସେମାନଙ୍କ ନାମ ଲେଖିବାକୁ ଯାଉ ଅନ୍ୟାନ୍ୟ ସାହିତ୍ୟସେବକଙ୍କର ଅଯଥା ବିଭାଗଭାଜନ ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ରହିବ, ସନ୍ଦେହ ନାହିଁ । ଅତଏବ ଆମ୍ଭମାନଙ୍କର ଅକିଞ୍ଚନ ଲେଖନୀରୁ ସେମାନଙ୍କ ନାମ ନ ବାହାରିଲା ବୋଲି ହତୋତ୍ସାହ ଓ ହତଚେଷ୍ଟ ହେବାର କୌଣସି କାରଣ ନାହିଁ ।

ତତ୍‌ପର ଚରିତ୍ର ଚିତ୍ରଣ ବିଷୟରେ ଗ୍ରନ୍ଥକାରଦ୍ୱୟ ବିଶେଷ କୃତିତ୍ୱ ଦେଖାଇଅଛନ୍ତି । "Hold the mirrior up to nature", କାଳୋଚିତ, ସ୍ଥାନୋଚିତ ଚିତ୍ର ଅଙ୍କନର ଯଥେଷ୍ଟ ପ୍ରମାଣ ଆମ୍ଭେମାନେ ଏ ଦୁଇ ପୁସ୍ତକରୁ ପାଇଅଛୁଁ । ଛମାଣ ଆଠଗୁଣ୍ଠର 'ଚମ୍ପା' ଓ ଯୁଗଧର୍ମର 'ରାଧୀମାତା' ଏକା ଶ୍ରେଣୀର । ତେବେ ଚମ୍ପା ଚତୁରୀଶିରୋମଣି ରାକ୍ଷସୀ । ଚମ୍ପାକୁ ସେକ୍ସପିଅରଙ୍କର Tatus and Andronicus ନାଟକର Timora ଛଡ଼ା ଅନ୍ୟ କାହା ସଂଗେ ତୁଳନା କରିବାର ସାହସ ହେଉନାହିଁ । ରାଧୀମାତା ରାକ୍ଷସୀ କିନ୍ତୁ ଡରକୁଳୀ । ରାଧୀ ମାତା ମହନ୍ତଙ୍କ କିଙ୍କରୀ; କିନ୍ତୁ ମଙ୍ଗରାଜେ ଚମ୍ପାର କିଙ୍କର । ରାଧୀ ମାତା ସେକ୍ସପିଅରଙ୍କ Pericles ନାଟକର ଚ଼ରିତ୍ରହୀନା ସର୍ବନାଶୀ Bawd । ଚମ୍ପା ହାତରେ ରାଣୀ ପଡିଥିଲେ ରାଣୀକୁ ହରିଦାସ ଓ ପ୍ରେମବାବୁଙ୍କ ବାପା ଯେ ଖସାଇ ନେଇ ପାରିଥାନ୍ତେ ଏହା ଆମ୍ଭମାନଙ୍କୁ ବିଶ୍ୱାସ ହେଉନାହିଁ । ସମାଜରେ ସାଧାରଣତଃ ରାଧୀମାତା ଏକରୁ ଅଧିକ ମିଳିପାରନ୍ତି, କିନ୍ତୁ 'ଚମ୍ପା' 'ଲକ୍ଷକେ ଗୋଟିଏ' ମିଳିବା କଷ୍ଟ । ଅନ୍ୟ ଆଡ଼େ ରାମଚନ୍ଦ୍ର ମଙ୍ଗରାଜ ମନୁଷ୍ୟପଦବାଚୀ, କିନ୍ତୁ ତାମସିକ ଓ ଅର୍ଥଲୋଲୁପ । ମହନ୍ତ ମହାରାଜ କିନ୍ତୁ ନରଦେହଧାରୀ ପିଶାଚ । କେଲୁଣୀଙ୍କୁ ହମରୁ ଶାଢ଼ୀ ଦେବାଭଳି ବଦାନ୍ୟତା 'ଲକ୍ଷକେ ଜଣେ'ଙ୍କ ଠାରେ ଘଟେ । ଯୁଗଧର୍ମର ନାଟୁଆ ପିଲା ଓ କେଲୁଣୀଙ୍କ ଦୃଶ୍ୟଟି ପ୍ରକୃତରେ ଏହା ମହନ୍ତ ମହାରାଜଙ୍କ ପାଖରେ ସାଜେ । ଅବଗୁଣ୍ଠନବାନ୍, 'ରାଣୀ' ଭ୍ରମକାରୀ ହରିଦାସଙ୍କ ନିକଟରେ ମହନ୍ତ ଉଦ୍ଧବଦାସଙ୍କ ବକ୍ତୃତା କି ଚମତ୍କାର । ଯେଉଁ ସମାଜରେ 'ଚମ୍ପା' ଓ 'ଉଦ୍ଧବ ଦାସ'ଙ୍କ ଏକାଧିପତ୍ୟ, ସେ ସମାଜର ଉନ୍ନତି ସୁଦୂରପରାହତ । ଗ୍ରନ୍ଥକାରଦ୍ୱୟ ଚମ୍ପା ଓ ଉଦ୍ଧବଙ୍କର ଶେଷ ଦଶା ଚିତ୍ର କରିଅଛନ୍ତି ମାତ୍ର । କିନ୍ତୁ ଫଳରେ କ'ଣ ତାହା ? ଚମ୍ପା ସଂସାରରେ ଭଗିଆ ଓ ସାରିଆର ସର୍ବନାଶ କରି, ଘରପୋଡି, ସାନ୍ତାଣୀଙ୍କୁ ହାତରେ ନ ମାରି ଭାତରେ ମାରି ନିର୍ବିଘ୍ନରେ ବୁଲୁଛି ! ଆଉ ସମାଜରେ ମହନ୍ତ



Source: Author, Digitized by PPRACHIN, SOA

ମହାରାଜ ନାଚୁଆ ପିଲାଙ୍କୁ ଦଶହଜାର ଟଙ୍କାର ଅଳଙ୍କାର ସାଧାରଣ ସଂପତ୍ତିରୁ ତିଆରି କରାଇଦେଇ, ରାଣୀର ସର୍ବନାଶ କରିବାକୁ ଯାଇ ନିର୍ଦ୍ୱନ୍ଦ୍ୱରେ ଗାଦିରେ ବସି, କେଲୁଣୀଙ୍କୁ ହମରୁ ଶାଢ଼ୀ ବାଣ୍ଟି, ଆପଣା ଜନ୍ମସ୍ଥାନକୁ ଓଡ଼ିଶାର ଝାଳମରା କଉଡି ଯାକ ରମାନା କରି ସମାଜବକ୍ଷରେ ସଗର୍ବରେ ବିଚରଣ କରୁଅଛନ୍ତି । ସଂସାରରେ 'ତେଲିଆ ମୁଣ୍ଡରେ ତେଲ' ଓ 'ଆଇନ ଏଡିବାର ଅନେକ ଉପାୟ ଅଛି' ଏ ପ୍ରଥାଗୁଡିକ ସମ୍ୟକ ହୃଦୟଙ୍ଗମ କରାଇବା ଗ୍ରନ୍ଥଦ୍ୱୟର ଉଦ୍ଦେଶ୍ୟ; କିନ୍ତୁ କେଉଁ ଗ୍ରନ୍ଥକାର ବିଶେଷରୂପେ ଉଦ୍ଦେଶ୍ୟ ସାଧନାରେ କୃତକାର୍ଯ୍ୟ ହୋଇଅଛନ୍ତି । ତହିଁର ନିଷ୍ପତ୍ତି ପାଠକ ସାଧାରଣଙ୍କ ଉପରେ । ଛମାଣ ଆଠଗୁଣ୍ଠ ଲେଖକ ପାପର ପରାଜୟ ଦେଖାଇଦେଇ ଧର୍ମର ଜୟ ନିମନ୍ତେ ପରକାଳକୁ ଅପେକ୍ଷା କରିବାକୁ ଆମ୍ଭମାନଙ୍କୁ ଛାଡ଼ିଦେଇ ଯାଇଅଛନ୍ତି । କିନ୍ତୁ ଯୁଗ ଧର୍ମର ଲେଖକ ପାପର ପରାଜୟ ଦେଖାଇଦେଇ ଧର୍ମର ଜୟ ମଧ୍ୟ ଦେଖାଇ ଦେବାକୁ ଛାଡ଼ି ନାହାନ୍ତି । ଛମାଣ ଆଠଗୁଣ୍ଠ ପଢ଼ିସାରି ବହି ରଖିଦେଲା ବେଳେ ଆମ୍ଭମାନଙ୍କ ଚକ୍ଷୁ ନିରାଶ ଲୋତକପୂର୍ଣ୍ଣ, କିନ୍ତୁ ଯୁଗଧର୍ମପଢ଼ିସାରିଲା ବେଳକୁ ଆମ୍ଭେମାନେ ଆନନ୍ଦରେ ଗଦ୍‌ଗଦ ଉଛୁଳୁଅଛି । ଛମାଣ ଆଠଗୁଣ୍ଠ ଶେଷରେ ରୋଗୀର ମୃତ୍ୟୁଶଯ୍ୟା ନିକଟରେ ବସି ବୈଦ୍ୟରାଜଙ୍କ ହାସ୍ୟୋଦ୍ଦିକ ଶ୍ଳୋକାର୍ଥ ପୁଣି ଆଉ ଆମ୍ଭମାନଙ୍କୁ ହସ ମାଡ଼େ ନାହିଁ । କିନ୍ତୁ ଯୁଗଧର୍ମ ଶେଷରେ ବ୍ରହ୍ମବିବାହରେ ଆମ୍ଭେମାନେ ମଧ୍ୟ ନାଚିଉଠୁ । ଛମାଣ ହୋଇଯାଉ, ପ୍ରେମବାବୁଙ୍କ ସଂଗେ ଆମ୍ଭେମାନେ ମଧ୍ୟ ନାଚିଉଠୁ । ଛମାଣ ଆଠଗୁଣ୍ଠରେ ଆଉ ଗୋଟିଏ ଦୋଷ (ଲେଖକଙ୍କର 'ରେବତୀ' ଉପନ୍ୟାସରେ ମଧ୍ୟ ଏ ଦୋଷ ଥିବାର ଜଣେ ଦେଖାଇଥିଲେ) ଚମ୍ପା, ଜଗା, ମଙ୍ଗରାଜ, ଭଗିଆ, ଶାରିଆ, ସାନ୍ତାଣୀ, ମଗୁଆ ସମସ୍ତେ ଗଲେ, ଶେଷକୁ ବାକି ରହିଲା କେବଳ ମକୁନ୍ଦା ହଳିଆ । କିନ୍ତୁ ଯୁଗଧର୍ମରେ ପାପର ପରାଜୟ ଓ ଧର୍ମର ଜୟ ଘୋଷଣା କରିବାକୁ ନିତ୍ୟାନନ୍ଦ, ରାଣୀ, ଯଶୋଦା, ପ୍ରେମବାବୁ, ହରିଦାସ ସମସ୍ତେ ରହିଲେ, କେବଳ ଗଲେ ରାଧୀମାତା, ମହନ୍ତ ଓ ବଦମାଏସମାନେ – ପାପୀ ଦୁରାଚାରମାନେ । ସେ ଯାହାହେଉ ଛମାଣ ଆଠଗୁଣ୍ଠ ଲେଖକଙ୍କର ଓଡ଼ିଶାର ଅନ୍ଦର ମହଲ ବିଷୟରେ ଯେଉଁ ଅଭିଜ୍ଞତା ଅଛି, ତାହା ଯୁଗଧର୍ମ ଲେଖକଙ୍କର ହେବା ସମ୍ଭବ ନୁହେଁ । ଏ ବିଷୟରେ ଶ୍ରୀଯୁକ୍ତ ଧୂର୍ଜଟୀଙ୍କୁ ପ୍ରଥମ ସ୍ଥାନ ନ ଦେଇ କେହି ରହିପାରିଲେ ନାହିଁ । ଓଡ଼ିଆ ଘରର ଏପରି କୌଣସି ଅନ୍ଧିସନ୍ଧି ନାହିଁ ଯେଉଁଠି ସେ ଥରେ ପ୍ରବେଶ କରି ନାହାନ୍ତି । ଉଚ୍ଚଠାରୁ ନୀଚ ପର୍ଯ୍ୟନ୍ତ – ମଙ୍ଗରାଜଙ୍କ ଉଆସରୁ ଶାରିଆର ଲୁଣ୍ଡିବୁଣା ପିଣ୍ଡା ପର୍ଯ୍ୟନ୍ତ ସେ ସବୁସ୍ଥାନ ନିରେଖି ଦେଖିଅଛନ୍ତି ଓ ଦେଖାଇଅଛନ୍ତି ।

ଜଣେ ପ୍ରସିଦ୍ଧ ଆମେରିକା ଚିନ୍ତାଶୀଳ ଲେଖକ କହିଅଛନ୍ତି, ସାଧାରଣତଃ ସଂସାରରେ 'ପାପିର ଦଣ୍ଡ', 'ଅତ୍ୟାଚାରୀର ପରାଜୟ' କେବଳ ପୁସ୍ତକରେ (ନାଟକ ଓ ଉପନ୍ୟାସ) ମିଳେ, ଫଳତଃ ନୁହେଁ । ତାହା ହେଲେ ଲୋକେ ପରଦାର ମାନନ୍ତେ କିଆଁ ?



Source: Author, Digitized by PPRACHIN, SOA

ଯୁଗଧର୍ମର ନିତ୍ୟାନନ୍ଦ ଓ ରାଣୀର ଦୁଃଖ ମୋଚନ କରିବାକୁ ପ୍ରେମବାବୁ ଉପସ୍ଥିତ । କିନ୍ତୁ ସଂସାରରେ ଓ ସମାଜରେ କେତେ କେତେ ରାଣୀ ଓ ନିତ୍ୟାନନ୍ଦ କବାଟ କିଳି କାନ୍ଦୁ କାନ୍ଦୁ ଦିନ ସରୁନାହିଁ । ଦୁଃଖମୋଚନ କରିବା ଦୂରେ ଥାଉ, ପଦେ ସାନ୍ତ୍ୱନା ଦେବାକୁ କେହି ନାହିଁ ।

ପରିଶେଷରେ ଏ ଦିଓଟି ପୁସ୍ତକ ପ୍ରତି ସର୍ବସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ଆମ୍ଭମାନଙ୍କ ସିଦ୍ଧାନ୍ତ ଏକତରଫା ହୋଇଥାଇପାରେ । ସର୍ବସାଧାରଣ ଉକ୍ତ ପୁସ୍ତକଦ୍ୱୟ ପାଠକରି ସ୍ୱ ସ୍ୱ ସ୍ୱାଧୀନ ମତ ଓ ସିଦ୍ଧାନ୍ତରେ ଉପନୀତ ହୁଅନ୍ତୁ, ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥନା । ଆମ୍ଭମାନଙ୍କର ଅକିଞ୍ଚନ ମତ ଭ୍ରମପୂର୍ଣ୍ଣ ହୋଇଥାଇପାରେ । ଉତ୍କଳୀୟ ଶିକ୍ଷିତମାନେ ଆମ୍ଭମାନଙ୍କ ମତରେ 'ଖୋଳ ପର୍ବତ ମାର ମୂଷା' ନ କରି ସମାଲୋଚ୍ୟ ପୁସ୍ତକ ଦୁଇଖଣ୍ଡି ସୂକ୍ଷ୍ମଦୃଷ୍ଟିରେ ଆଲୋଚନା କରିବେ ବୋଲି ଆମ୍ଭମାନଙ୍କର ଧାରଣା ।

ପୁସ୍ତକଦ୍ୱୟରେ ଦୋଷର ମାତ୍ରା ମଧ୍ୟ ପରସ୍ଫୁଟ ରହିଅଛି – ଚିତ୍ରଣ ଓ ଭାଷା ଉଭୟ ବିଷୟରେ ଏକାଧିକ ସ୍ଥଳରେ ଆମ୍ଭମାନଙ୍କରେ ଗଭୀର ସନ୍ଦେହ । କିନ୍ତୁ ଏପରି ପୁସ୍ତକର ସଂଖ୍ୟା ଓଡ଼ିଆ ଭାଷାରେ ଅତି ଅଳ୍ପ (ଫିକଉ ଅନ୍ୟ ପ୍ରତିଶବ୍ଦ ମିଳିଲାନାହିଁ) ବୋଲି ଦୋଷ ପରିମାଣ ଦେଖାଇଲେ ଗ୍ରନ୍ଥକାରମାନ ହତୋଦ୍ୟମ ହେବା ଭୟରେ ଦୋଷର ମାତ୍ରା ଯଥାସମ୍ଭବ ଅଳ୍ପ ଦେଖାଇ କ୍ଷାନ୍ତ ରହିଲୁଁ । ଗ୍ରନ୍ଥକାରଦ୍ୱୟ ଏ କ୍ଷେତ୍ରରେ କ୍ରମଶଃ ଅଗ୍ରସର ହେବେ ଓ ସର୍ବସାଧାରଣଙ୍କୁ ନ୍ୟାଯ୍ୟପ୍ରାପ୍ୟରୁ ବଞ୍ଚିତ କରିବେ ନାହିଁ ଏହା ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା । ଜଣେ ଉଦୀୟମାନ ଲେଖକ ଆଲୋଚନାର ପ୍ରହାର ସହ୍ୟ ନ କରିପାରି ଓଡ଼ିଆ ସାହିତ୍ୟରୁ ବିଦାୟ ନେଇଥିବାର ଆମ୍ଭେମାନେ ଦେଖିଅଛୁ । ଆମ୍ଭେମାନେ ଉକ୍ତ ବନ୍ଧୁମାନଙ୍କଠାରୁ ଅନେକ ଆଶା କରିଥିଲୁ ।

ଆଉ ଗୋଟିଏ କଥା – ଯେତେ ଅଳ୍ପ ସ୍ଥାନରେ, ବାକ୍ୟରେ ଓ କଥାରେ ଭାବ ପରିସ୍ଫୁଟନ ଓ ଚରିତ୍ର ଚିତ୍ରଣର ବାଧା ନ ହୋଇ ଲେଖକ ମନୋନୀତ ଭାବ ପ୍ରକାଶ କରିପାରନ୍ତି ଲେଖକଙ୍କୁ ତେତିକି ଉଚ୍ଚ ଆସନ ଦିଆଯାଏ । କିନ୍ତୁ ଉଭୟ ପୁସ୍ତକରେ ଆମ୍ଭେମାନେ ଏ ଗୁଣର ସମ୍ୟକ ବିକାଶର ପରିଚୟ ନ ପାଇ ଦୁଃଖିତ ହେଲୁ । ସେ ଅଳ୍ପ କଥାରେ ବେଶି ବୁଝାଇପାରେ ସେ ଧନ୍ୟ । ଏ ଦୋଷରେ 'ଛ'ମାଣ ଆଠ ଗୁଣ୍ଠ' ଅପେକ୍ଷାକୃତ ଅଧିକ ଦୋଷୀ । ଉଭୟ ପୁସ୍ତକରୁ କେତେଗୁଡ଼ିଏ ପଂକ୍ତି ଉଠାଇଦେଇଥିଲେ ଚରିତ୍ରଚିତ୍ରଣ ଓ ଭାବପରିସ୍ଫୁଟନରେ ବାଧା ପଡି ନଥାନ୍ତା । ସେହି ସୀମାଟି ନିର୍ଦ୍ଦେଶ କରିବା ସିନା କୃତିତ୍ୱ । ଆପେ ନ ହସି ବା ନ କାନ୍ଦି ପରକୁ ହସାଇବା ବା କନ୍ଦାଇବା ସିନା କୃତିତ୍ୱ । ଆପେ ନ ହସିପକାଇଲେ ଯେ ସଭା ଭଣ୍ଡୋର ଯାହାର ପଦେ କଥାରେ ପୃଥିବୀ ଓଲଟିଯାଏ, ସେ ସମସ୍ତଙ୍କ ଅପେକ୍ଷା ଭାଗ୍ୟବାନ୍ ।



Source: Author, Digitized by PPRACHIN, SOA

ତତ୍ପରେ ଘରୋଇ ଭାଷା ସମସ୍ତ ଦେଶାଂଶରେ ସମାନ ନୁହେଁ । ଘରୋଇ ଭାଷା ବ୍ୟବହାର କରିବାକୁ ଗଲେ dialect ଦେଶାଂଶରେ ସମାନ ନୁହେଁ । ଘ୍‌ରୋଇ ବ୍ୟବହାର ଅବଶ୍ୟମ୍ଭାବୀ ହୋଇପାରେ । ତେବେ ତହିଁରେ ଗୋଟିଏ standard (ଆଦର୍ଶ) ଗଠିତ ହେବା ଉଚିତ । ସେଥି ନିମନ୍ତେ ଉତ୍କଣ୍ଠିତ ବା ବ୍ୟସ୍ତ ହେବାର ବିଶେଷ କାରଣ କିଛି ନାହିଁ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଘରୋଇ ଭାଷା ବ୍ୟବହାର କରିବାର ପ୍ରବୃତ୍ତି ଥରେ ଦୃଢ଼ ରୂପେ ପ୍ରବେଶ କଲେ "Survival of the fittest" (ଯୋଗ୍ୟତମର ପ୍ରତିଷ୍ଠା) ନିୟମ ଅନୁସାରେ ଗୋଟିଏ ଆଦର୍ଶ ବିଶୁଦ୍ଧ ଘରୋଇ ଇତରପ୍ରଚଳିତ ଓ ଦେଶାଂଶବିଶେଷ ପ୍ରଚଳିତ ଆମଦାନୀ ବାକ୍ୟ ଓ ଶବ୍ଦଗୁଡ଼ିକ ଉଠିଯିବ, ସାହିତ୍ୟରେ ଗୋଟିଏ ଆଦର୍ଶ ଘରୋଇ ଭାଷା ସୁଗଠିତ ହୋଇ ରହିବ । ସବୁ ଉଚ୍ଚ ଭାଷାରେ ଏ Revolution (ଯୁଗାନ୍ତର)ର ସମୟ ଦିନେ ହେଲେ ଉପସ୍ଥିତ ହୋଇଅଛି ଏଥିରେ ଭୂରି ଭୂରି ପ୍ରମାଣ ରହିଅଛି । ବଙ୍ଗଳାରେ ଘରୋଇ ଭାଷା ଲେଖିବାକୁ ଯାଇ କେହି ଢ଼ାକା ବା ପୂର୍ବବଙ୍ଗରେ ପ୍ରଚଳିତ କଥିତ ଭାଷା ବ୍ୟବହାର କରିବେ ନାହିଁ । କିମ୍ବା ଇଂରାଜୀରେ ବିଶୁଦ୍ଧ ଘରୋଇ ଭାଷା ଲେଖିବାକୁ ଯାଇ କେହି Welsh dialect (ଉଏଲସ ପ୍ରଚଳିତ କଥିତ ଭାଷା) ବା କର୍ଣ୍ଣଉଆଲର ଟିଣବ୍ୟବସାୟୀଙ୍କ ବ୍ୟବହୃତ ଭାଷା ଲେଖିବେ ନାହିଁ । ଏ ସମସ୍ତ Survival of the fittest (ଯୋଗ୍ୟତମର ପ୍ରତିଷ୍ଠା) ନିୟମ ଅନୁସାରେ ପ୍ରତିଷ୍ଠିତ ହୋଇଅଛି । ତେବେ ସ୍ଥାନବିଶେଷରେ ଓ ବ୍ୟକ୍ତିବିଶେଷର ମୁଖରେ Dialectical peculiarities (ଦେଶାଂଶପ୍ରଚଳିତ ବିଶେଷତବ) ସବୁ ଉଚ୍ଚ ଭାଷାରେ ଅନିବାର୍ଯ୍ୟ ହୋଇଉଠେ ଆମ୍ଭେମାନେ ଏଠାରେ ତହିଁର ମୀମାଂସା କରିବାକୁ ଯାଉନାହୁଁ । ଉଦାହରଣସ୍ୱରୂପ ଯୁଗଧର୍ମରେ ଗଞ୍ଜାମ ବ୍ରହ୍ମପୁରରୁ ଆଗତ ବ୍ରାହ୍ମଣପଣ୍ଡିତଙ୍କ ମୁହଁରେ ଲେଖକ ଯେଉଁ ଭାଷା ଦେଇଛନ୍ତି, ସେ ଭାଷା ସେଠାରେ ବ୍ୟବହୃତ ନ ହୋଇଥିଲେ ସୁନ୍ଦର ହୋଇ ନଥାନ୍ତା, ତେବେ ସେ ଭାଷା ଅନ୍ୟ କେଉଁଠାରେ ବ୍ୟବହାର କରିଥିଲେ ହାସ୍ୟାସ୍ପଦ ହେବାକୁ ହୋଇଥାନ୍ତା । ପୁରୀ ଜିଲ୍ଲା ଲୋକ ମୁହଁରେ ବାଲେଶ୍ୱର ପ୍ରଚଳିତ ଭାଷା ଦେଖିଲେ ଲୋକେ ନ ହସି ଆଉ କ'ଣ କରିବେ ? ତେବେ ଯେ ଓଡ଼ିଆ ଭାଷାରେ ଏପରି ଗୋଟିଏ ଆଦର୍ଶ ଘରୋଇ ଭାଷା ନାହିଁ ଏହା ଆମ୍ଭେମାନେ କହୁ ନାହୁଁ । ଏପରି ଗୋଟିଏ ଭାଷା ସର୍ବଦା ଦିସମ୍ମତ ରୂପେ ସୁପ୍ରତିଷ୍ଠିତ ହେବା ଅଧିକ ବାଞ୍ଛନୀୟ ।

ଉଲ୍ଲିଖିତ ଗ୍ରନ୍ଥକାରଦ୍ୱୟ ଆମ୍ଭମାନଙ୍କ ଅପେକ୍ଷା ଢ଼େର ଉଚ୍ଚାସନରେ ଆସୀନ । ତେବେ ସ୍ୱାଧୀନ ଭାବରେ ଓ ସଦୁଦ୍ଦେଶ୍ୟରେ କୌଣସି ମତ ପ୍ରକାଶ କରିଅଛୁ ବୋଲି ସେମାନେ ଆମ୍ଭମାନଙ୍କ ଉପରେ ବିରକ୍ତ ହେବେ ନାହିଁ, ଏହା ଆମ୍ଭେମାନେ ଉତ୍ତମରୂପେ ଜାଣୁ ଓ ସେହି ଧାରଣାର ବଶବର୍ତ୍ତୀ ହୋଇ ଉପରେ ପଦେ ଅଧେ ଲେଖିଲୁ । ଆମ୍ଭମାନଙ୍କ ଅପେକ୍ଷା ପାଠକସାଧାରଣ ଅବଶ୍ୟ କୃତିତ୍ୱ ବିଷୟରେ ଯୋଗ୍ୟତାର ବିଚାରକ, ଏଥିରେ ସନ୍ଦେହ ନାହିଁ ।



Source: Author, Digitized by PPRACHIN, SOA

# ଭାବବାଦୀ ଉଲ୍ଲାସର ଅନ୍ୱେଷଣ : "ବୃନ୍ଦାବନର ଶେଷଧୂପ"

ଲେଖକର ବ୍ୟକ୍ତିସତ୍ତା ବିଭକ୍ତିକରଣ ହେତୁ ବହୁବିଧ ପ୍ରସଙ୍ଗ ନିର୍ବାଚନ ସୂଚିତ କରେ – ଲେଖକର ସମାଜ ସଂପୃକ୍ତି ଏକ ନିର୍ଦ୍ଦିଷ୍ଟ ଭାବାଦର୍ଶଦ୍ୱାରା ଆକ୍ରାନ୍ତ ନୁହେଁ । ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ଆବେଷ୍ଟନୀ ମଧ୍ୟରେ ଲେଖକଟିଏ ନିର୍ମିତ ହୁଏ ଏବଂ ତାର କୃତି ସମୂହ ସେଇ ସଂସ୍କୃତି ମଧ୍ୟରେ ଘୂର୍ଣ୍ଣାୟମାନ ।

The author, Foucault suggests, is not the source of the text but simply one of the ways in which it signifies. Rather than developing spontaneously as the 'attribution of a discourse to an individual' the author is constructed in relation to the text's position within a particular culture. (*Bennett,P-25*)

'ବୃନ୍ଦାବନର ଶେଷ ଧୂପ' ଗଳ୍ପ ସଂକଳନ (୨୦୦୨, ଦ୍ୱିତୀୟ ସଂସ୍କରଣ)ରେ ସଂଯୋଜିତ 'ମୁଁ କାହିଁକି ଲେଖେ ?' ଶୀର୍ଷକ ପ୍ରତ୍ୟୁତ୍ତରରେ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ କହନ୍ତି, "ସତ୍ୟ ପଛରେ ଧାଇଁଲା ବେଳେ ମୁଁ ଜଣେ ଦାର୍ଶନିକ ଓ ଯୋଗୀ । ଶିବ ବା ମଙ୍ଗଳ ପଛରେ ଧାଇଁଲା ବେଳେ ମୁଁ ଜଣେ କର୍ମୀ ଓ ସୁନ୍ଦର ପଛରେ ଧାଇଁଲା ବେଳେ ମୁଁ ଜଣେ ପ୍ରେମୀ ଓ ମହତ ପଛରେ ଧାଇଁଲା ବେଳେ ମୁଁ ଜଣେ ଭକ୍ତ । ତେଣୁ ମୋର ଲେଖା ଭିତରେ ନିଶ୍ଚୟ ଜ୍ଞାନ, କର୍ମ, ପ୍ରେମ ଓ ଭକ୍ତିର ଉପାଦାନ ରହିଥିବ – ସେଥିଲାଗି ପ୍ରେରଣା ରହିଥିବ ।"(ପୃ-୧୫୦) ଭଂଗୁର ବ୍ୟକ୍ତି ସତ୍ତା ଲେଖକୀୟ ସ୍ୱୀକୃତି ପ୍ରମାଣ କରେ ସେ ଏକ ନିର୍ଦ୍ଦିଷ୍ଟ ଭାବାଦର୍ଶ ଦ୍ୱାରା ପରିଚାଳିତ ନୁହନ୍ତି । ଅନ୍ୟ ଏକ ସ୍ଥାନରେ ମହାପାତ୍ର ନୀଳମଣି କୁହନ୍ତି, "ମୁଁ ଗୋଟିଏ ରାଜନୈତିକ ରାଷ୍ଟ୍ର ଉପରେ ବିଶ୍ୱାସ କରେ ନାହିଁ,ମୋର ଧାରଣା ରାଜନୈତିକ ରାଷ୍ଟ୍ର ଗୋଟାଏ ଅହଂକାରୀ ପ୍ରମତ୍ତ ଆସୁରିକ ଶକ୍ତି । ତାହା ଗଣତନ୍ତ୍ର ହେଉ ବା କମ୍ୟୁନିଷ୍ଟ ରାଷ୍ଟ୍ର । ମୁଁ ସାଂସ୍କୃତିକ ରାଷ୍ଟ୍ର ଗଠନର ପକ୍ଷପାତି । ସେଥିପାଇଁ ମୋର ସହୃଦୟ କ୍ରିଟିକମାନେ ମୋ ଲେଖା ଭିତରୁ ବ୍ୟକ୍ତି ଚେତନା ଓ ସମାଜ ଚେତନାର ଏକ ଉଦାର ପ୍ରେମମୟ ମିଳନ ଲକ୍ଷ୍ୟ କରିଥାନ୍ତି ।"(ପୃ-୧୫) ଆଣ୍ଟୋନିଓ ଗ୍ରାମଚି 'The prison Note Books' ପୁସ୍ତକରେ ରାଷ୍ଟ୍ରକୁ ଏକ ଦମନ ମୂଳକ ମାରଣ



Source: Author, Digitized by PPRACHIN, SOA

ଯନ୍ତ୍ର ଭାବେ ବର୍ଣ୍ଣନା କରିବା ସହିତ ତାହା ବ୍ୟକ୍ତି-ସ୍ୱାଧୀନତାର ପରିପନ୍ଥୀ ବୋଲି ଅଭିହିତ କରିଛନ୍ତି । "…. one might say that state = Political Society + Civil Society, in other words hegemony protected by the armour of coercion." (P-263) ତେବେ ଏଭଳି ଏକ ରାଷ୍ଟ୍ରର ଆବଶ୍ୟକତା ରହିଛି, ମହାପାତ୍ର ନୀଳମଣିଙ୍କ ଦୃଷ୍ଟିରେ 'ସାଂସ୍କୃତିକ ରାଷ୍ଟ୍ର' ଯିଏ ବ୍ୟକ୍ତି ଚେତନାକୁ ପ୍ରବୋଧିତ କରିବା ସହିତ ସୁଖମୟ ନୀଡ଼ ରଚନାର ଅନୁବର୍ତ୍ତୀ ହେବ ଏବଂ ମଣିଷ ଭିତରୁ ମାନବୀୟ ପ୍ରବୃତ୍ତି ଗୁଡିକୁ ନିଷ୍କ୍ରାନ୍ତ କରି ଦୈବୀ ପ୍ରବୃତ୍ତିରେ ବିମଣ୍ଡିତ କରିବ । ପ୍ରଶ୍ନ ଉଠେ, ଲେଖକ ପରିକଳ୍ପିତ 'ସାଂସ୍କୃତିକ ରାଷ୍ଟ୍ର'ର ସଂଜ୍ଞା, ସ୍ୱରୂପ ଓ କାର୍ଯ୍ୟନିର୍ବାହ ପଦ୍ଧତିଟି କ'ଣ ? ସନ୍ଦେହ ଜନ୍ମେ ସାଂସ୍କୃତିକ ରାଷ୍ଟ୍ର କ'ଣ ସାଂସ୍କୃତିକ ହେଜିମନି ଠାରୁ ମୁକ୍ତ ରହିବ ? କାରଣ ସାଂସ୍କୃତିକ ଅଭିନିବେଶ ତତ୍‌ସଂପୃକ୍ତ ସମାଜରେ ମଣିଷର ସ୍ଥିତାବସ୍ଥା ଉପରେ ନିର୍ଭରଶୀଳ । ନିର୍ଭର କରେ ମଣିଷର ଆର୍ଥନୀତିକ ବିଧିବ୍ୟବସ୍ଥା, ମାନବିକତା ଉପରେ । ପ୍ରତିଷ୍ଠାର ସଂକଳ୍ପ ଦୃଷ୍ଟି ଓ ବ୍ୟକ୍ତି ସ୍ୱାଧୀନ ତଥା ସ୍ୱତନ୍ତ୍ର୍ୟ ସ୍ଥାପନ ଯାହା ତାର ମାନସିକତାକୁ ସେଇ ପର୍ଯ୍ୟାୟରେ ପହଞ୍ଚାଇବା ସହିତ ପ୍ରଚୋଦକ ଶକ୍ତିଭାବେ କାର୍ଯ୍ୟ କରିବ । ଏହିସବୁ ସାମାଜିକ ଅବ୍ୟବସ୍ଥା ଓ ଅସମାନତା ଭିତରେ ଲେଖକ ବଂଚିରହି ତାର ସୃଜନ ପ୍ରକ୍ରିୟାକୁ ଗତିଶୀଳ କରାଏ, କରିବାକୁ ବାଧ୍ୟ । ମାର୍କସ ସେଥିପାଇଁ କହିଛନ୍ତି, 'Man's social existence determines his consciousness… ।' ମହାପାତ୍ର ନୀଳମଣି ଇଉଟୋପିଆନ୍ ନୁହଁନ୍ତି ମାତ୍ର ତାଙ୍କର ସାଂସ୍କୃତିକ ରାଷ୍ଟ୍ର ଏକ ସ୍ୱପ୍ନ ବିଳାସର ଭୂମିଖଣ୍ଡ ।

ରାଜନୀତି ରହିଛି ତେଣୁ ରାଷ୍ଟ୍ର ରହିବ । ରାଷ୍ଟ୍ର ରହିଛି ତେଣୁ ରାଷ୍ଟ୍ରର ଦମନ ନୀତି ରହିବ । ଗୋଟିଏ ବଞ୍ଚିତ (Multitude) ସମାଜରେ ବଞ୍ଚିତ ଜୀବନ ନିର୍ବାହ କରୁଥିବା ଲେଖକଟି ଯଦି ବିଜ୍ଞାନ ସମ୍ମତ ଭାବାଦର୍ଶ ଠାରୁ ଦୂରେଇ ରହି ଭାବବାଦର ଶିକାର ହୁଏ ତାର ସୃଷ୍ଟି ସମୂହ ନାରସିଷ୍ଟ ହେବା ପାଇଁ ବାଧ୍ୟ । ତେଣୁ ଶ୍ରୀଯୁକ୍ତ ମହାପାତ୍ରଙ୍କ ଲେଖକୀୟ ସତ୍ତା ଦୋଦୁଲ୍ୟମାନ, ବାୟବୀୟ ତଥା ବିରୋଧାଭାସ ପୂର୍ଣ୍ଣ । ଯଦି ଜଣେ ଲେଖକ ରାଷ୍ଟ୍ର ନିର୍ମିତ କଳ ଦ୍ୱାରା ପ୍ରତିଷ୍ଠିତ ଓ ପୁରସ୍କୃତ ହୋଇଛି ସେଇ ରାଷ୍ଟ୍ର ନିକଟରେ ତା'ର କୃତଜ୍ଞତା ସ୍ୱୀକାର କରିବାର ମାନସିକତା ଅବଚେତନ ମନରେ ବସାବାନ୍ଧି ସାରିଛି । ସାରଳା ଦାସଙ୍କ ରାଷ୍ଟ୍ର ଦୃଷ୍ଟି ଯେଉଁ ବ୍ୟାପକତା ଓ ସାମଜ ପ୍ରତି ଯେଉଁ ପ୍ରତିବଦ୍ଧତା ରହିଛି ତାହା କ'ଣ ଆଲୋଚ୍ୟ ଲେଖକଙ୍କୁ ପ୍ରେରଣା ଦେଇନାହିଁ । ଏଇ ପରିପ୍ରେକ୍ଷୀରେ ଗୋଟିଏ ଉଦାହରଣ ଦେଲେ ସ୍ପଷ୍ଟ ହୋଇ ଉଠିବ ଆମର ବକ୍ତବ୍ୟ ଓ ଲେଖକଙ୍କ ସୃଜନଶୀଳ ମାନସିକତାର ସଂଦିଗ୍ଧ ସ୍ନାୟୁତନ୍ତ୍ର ।

ଜନ୍ କୀଟସ୍‌ଙ୍କ 'Ode on a Grecian Urn' କବିତାର ଶେଷ ପଙ୍‌କ୍ତି – 'Beauty is truth, truth beauty' ସଂପର୍କରେ ବେନେଟ୍ କୁହନ୍ତି – "Much ink - too much ink - has been spilt over these words as critics try to



Source: Author, Digitized by PPRACHIN, SOA

work out who is peaking here, whether a general or only a lo-cal, a particular propositions involved, whether the statement can be said to be undermined by authorial or narratorial or poetic irony, and indeed whether the statement is in fact true.But in truth it may be that these questions can never be resolved since the statement is both a general, universalizing statement - in-deed, it asserts it self as such - and part of a poem, with its own specificity, its own mode of being, and including its own particu-lar strategies of indirecton. And the status of this example as an example is itself part of the problem." (P-125)

(ଦୁଇ)

ମହାପାତ୍ର ନୀଳମଣି ସାହୁଙ୍କ ଗଳ୍ପ କାରିଗରୀ ଉପରେ ଗଳ୍ପ ସମାଲୋଚକ ଡ. କପିଳେଶ୍ୱର ଗାହାଣ କୁହନ୍ତି, "ପ୍ରଥାଗତ ମୂଲ୍ୟବୋଧର ବିଶେଷ ଚାହାଣୀ ଓ ତା'ର ଅବିଚ୍ଛେଦ୍ୟ ଅନ୍ତର୍ମୁଖୀନତା ତାଙ୍କ ଗଳ୍ପଧାରାକୁ ଯେପରି ପ୍ରଭାବିତ କରିପାରିଛି, ଆଧୁନିକ ଜୀବନର ମାନସିକ ଆଲୋଡ଼ନ, ବୁଦ୍ଧିର ଚମତ୍କାର କୌଶଳ ଜ୍ଞାନର ବିଚିତ୍ର ବିକାଶ ଓ ସର୍ବୋପରି ଏକ ତୀବ୍ର ଜୀବନ ବୋଧର ନିରୁପାୟ ଆର୍ତ୍ତି ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକୁ ସେହିପରି ମଧ୍ୟ ସ୍ୱତନ୍ତ୍ର ମହିମା ପ୍ରଦାନ କରିପାରିଛି । ... ସୃଷ୍ଟି ସୌନ୍ଦର୍ଯ୍ୟ ପ୍ରତି ଆବେଗିକ ସଂପର୍କ ଓ ମଣିଷ ଜୀବନ ପ୍ରତି ଏକ ଅନ୍ତରଙ୍ଗ ନିବିଡ଼ତା ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକୁ ଅତ୍ୟନ୍ତ ବଳିଷ୍ଠ ଓ ଶକ୍ତିଶାଳୀ କରିପାରିଛି ।"(ପୃ-୧୧୫) ଜୀବନ ଓ ଜଗତ ପ୍ରତି ଗାଳ୍ପିକଙ୍କ ଉତ୍ତରିତ ମାର୍ମିକ ଉପଲବ୍ଧି ହିଁ ତାଙ୍କ ଗଳ୍ପକୁ ଏକ ଭିନ୍ନ କଳା ଗୌରବରେ ଅଭିସିକ୍ତ କରିଛି । କଳା ପାଇଁ କଳା ଏବଂ ଜୀବନ ପାଇଁ କଳାର ଅପୂର୍ବ ସମିଶ୍ରଣରେ ଗାଳ୍ପିକଙ୍କ କଳାତ୍ମକ ସାଂସ୍କୃତିକ ପର୍ଯ୍ୟବେକ୍ଷଣ ଯଥାର୍ଥରେ ମହିମାନ୍ୱିତ ହୋଇଛନ୍ତି ଅଭିଶପ୍ତ ଗନ୍ଧର୍ବ, ସୁମିତ୍ରାର ହସ ପରି ଅନେକ ଗଳ୍ପ । କାରଣ ସହୃଦୟତା, ଆତ୍ମନିଷ୍ଠ ଅଭିବ୍ୟକ୍ତି ଓ ତଲ୍ଲିନତା ପ୍ରଭୃତି ଲେଖକୀୟ ସୁଗୁଣ ସମୂହ ଏକନିଷ୍ଠ ଭାବେ ମହାପାତ୍ର ସାହୁଙ୍କ ପ୍ରତିମୁହୂର୍ତ୍ତରେ ତାଡ଼ନା ଦେଇଛନ୍ତି ଅନୁରୂପ ଅମୃତ ଅଭିବ୍ୟକ୍ତି କରିବା ପାଇଁ । ସତ୍ୟନିଷ୍ଠ ଶିକୁଳିରେ ବନ୍ଧା ହୋଇଥିବା ଶ୍ରୀଯୁକ୍ତ ସାହୁଙ୍କ ସୃଜନ-ଚେତନା ଯେତେ ଅପ୍ରିୟ ଅମୋଘ ଅସ୍ତ୍ରଟିଏ ହେଉନା କାହିଁକି, ତାହା ସହଜରେ, ବିନା ସଂକୋଚନରେ ସଂକ୍ରମଣ କରିପାରେ ପାଠକର ପ୍ରାଣ ବିନ୍ଦୁକୁ ।

ସ୍ୱାଧୀନତା ପରବର୍ତ୍ତୀ ଗାଳ୍ପିକମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ ଜଣେ ଶ୍ରଦ୍ଧାଶୀଳ ଉଚ୍ଚାରଣ । ଗାନ୍ଧୀଙ୍କ ପରି ସେ ଆପଣାର ନୈତିକ ଚୌହଦୀକୁ ବିସ୍ତାରିତ



Source: Author, Digitized by PPRACHIN, SOA

କରିଛନ୍ତି ଭାବବାଦ ପ୍ରତିପୋଷିତ ଗ୍ରାମ୍ୟ ସଭ୍ୟତାକୁ । ଗାରିମା ବିମଣ୍ଡିତ ଗାଁର ଅଫୁରନ୍ତ ବେଦନା ମିଶ୍ରିତ ମଧୁର ଭାବ ରାଜି ତାଙ୍କ ସୃଜନ ପ୍ରକ୍ରିୟାକୁ ପ୍ରଲୁବ୍ଧ କରିଛି । ଗ୍ରାମୀଣ ସଭ୍ୟତା ଓ ସାଂସ୍କୃତିକ ଅବରୋଧ ଭିତରେ ଲୁକ୍‌କାୟିତ ଭାରତର ଅନ୍ତରାତ୍ମା ଆବିଷ୍କାର ପାଇଁ ଗାଳ୍ପିକ ସତତ ପ୍ରଯତ୍ନ ପ୍ରୟାସୀ । ଯୁଗ ଯୁଗ ଧରି ବ୍ରାତ୍ୟଭୂମି ଓଡ଼ିଶାର ପୁରପଲ୍ଲୀର ପ୍ରଚଳିତ ସାଂସ୍କୃତିକ ପରିଚର୍ଯ୍ୟା ସହିତ ତାର ଛାୟାଚିତ୍ରକୁ ଜୀବନ୍ତ ଭାବେ ଉପସ୍ଥାପନା କରିବା ତାଙ୍କ ଗଳ୍ପ କାରିଗରୀର ଅନ୍ୟ ଏକ ବିଶେଷତ୍ୱ । ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିରେ ସଂକ୍ରମିତ ଗ୍ରାମ୍ୟ ସୌନ୍ଦର୍ଯ୍ୟର ଅବକ୍ଷୟୀ ରୂପ ସଂଦର୍ଶନ କରି ନିରବରେ ଅଶ୍ରୁପାତ କରିଛନ୍ତି, ବ୍ୟଙ୍ଗ କରିଛନ୍ତି, ପ୍ରତିବାଦ କରିଛନ୍ତି । ଯେଉଁ ପ୍ରତିବାଦ ଭିତରେ ଭରି ରହିଛି ଏକୁଟିଆପଣର ମର୍ମସ୍ପର୍ଶୀ, ମର୍ମଦାହୀ ଆକୁଳ ନିବେଦନଟି । ଭାଗବତ ଟୁଙ୍ଗୀରେ ପ୍ରଶିକ୍ଷିତ ଗ୍ରାମ୍ୟ ମଣିଷଟି ଅନୁଭବ କରୁଛି ଶହ ଶହ ବର୍ଷଧରି ଯେଉଁ ସାଂସ୍କୃତିକ ଅବବୋଧଟି ତାର ମନ ଓ ପ୍ରାଣକୁ ଉଲ୍ଲସିତ କରୁଥିଲା, ଜୀବନ ବଞ୍ଚିବା ପାଇଁ ପ୍ରେରଣାର ଉତ୍ସଟିଏ ହୋଇଥିଲା, ତାହା ଯେପରି ଧୀରେ ଧୀରେ ଲିଭିଯାଉଛି । ପାଦତଳୁ ଗାଁର ଅନୁପମ ସଂସ୍କୃତି ସହିତ ବିଜଡ଼ିତ ଭାବଗତ ସଂପର୍କର ମାଟି ଖସି ପଡୁଛି ବ୍ୟଥା ଓ ବେଦନାର ଭାର ବୋହି ବୋହି । ଗାଳ୍ପିକଙ୍କ ଭାବବାଦୀ ମନସ୍କତାରେ ଭରି ଦେଇଛି କ୍ରମଶଃ ଅପସୃୟମାଣ ସଂସ୍କୃତି ପ୍ରତି ଅମାପ ଭଲ ପାଇବା । ବ୍ୟଥା ବିଧୁରିତ ତାଙ୍କର ସ୍ନାୟୁତନ୍ତ୍ର ଧୀରେ ଧୀରେ ପରସ୍ତ ପରସ୍ତ ହୋଇ ସ୍ମୃତିର ପାଖୁଡ଼ା ଖୋଲି ଲିପିବଦ୍ଧ ହୋଇଛି ପୃଷ୍ଠା ପରେ ପୃଷ୍ଠା ବର୍ଣ୍ଣନା ବିନ୍ୟାସରେ । ତାଙ୍କ ଗଳ୍ପରେ ରହିଛି ଚଟୁଳ ହାସ୍ୟରସ । କିନ୍ତୁ ତାହା ଆହ୍ଲାଦ ଦେବା ପରିବର୍ତ୍ତେ ଅନ୍ତରାତ୍ମାକୁ ବିଗଳିତ କରୁଣାରେ ସିକ୍ତ କରିଛି । ଗାଁରେ ହଜାର ହଜାର ବର୍ଷରୁ ନିଜର ସ୍ଥିତି ଜାହିର କରୁଥିବା ବଟବୃକ୍ଷ ଠାରୁ ଗାଁ ଠାକୁରାଣୀ ଓ ଦରଦୀ ପ୍ରାଣ ମଣିଷ ସଂପର୍କିତ କିମ୍ବଦନ୍ତୀକୁ ଆଧାର କରି ତାଙ୍କର ଗଳ୍ପ କାରିଗରୀ ବେଶ୍ ଚମକପ୍ରଦ । ଯେଉଁଥିରେ ଆମେ ଦେଖିପାରୁ କୋଣାର୍କର କୋଟୀକମ, ବେଳାଭୂମି ବିସ୍ତାରିତ ପ୍ରଶାନ୍ତ ହୃଦୟ, ପର୍ବତର ଗୁରୁଗମ୍ଭୀର ଦାଂଭିକ ଉଚ୍ଚାରଣ, ବନସ୍ପତିର ମୁଗ୍ଧ ମାଧୁରିମା ।

କବିଗୁରୁ ରବୀନ୍ଦ୍ରନାଥଙ୍କ ‘ଛୋଟ ପ୍ରାନ୍ ଛୋଟ ବ୍ୟଥା...’ ଗଳ୍ପ ସଂପର୍କିତ ଅଭିବ୍ୟକ୍ତିଟି ମହାପାତ୍ର ନୀଳମଣିଙ୍କ ପ୍ରତିଟି ଗଳ୍ପ ପାଇଁ ପ୍ରଯୁଜ୍ୟ ହେଲେ ମଧ୍ୟ, ଗଳ୍ପର ଆକାର ବେଶ୍ ପୃଥୁଳ । ବିବିଧ ରସସିକ୍ତ ବର୍ଣ୍ଣବିନ୍ୟାସର ବ୍ୟାପକତା ପାଠକ ପ୍ରାଣକୁ ଏପରି ବାନ୍ଧି ରଖେ ଯେ ପାଠକର ମନ ସ୍ୱତଃପ୍ରବୃତ୍ତ ଭାବେ ଆଗେଇ ଚାଲେ ଗଳ୍ପର ସୀମା ସରହଦକୁ ସ୍ପର୍ଶ କରିବା ପାଇଁ । “ମହାପାତ୍ର ସାହୁଙ୍କର ଗଳ୍ପରେ ପ୍ରାୟ ସାଂସାରିକ ମଣିଷଟିର ଶାରୀରିକ ପରିବେଶର ବିଭିନ୍ନତା ଭିତରେ ଏକ ସୂକ୍ଷ୍ମମାନସିକ ଅନୁଭବର ସ୍ପର୍ଶ ମିଳିଥାଏ ।” (ବାରିକ,ପୃ-୯୯) ସେହି ସୂକ୍ଷ୍ମ ମାନସିକ ଉଦ୍‌ବେଳନଟିକୁ ଗଳ୍ପାରମ୍ଭରୁ ଶେଷ ପର୍ଯ୍ୟନ୍ତ ଗାଳ୍ପିକ ଅତି ନିଷ୍ଠାର ସହିତ ଲାଳନ ପାଳନ କରିଛନ୍ତି । ଉଦ୍‌ବେଳିତ ମନର



Source: Author, Digitized by PPRACHIN, SOA

କୈନ୍ଦ୍ରିକ ପ୍ରାଣବିନ୍ଦୁଟିକୁ ଗାଳ୍ପିକ ଏପରି ଭାବେ ପ୍ରତିଷ୍ଠା କରିଛନ୍ତି ଯେ ତାହା ପାଠକର ଅନ୍ତରକୁ ଦହନ କରେ, ବିଭୋର କରେ । ବିଭୋରିତ ସେଇ ଆତ୍ମସତ୍ତାଟି ଗାଳ୍ପିକ ନିର୍ଦ୍ଦେଶିତ ପଥ ଅନୁସରଣ କରିବା ପାଇଁ ବିବଶ ହୋଇପଡେ । ପରିଣତିରେ ଏକ ଅଶ୍ରୁଳ ଆହ୍ଲାଦକୁ ଆମନ୍ତ୍ରଣ କରେ, ଉପଲବ୍ଧି କରେ ଜୀବନର ବିଚିତ୍ର ଇନ୍ଦ୍ରଧନୁକୁ । ତାଙ୍କର ଗଳ୍ପ-ବର୍ଣ୍ଣନା ଅତି ପ୍ରାକୃତିକ ପରି ମନେ ହେଲେ ମଧ୍ୟ ଏପରି କିଛି କିଛି ଆତ୍ମ ସମ୍ବେଦନ ରହିଥାଏ ଯାହା ସହଜରେ ପାଠକକୁ ଭାବ-ଜଗତରୁ ଓଟାରି ଆଣି ବାସ୍ତବ ଭୂମିର ଠିଆ କରାଇଦିଏ । ତେଣୁ ବାସ୍ତବ ଜୀବନର ରୂପଚିତ୍ର ଅଙ୍କନ କଲାବେଳେ, ଗାଳ୍ପିକ ଅତି ଯତ୍ନ ସହକାରେ ସେଇ ଅତି ପ୍ରାକୃତିକତାକୁ ସାଧାରଣୀକରଣ କରିବାରେ ପ୍ରୟାସୀ ହୋଇଛନ୍ତି । ସେଠି ଅଛି ବିଷ୍ଣୁ ଓ ଶିବଙ୍କ ସାଂସାରିକ ଜୀବନ ପ୍ରତି ଉଭୟ ବିତୃଷ୍ଣା ଓ ଭଲ ପାଇବା । ସେଠି ଅଛି ସାଂପ୍ରଦାୟିକ ସଦ୍‌ଭାବନାର ମନ୍ତ୍ର, ସେଠି ମଧ୍ୟ ରହିଛି ଭାବବାଦର ଶିକାର ହୋଇଥିବା ଦେଉଳ ପୂଜକର ଆତ୍ମହତ୍ୟା ।

"କ୍ଷୁଦ୍ର ଗଳ୍ପରେ ଭାବ-ସାନ୍ଦ୍ରତା ଏକାନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ପରିବେଶିତ ଭାବ ସଂହତି ଭାଷା ପ୍ରୟୋଗର ସାରଲ୍ୟ, ଶୈଳୀର ସ୍ୱଚ୍ଛତା ଓ ସାନ୍ଦ୍ରତା କ୍ଷୁଦ୍ରଗଳ୍ପକୁ ମହିମାନ୍ୱିତ କରାଇଥାଏ ।" (ସାମଲ, ପୃ-୪୩୭) ଗଳ୍ପର ଏହି ତାତ୍ତ୍ୱିକ ଦିଗପ୍ରତି ମହାପାତ୍ର ନୀଳମଣି ସାହୁ ବେଶ୍ ସଚେତନ ଥିବାପରି ମନେ ହୁଅନ୍ତି । ଗଳ୍ପ ମଧ୍ୟରେ ଗାଳ୍ପିକଙ୍କ ନିଖୁଣ ଅନ୍ତଃନିବେଶ, ଯୁକ୍ତିବାଦୀ ମନନଶୀଳତା, ଘଟଣା / ଭାବର କ୍ରମାନ୍ୱୟତା, ପ୍ରାଞ୍ଜଳ ବ୍ୟବହାରିକ ଭାଷା ବ୍ୟବହାରର ଦକ୍ଷତା ଏବଂ ଶବ୍ଦ ନିର୍ବାଚନ ଓ ତାର ସଠିକ୍ ପ୍ରୟୋଗ ଯଥାର୍ଥରେ ଗଳ୍ପର ପାରିପାଟୀକୁ କରିଛି ସ୍ୱଚ୍ଛ, ହୃଦଗ୍ରାହୀ । ସ୍ଥାପତ୍ୟ ନିର୍ମାଣ ଓ ସୌନ୍ଦର୍ଯ୍ୟ ସଂଦର୍ଶନରେ ମହାପାତ୍ର ନୀଳମଣିଙ୍କ ଗଳ୍ପ ଗୁଡିକ ମୁକ୍ତିବୋଧ ପ୍ରୟାସୀ ।

## (ତିନି)

ଜଣେ ପ୍ରଥିତଯଶା ପ୍ରାବନ୍ଧିକ, ଔପନ୍ୟାସିକ, ରମ୍ୟରଚକ ଭାବେ ମହାପାତ୍ର ନୀଳମଣି ସାହୁ ଯେପରି ଓଡ଼ିଆ ସାହିତ୍ୟରେ ନିଜର ସ୍ଥାନ ନିରୂପିତ କରିଛନ୍ତି ସେଇପରି ଗଳ୍ପ ରଚନାରେ ଅଭିନବ ପାଟବତା ହେତୁ ବହୁ ସମ୍ମାନରେ ସମ୍ମାନିତ ଓ ପାଠକୀୟ ଶ୍ରଦ୍ଧାର ସହଭାଜନ ହୋଇପାରିଛନ୍ତି । ଉକ୍ତ ଆଲୋଚନା ପର୍ବର ପୂର୍ବ ଦୁଇଟି ପରିଚ୍ଛେଦରେ ମହାପାତ୍ର ନୀଳମଣିଙ୍କ ସାମାଜିକ ପ୍ରତିବଦ୍ଧତା ଓ ଗଳ୍ପ ଗଢ଼ଣର ଅନ୍ତର୍ନିହିତ ଦୃଷ୍ଟିଭଙ୍ଗୀ ସଂପର୍କରେ ସାମାନ୍ୟ ସୂଚନା ଦିଆଯାଇଛି । ଏହି ପରିଚ୍ଛେଦରେ ତାଙ୍କର ଗଳ୍ପ ସଂକଳନ 'ବୃନ୍ଦାବନର ଶେଷ ଧୂପ' ସନ୍ନିବେଶିତ ଗଳ୍ପ ଗୁଡିକର ଭାବଭୂମି ଉପରେ ଆଲୋଚନା କରାଯିବ । ଏହି ଗଳ୍ପ ସଂକଳନଟି ୧୯୮୩ ମସିହାରେ ପ୍ରକାଶ ପାଇ ଅଶେଷ ପାଠକୀୟ ଆଦୃତି ଲାଭ କରିଥିଲା । ସମ୍ଭବତଃ ସେଇ ଦୃଷ୍ଟିରୁ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ୨୦୦୨



Source: Author, Digitized by PPRACHIN, SOA

ମସିହାରେ । ଏହି ସଂକଳନକୁ ଗୌରବ ବିମଣ୍ଡନ କରିଥିବା ଗଳ୍ପ ଗୁଡିକ ହେଲା, ଶିବକୂଟ, ଗଣାଧିପତୟେନମଃ, ଜଗନ୍ନାଥ ସ୍ଥଳ ବୃତ୍ତାନ୍ତମ, ମାତୃରୂପେଣ ସଂସ୍ଥିତା, ବୃନ୍ଦାବନର ଶେଷଧୂପ, ହରିହର ମିଳନ ସମ୍ବାଦ, ବଟମହାତ୍ମ୍ୟ ବା ଆଲାମ ଚଣ୍ଡୀ ବୃତ୍ତାନ୍ତ ଏବଂ ମମ ମାୟା ଦୂରତ୍ୟୟା । ଗଳ୍ପଗୁଡିକର ନାମକରଣ ମିଥିକାଲ । ଧର୍ମୀୟ ବିଶ୍ୱାସବୋଧ ଉପରେ ପ୍ରତିଷ୍ଠିତ ପ୍ରତିଟି ଗଳ୍ପ ଲୌକିକ ଜୀବନକୁ ପ୍ରତିଭାତ କରିଛି ।

'ଶିବକୂଟ'ର କଥନ ଭାଗ ସରଳ । ଗରିବ ବ୍ରାହ୍ମଣ ପୁଅ ଶ୍ୟାମବନ୍ଧୁକୁ ଲୁକାୟିତ ଭାବେ ବିବାହର ସ୍ମାରକୀ ସୁନାହାର ଅର୍ପଣ କରିଛି ସେଇ ଗାଁର ଧନୀକ କନ୍ୟା ଚନ୍ଦ୍ରମା । ପର ମୁହୂର୍ତ୍ତରେ ଲୋକ ଲଜ୍ଜା ଏବଂ ଭୟ ହେତୁ ସୁନାହାର ହରଣର ଦୋଷ ଲଦି ଦେଇଛି ଶ୍ୟାମ ଉପରେ । ନିଜ ସନ୍ତାନ ପ୍ରତି ଅତୁଟ ବିଶ୍ୱାସ ସ୍ଥାପନା କରିଥିବା ଶ୍ୟାମା ମା ପରମ କାରୁଣିକ ଶିବଙ୍କ ଆଗରେ ନିଜ ଭକ୍ତିମତାର ପରୀକ୍ଷା ପାଇଁ ପ୍ରାର୍ଥନା କରିଛି । ପୋଲିସ୍ ଦ୍ୱାରା ନିର୍ଯ୍ୟାତିତ ଶ୍ୟାମ ମଧ୍ୟ ଅନୁରୂପ ପ୍ରଣତି ଜଣାଇଛି । ଏହି ଅବସରରେ ଚନ୍ଦ୍ରମା ନାଗସାପ ଦ୍ୱାରା ଦଂଶିତ ହୋଇଛି । ଗ୍ରାମର ବିପତ୍ତିକୁ ଏଡ଼ାଇ ସୁଖ ସମୃଦ୍ଧି ସ୍ଥାପନ କରିବାର ସାମର୍ଥ୍ୟ ଥିବା ଗ୍ରାମବାସୀଙ୍କ ଦ୍ୱାରା ବହୁକାଳରୁ ପୂଜିତ ଶିବଙ୍କ ଉପରେ ରହିଥିବା ଅଖଣ୍ଡ ବିଶ୍ୱାସକୁ ଆଧାର କରି ଗ୍ରାମଲୋକେ ଚନ୍ଦ୍ରମାକୁ ମନ୍ଦିର ସାମ୍ନାରେ ଶୋଭାପାଉଥିବା ବାସୁଆ ବଳଦ ପାଖରେ ଶୋଇଦେଇ ଆଶୁ ନିରୋଗ ପାଇଁ ନାମ ସଂକୀର୍ତ୍ତନରେ ସମସ୍ତେ ବିଭୋର । କିଛି କ୍ଷଣ ଉପରାନ୍ତେ ଚନ୍ଦ୍ରମା ପ୍ରକୃତିସ୍ଥ ହୋଇଉଠିଛି ଏବଂ ସତକଥା ପୋଲିସ୍ ଆଗରେ କହିବା ପାଇଁ ସମବେତ ଜନତାଙ୍କୁ ଅନୁରୋଧ କରିଛି । ସତ୍ୟର ଜୟ ବୋଲି ସମସ୍ତେ ସେହି ଶିବଙ୍କୁ ପ୍ରଣତି ଜଣାଇଛନ୍ତି । କିନ୍ତୁ ଅପର ପକ୍ଷରେ ଅଚେତ୍ ଅବସ୍ଥାରେ ଥିବା ଶ୍ୟାମର ଏବଂ ଚନ୍ଦ୍ରମାର ଅଜା ରଘୁ ସେନାପତି ଚିର ନିଦ୍ରା ଯାଇଛନ୍ତି । ଶ୍ୟାମ ସନ୍ନ୍ୟାସ ଧର୍ମରେ ଦୀକ୍ଷିତ ହୋଇ କାଶୀ କ୍ଷେତ୍ରକୁ ଗମନ କରିଛି କିନ୍ତୁ ନିରିମାଖି ପ୍ରେମ ବିଧୁରିତ ଚନ୍ଦ୍ରମା ପାଗଳିନୀ ହୋଇଯାଇଛି ।

ଧନବାନ ବ୍ୟକ୍ତିର ଅହଂ ହୁଏତ କିଛି କ୍ଷଣ ପାଇଁ ସତ୍ୟର ପ୍ରତ୍ୟୟ ସୃଷ୍ଟି କରିପାରେ ମାତ୍ର ସତ୍ୟର ଦ୍ୟୁତି ସର୍ବଦା ଜାଜୁଲ୍ୟମାନ । ଈଶ୍ୱରଙ୍କ ଉପରେ ଗଭୀର ବିଶ୍ୱାସ ସ୍ଥାପନ କରୁଥିବା ଗ୍ରାମ୍ୟ ଜୀବନ ସଂସ୍କୃତିକୁ ଗାଳ୍ପିକ ଅତି ଚମତ୍କାର ଭାବେ ଉପସ୍ଥାପନ କରିଛନ୍ତି । ତେବେ ଶ୍ୟାମବନ୍ଧୁ ପ୍ରତି ଥିବା ଚନ୍ଦ୍ରମାର ଭଲ ପାଇବାର ଗଭୀରତାକୁ ଗାଳ୍ପିକ ଏକ ସୂକ୍ଷ୍ମ ଭାବଧାରା ମଧ୍ୟ ଦେଇ ଗତି କରାଇଛନ୍ତି, ଯାହା ହୋଇଛି ସୂଚନାତ୍ମକ । ଅପର ପକ୍ଷରେ ମନ୍ଦିର ମଧ୍ୟରେ ଶୋଭା ପାଉଥିବା ରୂପା, ପିତ୍ତଳ ନାଗ ମୂର୍ତ୍ତି ଗୁଡିକ ଚୋରି ହୋଇଯାଇଛି କିନ୍ତୁ ଏକ କଳାନାଗ ଶିବଙ୍କୁ ଆଲିଙ୍ଗନ କରି ଶୈବ ଧର୍ମର ମହିମା ପ୍ରକଟ କରୁଛି ବୋଲି ଲୋକବିଶ୍ୱାସ କ୍ରମଶଃ ବଢ଼ିବାରେ ଲାଗିଛି । ଲୋକବିଶ୍ୱାସ, ଭଗବତ ଧାରଣା ଏବଂ ବାସ୍ତବ ଜୀବନ ଚର୍ଯ୍ୟାର ମଧ୍ୟ ସ୍ଥଳରେ ରହି ଗାଳ୍ପିକ ଏ ସମାଜର ଯେଉଁ ଚିତ୍ରଟିଏ ଅଙ୍କନ କରିଛନ୍ତି ତାହା ଅବର୍ଣ୍ଣନୀୟ ।



Source: Author, Digitized by PPRACHIN, SOA

ସଂକଳନସ୍ଥ ଦ୍ୱିତୀୟ ଗଳ୍ପ, 'ଗଣାଧିପତୟେ ନମଃ' ଭାଗ୍ୟରେଖା ଓ ବିଶ୍ୱାସ ବୋଧକୁ କେନ୍ଦ୍ର କରି ରଚିତ । ଗଳ୍ପର ନାୟକ ଦୀନବନ୍ଧୁ ଘଟଣା କ୍ରମେ ଭାବି ନେଇଛି ତା'ହାତରେ ବିଦ୍ୟାରେଖା ନଥିବାରୁ ବିଦ୍ୟାପ୍ରତି ରହିଛି ଅନାସକ୍ତ ଭାବ । ତେଣୁ ଉଦ୍ଦେଶ୍ୟ ହୀନ ଏକ ଉଦ୍‌ବାସ୍ତୁ ଜୀବନ ବଞ୍ଚି ସେଥିରୁ ଆନନ୍ଦ ପାଇବା ପାଇଁ ସେ ସର୍ବଦା ତତ୍‌ପର । ଗାଁରେ ହେଉଥିବା ବିଭିନ୍ନ ପର୍ବପର୍ବାଣୀ, ନାଟ,ତାମସାରେ ସକ୍ରୀୟ ଅଂଶ ଗ୍ରହଣ କରି ସାଙ୍ଗମାନଙ୍କ ସହିତ ମଉଜରେ ସମୟ ଅତିବାହିତ କରିଛି । ଏକଦା ପଡ଼ୋଶୀ ଗ୍ରାମର ପିଲାମାନଙ୍କ ଗୁଡିଉଡ଼ା ପ୍ରତିଯୋଗିତା କରି ମାଡ ଖାଇଛି । ତା'ପରେ ସେ ଅନୁଭବ କରିଛି ତା'ର ସାଙ୍ଗମାନେ କିପରି ଭାବେ ନିଜ ନିଜ କର୍ମରେ ବ୍ୟସ୍ତ ରହି ଖୁସିରେ ବଞ୍ଚୁଛନ୍ତି । ଏକ ନିଷ୍କର୍ମା ମଣିଷର ମନୋଭାବ ତା' ଅନ୍ତରକୁ ବାରମ୍ବାର କ୍ଷତ ବିକ୍ଷତ କରୁଛି । ତେଣୁ ସେ ଆଶ୍ରୟ ନେଇଛି ଗଣେଶଙ୍କ ନିକଟରେ । ନିଜ ଭକ୍ତିପୂତ ଶ୍ରଦ୍ଧା ନିବେଦନ କରି ଗଣେଶଙ୍କ ଠାରୁ ପାଇଛି ଅନ୍ତଃଶକ୍ତିର ପରିଚୟ । ଅନୁଭବ କରିଛି ତା'ର ସମସ୍ତ ଚିନ୍ତା ଓ କାର୍ଯ୍ୟ ଭିତରେ ଗଣେଶଙ୍କ ଆଶୀର୍ବାଦ ସୂଚକ ଅନୁଭବଟିଏ । ଯେଉଁ ଅନୁଭବ ତାର ବିଦ୍ୟାରେଖା ଠାରୁ ଅଧିକ ଦୂରବର୍ତ୍ତୀ ଅଧିକ ମୂଲ୍ୟବାନ । ବାସ୍ତବ ଜୀବନର ଘନଘଟା ତାର ଜୀବନ ଯାତ୍ରାକୁ କରିଛି ନିୟନ୍ତ୍ରଣ । ଭକ୍ତିତତ୍ତ୍ୱ ତଥା ଭାବବାଦୀ ମନସ୍କତାର ବଶବର୍ତ୍ତୀ ହୋଇ ଅନୁଭବ କରିଛି ବିଦ୍ୟାର ସାର୍ଥକତା । ଏହି ଗଳ୍ପର ଅନ୍ୟ ଏକ ଶକ୍ତିଶାଳୀ ବାର୍ତ୍ତା ହେଉଛି, କେବଳ ପୁସ୍ତକର ଜ୍ଞାନର ପରିସୀମା ବୃଦ୍ଧିପାଏ ନାହିଁ; ଅଭିଜ୍ଞତା ଓ ଅନୁଭବ ମାଧ୍ୟମରେ ଜାଗତିକ ଜୀବନ ସଂପର୍କିତ ଜ୍ଞାନର ସ୍ୱତଃସ୍ଫୂର୍ତ୍ତ ସ୍ଫୁରଣ ଘଟିଥାଏ । ଜଗତ ଓ ଜୀବନ ସହିତ ତିକ୍ତ ମଧୁର ସଂପର୍କ ହିଁ ତାର ପ୍ରଜ୍ଞାକୁ ଶାଣିତ କରିଥାଏ । ଯେଉଁ ଦୀନବନ୍ଧୁ ଦିନେ ବିଦ୍ୟାଦାତା ଗଣେଶର ରୂପ ଓ କାର୍ଯ୍ୟ ପଦ୍ଧତିକୁ କଟୁ ସମାଲୋଚନା କରୁଥିଲା, ପରବର୍ତ୍ତୀ ସମୟରେ ଜୀବନ ପ୍ରତି ମୁଗ୍ଧ ମଧୁର ଅନୁଭବ ତାର ଚିନ୍ତା ଜଗତକୁ ପ୍ରସାରିତ କରିଛି । ମଣିଷ ମଧ୍ୟରେ ଥିବା ଏହି ଦ୍ୱନ୍ଦ୍ୱାତ୍ମକ ଅଭିବ୍ୟକ୍ତିଟିକୁ ଗାଳ୍ପିକ ଅତି ସରଳ ଭାବେ ବର୍ଣ୍ଣନା କରିଛନ୍ତି ।

'ଜଗନ୍ନାଥ ସ୍ଥଳ ବୃତ୍ତାଂନ୍ତ' ଉକ୍ତ ସଂକଳନର ତୃତୀୟ ଗଳ୍ପ । ବ୍ରାତ୍ୟ ଭୂମି ଉତ୍କଳକୁ ପତିତଙ୍କ ପାବନ ଭୂମିରେ ପରିଣତ ହେବାର ସନ୍ଧିକ୍ଷଣରେ ଜଗନ୍ନାଥ ଓ ତାଙ୍କ ମନ୍ଦିର ସଂପର୍କିତ ଐତିହାସିକ ତଥା ସାଂସ୍କୃତିକ ଭିତ୍ତିଭୂମିକୁ ଲେଖକ ଯେପରି ଗୁରୁତ୍ୱ ସହକାରେ ବର୍ଣ୍ଣନା କରିଛନ୍ତି, ସେଇପରି ସ୍ୱାଧୀନତା ପରବର୍ତ୍ତୀ ରାଷ୍ଟ୍ରର ସାମାଜିକ, ରାଜନୈତିକ ତଥା ସାଂସ୍କୃତିକ କ୍ଷେତ୍ରରେ ଆସିଥିବା ଅବକ୍ଷୟର ଚିତ୍ର ପ୍ରତିପାଦନ କରିଛନ୍ତି । ଶାସକ ଓ ବିରୋଧୀ ଦଳରେ ବସିଥିବା ଲୋକ ପ୍ରତିନିଧିମାନେ ଜଗନ୍ନାଥଙ୍କୁ ନେଇ ରାଜନୀତି କରିଛନ୍ତି — 'ଆମକୁ ଗାଦୀ ମିଳିଲେ ଦିଅଁକୁ ସବୁ ମିଳିବ ।'



Source: Author, Digitized by PPRACHIN, SOA

ସରକାରଙ୍କ ହାତକୁ ଜଗନ୍ନାଥଙ୍କ ଦାୟିତ୍ୱ ଗଲାପରେ କେଉଁ ବିଭାଗ ସେଇ ଦାୟିତ୍ୱକୁ ସୁଚାରୁରୂପେ ସଂପାଦନ କରିବେ ତାହା ନେଇ ସେକ୍ରେଟାରୀ ଓ ତଦୀୟ ମନ୍ତ୍ରୀଙ୍କ ମଧ୍ୟରେ ବିଚାର ବିମର୍ଶ ଚାଲିଛି । ଦାରୁବ୍ରହ୍ମ ନାମ ଥିବାରୁ କେହି ପ୍ରସ୍ତାବ ଦେଲେ ଜଂଗଲ ବିଭାଗ ହିଁ ଏହି ଦାୟିତ୍ୱ ସଂପନ୍ନର ଉପଯୁକ୍ତ ବିଭାଗ । ଜଗନ୍ନାଥଙ୍କୁ କେନ୍ଦ୍ର କରି କୁଟୀର ଶିଳ୍ପର ବିକାଶ ହୋଇଥିବାରୁ ଶିଳ୍ପ ବିଭାଗ ଏହି ଦାୟିତ୍ୱ ନେବା ଉଚିତ୍ ବୋଲି ମନ୍ତବ୍ୟ ପ୍ରକାଶ ପାଇଲା । ଶିଳ୍ପ ବିଭାଗ ସର୍ବଦା କମ୍ୟୁନିଷ୍ଟମାନଙ୍କ ଦ୍ୱାରା ହଇରାଣର ହରକତ ହେଉଥିବା ଶୁଣି ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟାରୀ କହିଲେ, "ଏ ଜଗନ୍ନାଥ ହେଉଛନ୍ତି ଜଣେ ସାମ୍ୟବାଦୀ ଦେବତା । କମ୍ୟୁନିଷ୍ଟମାନେ ଭଗବାନ ଫଗବାନ ମାନନ୍ତି ନାହିଁ । ମାତ୍ର ଜଗନ୍ନାଥଙ୍କ ଭଳି ଗୋଟିଏ ସାମ୍ୟବାଦୀ ଠାକୁର ମିଳିଲେ ସେମାନେ ତାଙ୍କୁ ନେଇ ଲୋକମତକୁ ଏକ୍ସପ୍ଲଏଟ୍ କରିଦେବେ ।"(ପୃ-୬୮) ଏହିପରି ଭାବେ ଜଗନ୍ନାଥ ପରିଭ୍ରମଣ ବିଭାଗ, ନର୍ମାଣ ବିଭାଗ, ପୂର୍ତ୍ତ ବିଭାଗ ମଧ୍ୟଦେଇ ଗ୍ରାମଗୋଷ୍ଠୀ ଯୋଜନା ଓ ବାଧିତ ସଂରକ୍ଷଣ ବିଭାଗ ପର୍ଯ୍ୟନ୍ତ ଦାୟିତ୍ୱ ନେବା କଥାଟି ଉଠିଛି । ଜଗନ୍ନାଥ ସବୁ ବିଭାଗ ସହିତ ଓତଃପ୍ରୋତ ଭାବେ ଜଡ଼ିତ ଥିବା ହେତୁ ନିଷ୍ପତ୍ତି ନିଆଗଲା ରାଜ୍ୟର ସମସ୍ତ ବିଭାଗ ମିଶି ନିଜ ନିଜ ଦାୟିତ୍ୱ ସଂଚାଳନ କରିବେ । ଲେଖକ ନିଜର ଚଟୁଳ ବର୍ଣ୍ଣ ବିନ୍ୟାସରେ ଏହି ପ୍ରସଙ୍ଗଟିକୁ ଶେଷ ପର୍ଯ୍ୟନ୍ତ ଶ୍ୱେତଦ୍ୱୀପ ବାସୀ ହୋଇ ଜଗନ୍ନାଥ ପାଶ୍ଚାତ୍ୟ ଜଗତର ଚାକଚାକ୍ୟରେ ଜୀବନ ନିର୍ବାହ ମନସ୍କତା କଥାଟିକୁ ବର୍ଣ୍ଣନା କରିଛନ୍ତି । ପ୍ରକୃତ ପକ୍ଷେ ଏହା ଏକ ଗଳ୍ପ ନୁହେଁ, ରମ୍ୟ ରଚନା । କିନ୍ତୁ ଲେଖକ ଏଥିରେ ଏପରି ଚରିତ୍ରଗୁଡ଼ିକ ସୃଷ୍ଟି କରିଛନ୍ତି ଏବଂ ଚରିତ୍ରମାନଙ୍କ ଭାବବିନ୍ୟାସ ଏପରି ସୁଢ଼ଳ ରୀତିରେ ହୋଇଛି ଯେ ଏହା ଗଳ୍ପର ପ୍ରତ୍ୟୟ ସୃଷ୍ଟିକରେ । ଜଗନ୍ନାଥ ସଂସ୍କୃତି ଯେ ଏକ ପଣ୍ୟ ସଂସ୍କୃତିରେ ରୂପାନ୍ତରିତ ହୋଇଯାଇଛି ତାହା ଲେଖକଙ୍କ ଆଭିମୁଖ୍ୟର ମୂଳ କେନ୍ଦ୍ର ।

'ମାତୃ ରୂପେଣ ସଂସ୍ଥିତା' ଏକ ମର୍ମଦାହୀ ଗଳ୍ପ । ନାନାଦି ବ୍ୟସ୍ତ ବହୁଳ ଜଂଜାଳ ପୂର୍ଣ୍ଣ କୃତ୍ରିମ ଜୀବନ ବଞ୍ଚୁଥିବା ସହରୀ ମଣିଷଟି ଦିନେ ଚାଲିଆସିଛି ଗାଁର ମଧୁର ମହକରେ ମହକିତ ହେବା ପାଇଁ । ବାଲ୍ୟ ଜୀବନରେ କଟାଇଥିବା ଗାଁର ସବୁଜ ସତେଜ ସ୍ମୃତି ତା ନିକଟରେ ମ୍ଳାନ ପଡିଯାଇଛି ଯେତେବେଳେ ସେ ଦେଖୁଛି ଗାଁଟି ସହରାଭିମୁଖୀ ହେଉଛି । ଗାଁର ସମସ୍ତ ତ୍ରାସକୁ ଦୂରକରି ଅଭୟ ଆଶୀଷ ପ୍ରଦାନ କରୁଥିବା ଗାଁ ଠାକୁରାଣୀ କୁତାମ ଚଣ୍ଡୀର ଆବଶ୍ୟକତା କେହି ଆଜି ଅନୁଭବ କରୁନାହାନ୍ତି । 'ଅଢ଼େଇ ଫୁଟ ପଥରରେ ନିର୍ମିତ ହଳଦୀ ସିନ୍ଦୂର ବୋଳା, କଳାକନା ଗୁଡିଆ ଠାକୁରାଣୀଟିଏ' ଅପାଙ୍‌କ୍ତେୟ ହେଇପଡିଛି ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନରେ ମସଗୁଲ୍ ଥିବା ସଦ୍ୟ ପାଶ୍ଚାତ୍ୟିକରଣ ଗ୍ରାମବାସୀଙ୍କ ଦ୍ୱାରା । ସଂପର୍କର ଭାବମୟତାକୁ ଦଖଲ କରିଛି ବ୍ୟବସାୟିକ ଦେବା ନେବାରେ । ଏକତ୍ର ସହାବସ୍ଥାନ ସ୍ଥାନରେ ଅଣୁ ଜୀବନ ହୋଇଛି ଶ୍ରେଷ୍ଠ । ସେଇ ଆକାଙ୍‌କ୍ଷିତ ସଭ୍ୟତାର ସ୍ୱର୍ଣ୍ଣ



Source: Author, Digitized by PPRACHIN, SOA

ପାଇଁ ଗ୍ରାମୀଣ ମଣିଷ ଭିତରେ ତୀବ୍ର ପ୍ରତିଯୋଗିତା । କୁତାମ ଚଣ୍ଡୀ ପରି ବୁଢ଼ାବାପା ମା'ମାନେ ମଧ୍ୟ ପରିତ୍ୟେଜ୍ୟର ଦ୍ୱାର ଦେଶରେ । କାରଣ ସେମାନଙ୍କ ବ୍ୟବହାରିକ ଗୁରୁତ୍ୱ ଆଜି ଆଉ ନାହିଁ । ବସ୍ତୁବାଦୀ ମଣିଷ ପାଖରେ ଭାବବାଦୀ ମଣିଷର ଅସ୍ତିତ୍ୱ ଅସାର ବୋଲି ପ୍ରତୀୟମାନ ହୋଇଛି । ଗାଁରେ ଏହି ପରିବର୍ତ୍ତିତ ଅଭିନବ ରୂପ ସହରୀ ଲୋକଟି ମନରେ ତୀବ୍ର ବେଦନା ସୃଷ୍ଟି କରିଛି । "ମୋର ଆବେଗ ଜର୍ଜର ଅଶ୍ରୁବର୍ଷିତ ଆଲିଙ୍ଗନ ଭିତରେ ଅଶୀ ବର୍ଷର କ୍ରନ୍ଦନରତା ଅଭିମାନିନୀ ଜୀର୍ଣ୍ଣାଶୀର୍ଣ୍ଣା ଥୁରୁଥୁରୁ ମାଆଟିଏ ! ମାଆଟିଏ । ଅବହେଳିତ ବୋଲି ମନେ କରୁଥିବା ମାଆଟିଏ – ନିଜକୁ ଅଦରକାରୀ ବୋଲି ଭାବି ଭାବି ଅଭିମାନରେ ସଂକୁଚି ଯାଉଥିବା ମାଆଟି । ପଳେଇ ଯିବାକୁ ବସିଥିବା ଭଗ୍ନହୃଦୟା ଆହତମନା ମାଆଟିଏ । କିନ୍ତୁ ମୁଁ କାହାକୁ କୁଣ୍ଢାଇ ଧରିଥିଲି ? କାହାକୁ – ଜାବୁଡ଼ି ଧରିଥିଲି ? ମୋ ମାଆକୁ ନା ଆମ ଗାଁର ବାର ସାଇର ଯୁଗ ଯୁଗ ଧରି ଅଧିଷ୍ଠାତ୍ରୀ ଦେବୀ ମାଆ କୁତାମଚଣ୍ଡୀ ଠାକୁରାଣୀଙ୍କୁ ?" (ପୃ-୯୪) ଗ୍ରାମ୍ୟ ସଂସ୍କୃତିର ମୋହାଚ୍ଛନ୍ନ ମମତ୍ୱବୋଧଟି ଲେଖକଙ୍କ ତୂଳୀରେ ମର୍ମସ୍ପର୍ଶୀ ହୋଇଉଠିଛି ।

କାଳର କୁଟିଳ ଚକ୍ରରେ ନିର୍ବାପିତ ହୋଇ ଆସୁଥିବା ଲୋକ ସଂସ୍କୃତି, ଲୌକିକ, ଜୀବନଧାରାର ଭାବମୟ ଅଭିବ୍ୟକ୍ତିଟି ଯେପରି ପ୍ରତିପାଦିତ ହୋଇଛି 'ମାତୃରୂପେଣ ସଂସ୍ଥିତା' ଗଳ୍ପରେ ସେଇପରି ସେହି କରୁଣ ପରିଣତିର ଅନୁରୂପ ଆଲେଖ୍ୟ ବହନ କରିଛି 'ବୃନ୍ଦାବନର ଶେଷ ଧୂପ' ଗଳ୍ପଟି । ଉକ୍ତ ଗଳ୍ପରେ ନିମ୍ନମଧ୍ୟବିତ୍ତ ମଣିଷର ଆତ୍ମବିଚାର ଏବଂ ଗାଁର ଅବକ୍ଷୟୀ ସଂସ୍କୃତି ରୂପଚିତ୍ର ଦେଖିବାକୁ ମିଳେ । ଗ୍ରାମ୍ୟ ଜୀବନରେ ଦେଖା ଦେଇଥିବା ପରଶ୍ରୀକାତରତା, ବିନା ଶ୍ରମରେ ଉପାର୍ଜନ କରିବାର ଚଟୁଳ ଚକ୍ରାନ୍ତ ଧୀରେ ଧୀରେ ଗାଁକୁ କରିଛି ଶ୍ରୀହୀନ । ରଘୁବାବୁ ସହରବାସୀ ନିମ୍ନବିତ୍ତ ମଣିଷ ଗୋଷ୍ଠୀର । ଅନ୍ତର ତଳେ ଯଦିଓ ରହିଛି ଗାଁ ପ୍ରତି ମୋହ, କିନ୍ତୁ ଗାଁ ଲୋକଙ୍କ ଶଇତାନୀ ମାନସିକତା ତାଙ୍କ ମନରେ ସୃଷ୍ଟିକରିଛି ଦାରୁଣ ସନ୍ତାପ । ବନ୍ଧୁ ମାୟାଧର ନିକଟରେ ଗାଁରୁ ଆଣିଥିବା ବୈଷ୍ଣବୀୟ ସଂସ୍କାର ଏବଂ ତାର ମୂଳ କେନ୍ଦ୍ରରେ ଥିବା ରାଧାକାନ୍ତ ମଠର ପୂର୍ବ ଐତିହ୍ୟ ସଂପର୍କରେ ଆଲୋଚନା କରିଛନ୍ତି । ତାଙ୍କ ମନ ଭିତରେ କେଉଁ ଏକ ସଂଗୁପ୍ତ କୋଠରୀ ମଧ୍ୟରେ ଲୁଚି ରହିଥିବା ରାଧାକାନ୍ତ ମଠର ସୂକ୍ଷ୍ମ ସ୍ମୃତିକୁ ଜାଗରୁକ କରିବା ପାଇଁ ବଂଧୁ ମାୟାଧରଙ୍କ ସାହାଯ୍ୟ ଲୋଡ଼ିଛନ୍ତି ।

ରାଧାକାନ୍ତ ମଠ ଗୌରବ ବହନ କରୁଥିବା କଳା ମୁଗୁନି ପଥର ନିର୍ମିତ ରାଧାକୃଷ୍ଣଙ୍କ କମନୀୟ ମୂର୍ତ୍ତି ଏବଂ ତାଙ୍କ ସେବା ଆରାଧନାରେ ବ୍ରତୀଥିବା ସାଧୁସନ୍ନ୍ୟାସୀ ଗଣ ଗ୍ରାମବାସୀମାନଙ୍କ ଦ୍ୱାରା ଅଦରକାରୀ ହୋଇପଡ଼ିଛନ୍ତି । ଯେଉଁ ମନ୍ଦିର ଓ ମୂର୍ତ୍ତିକି କେନ୍ଦ୍ର କରି ଗ୍ରାମବାସୀ ନିଜ ଦୁଃଖ ଦୁର୍ବିପାକକୁ ଭୁଲିଯାଇ ଏକ ଆଧ୍ୟାତ୍ମିକ ଜୀବନରେ ଉଷ୍ମତାକୁ ଅନୁଭବ କରୁଥିଲେ ସେମାନଙ୍କ ପାଇଁ, ସଭ୍ୟତାର ଦ୍ୱାହିରେ ପରିତେଜ୍ୟ । ସେଥିପାଇଁ



Source: Author, Digitized by PPRACHIN, SOA

ନିଜ କ୍ଷୁଧାକୁ ପ୍ରଶମିତ କରିବା ସକାଶେ ରାଧାକାନ୍ତ ମଠର ସାଧୁ ସନ୍ନ୍ୟାସୀମାନେ ଗାଁ ତ୍ୟାଗ କରିଛନ୍ତି । କେବଳ ଏକୁଟିଆ ରହିଯାଇଛି ଛୋଟ ବାବାଜୀ । ହୁଏତ ସେ ଏଡିପାରିନାହିଁ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଆବେଗିକ ସଂପର୍କକୁ । ଯେଉଁ ରାଧାକୃଷ୍ଣ ପ୍ରତ୍ୟେହ ତିନିବେଳେ ଧୂପ ନୈବେଦ୍ୟରେ ଆମୋଦିତ ହେଉଥିଲେ କ୍ରମଶଃ ସେହି ଧାରାଟିର ପୂର୍ଣ୍ଣଚ୍ଛେଦ ପଡିଛି । ନିଜର ଅନ୍ନ ସଂସ୍ଥାନ ପାଇଁ ଛୋଟ ବାବାଜୀ ଯେତେ ବ୍ୟସ୍ତ ବିବ୍ରତ ହେଉନଥିଲା, ତତୋଃଧିକ ପ୍ରାଣ ତାର କାନ୍ଦି ଉଠୁଥିଲା ତାର ପ୍ରିୟ ରାଧାକୃଷ୍ଣଙ୍କ ଭୋକିଲା ଆଖି ଦୁଇଟିକୁ ଚାହିଁ । ହଠାତ୍ ଦିନେ ରାଧାକୃଷ୍ଣଙ୍କ ମୂର୍ତ୍ତି ଯୁଗଳ ସହ ଛୋଟ ବାବାଜୀ ଅନ୍ତର୍ଦ୍ଧାନ ହୋଇଛନ୍ତି । ମଠରେ ତାଙ୍କର ଏହି ଆକସ୍ମିକ ଅନୁପସ୍ଥିତିକୁ କେନ୍ଦ୍ର କରି ଗୁଜବ ପ୍ରଚାର ହୋଇଛି ଯେ ଛୋଟ ବାବାଜୀ କେଉଁ ଏକ ପ୍ରାଚୀନ ମୂର୍ତ୍ତି ସଂଗ୍ରହକାରୀ ରାକେଟ୍‌କୁ ରାଧାକୃଷ୍ଣ ମୂର୍ତ୍ତି ବିକ୍ରୟ କରି ଚାଲିଯାଇଛି । ପରମୁହୂର୍ତ୍ତରେ ପୋଲିସ୍ ଅଫିସରଙ୍କ ତଦନ୍ତରୁ ଜଣାପଡିଛି ମଠ ସନ୍ନିକଟସ୍ଥ ପୁଷ୍କରଣୀ ମଧ୍ୟରେ ଛୋଟ ବାବାଜୀ ରାଧାକୃଷ୍ଣ ମୂର୍ତ୍ତି ସହ ଜଳ ସମାଧି ନେଇଛନ୍ତି ।

ସ୍ୱକୀୟ ସଂସ୍କୃତିକୁ ଉପେକ୍ଷା କରିବା ଆତ୍ମହତ୍ୟା ସଦୃଶ । ଶହ ଶହ ବର୍ଷ ଧରି ପଲ୍ଲୀଭୂମିରେ ଯେଉଁ ଆଧ୍ୟାତ୍ମ ଜୀବନବୋଧଟି ଗ୍ରାମ୍ୟ ସଂସ୍କୃତିର ଉତ୍କୃଷ୍ଟ ରୂପରେଖ ବୋଲି ପ୍ରତୀୟମାନ ହେଉଥିଲା, ସେଇ ସଂସ୍କୃତିର ବିଲୟ ବେଳାରେ ଲେଖକଙ୍କ ବିଷର୍ଣ୍ଣ ଅଭିବ୍ୟକ୍ତି ଗଳ୍ପଟିକୁ କରୁଛି କରୁଣରସାଶ୍ରିତ । ଗ୍ରାମ୍ୟ ଜୀବନରୁ ଅପସୃୟମାଣ ଭାବବାଦୀ ଧାରାଟି ସତେ ଯେପରି ଲେଖକଙ୍କ ଆତ୍ମାକୁ କରିଛି ଜର୍ଜରିତ । ପୁଣ୍ୟପ୍ରଭା ଗ୍ରାମୀଣ ଆଲୋକ ବିନ୍ଦୁ କ୍ରମଶଃ ତାର ସତ୍ତା ହରାଇ ବସୁଛି ପାଶ୍ଚାତ୍ୟ ଜଡ଼ବାଦୀ ସଂସ୍କୃତିର କୃଷ୍ଣ ଗହ୍ୱରରେ ।

'ହରିହର ମିଳନ ସଂବାଦ' ଏକ ଭିନ୍ନ ସ୍ୱାଦର ଗଳ୍ପ । ପ୍ରତ୍ୟେକ ମଣିଷ, ଦୂରପାହାଡ଼ ସୁନ୍ଦର ପରି, ନିଜକୁ ଅନ୍ୟଠାରୁ ଅଧିକ ବୋଲି ଭାବିବା ଏବଂ ଅନ୍ୟର ଦୁଃଖ ତୁଳନାରେ ସୁଖକୁ ସର୍ବୋତ୍ତମ ସୁଖ ବୋଲି ମନେ କରିବା କଥନଟିକୁ ଏହି ଗଳ୍ପର ମୁଖ୍ୟ ଆଧାର କରିଛନ୍ତି ଲେଖକ । ଏଠାରେ ଗାଳ୍ପିକ ଦୁଇଟି ପୌରାଣିକ ଚରିତ୍ର ଭାବେ ଶିବ ଏବଂ ବିଷ୍ଣୁଙ୍କୁ ନେଇଛନ୍ତି । ଅଲୌକିକ ଏହି ଦେବ ଚରିତ୍ର ମଧ୍ୟରେ ଲୌକିକ ଜୀବନ ଚରିତ୍ରର ସଂଯୋଜନ କରିବା ସହିତ ପୁରାଣ ପୃଷ୍ଠାର ଅଲୌକିକ ଘଟଣା ପ୍ରବାହକୁ ସାଧାରଣୀ କରଣ କରି ଗାଳ୍ପିକ ଯେଉଁ କଳା ପ୍ରଦର୍ଶନ କରିଛନ୍ତି ତାହା ଅପୂର୍ବ । ବ୍ୟକ୍ତି ଜୀବନର ଇଚ୍ଛା, ଆକାଙ୍‌କ୍ଷା, ତିତିକ୍ଷା, ହର୍ଷ, ବିଶାଦ ପ୍ରଭୃତି ପ୍ରବୃତ୍ତିକୁ ଧାରଣ କରିଥିବା ମଣିଷ ନିଜକୁ କେବେ ସମସ୍ତ ସୁଖ ସଂପଦର ଅଧିକାରୀ ବୋଲି ମନେ କରେନା ସତ, ମାତ୍ର ଅନ୍ୟ ଦୃଷ୍ଟିରେ ତାର ସ୍ୱରୂପଟି ପ୍ରଭାସ୍ୱର ବୋଲି ପ୍ରତ୍ୟୟଟିଏ ସୃଷ୍ଟି କରିଥାଏ । କିନ୍ତୁ ବାସ୍ତବ କ୍ଷେତ୍ରରେ ତାହା ମାୟା ମରୀଚିକା ସଦୃଶ ମନେ ହେଇଥାଏ ।

ଶିବ ମନେ କରନ୍ତି ଯେ, ତାଙ୍କର ଏହି ଅପାଙ୍‌କ୍ତେୟ ଶ୍ମଶାନ ନିବାସ, କର୍କଶ ସ୍ୱରୂପିଣୀ ସ୍ତ୍ରୀ ପାର୍ବତୀଙ୍କୁ ଦ୍ୱିତୀୟ ବିବାହ, ସମୁଦ୍ର ମନ୍ଥନ ଅବକାଶରେ ହଳାହଳ ବିଷପାନ



Source: Author, Digitized by PPRACHIN, SOA

ଓ ତଦ୍‌ଜନିତ ଶିରରେ ଗଙ୍ଗାଧାରଣ ଓ ସର୍ପ ଆଭୂଷଣ, ପ୍ରଭୃତି ଜୀବନ ଦୁର୍ବିସହର ସମସ୍ତ ମୂଳ କାରଣ ହେଉଛନ୍ତି ବିଷ୍ଣୁ । ଅପର ପକ୍ଷରେ ଦୁଗ୍ଧ ଫେନାୟିତ ସାଗର ବକ୍ଷରେ ଅନନ୍ତ ଶୟନ କରି ବିଷ୍ଣୁ ଯେ ସର୍ବଦା ସପତ୍ନୀ କଳହର ଯନ୍ତ୍ରଣା ଭିତରେ ଦଗ୍ଧିଭୂତ ତାହା ଅପ୍ରକାଶ୍ୟ/ଆଲୋକିତ ଅନ୍ଧକାର ସଦୃଶ । ଗଳ୍ପର ଶେଷ ପର୍ଯ୍ୟାୟରେ ଶିବ ବୁଝିପାରିଛନ୍ତି ଯେ, ସମସ୍ତ ମୂଲ୍ୟବାନ ସଂପଦ ଓ ସ୍ତ୍ରୀ ରତ୍ନ ଦ୍ୱୟ ଥିଲେ ମଧ୍ୟ ବିଷ୍ଣୁ ଯେ କେତେ ଅସହାୟ ଜଂଜାଳ ପୂର୍ଣ୍ଣ ଜୀବନ ନିର୍ବାହ କରୁଛନ୍ତି ଯାହା ତାଙ୍କ ଜୀବନରେ ଘଟୁନାହିଁ ।

ସାଂସାରିକ ଜଂଜାଳୀ ଜୀବନ ଓ ଯୋଗୀ ଭାବପୂର୍ଣ୍ଣ ଜୀବନର ଏକତ୍ର ସହାବସ୍ଥାନର ଅମୃତମୟ ଆଲେଖ୍ୟ ହେଉଛି ଏ ଗଳ୍ପ । ବୈଷ୍ଣବୀୟ ଚେତନା ଓ ଶୈବଶାକ୍ତର ମିଳନ ଭୂମି ଏକାମ୍ରକାନନ ଓ ତତ୍ ସଂପର୍କିତ ଉଭୟ ଦେବଙ୍କ ପୂଜାନୀତିର ଲୌକିକ କ୍ରିୟାକଳାପକୁ ଆଧାର କରି ଗାଳ୍ପିକ ମହାପାତ୍ର ନୀଳମଣି ସାହୁ ଏହି ଗଳ୍ପଟିକୁ ପରିକଳ୍ପନା କରିଛନ୍ତି । ତେବେ ଏଥିରେ ପ୍ରକାଶ ପାଇ ନାହିଁ ବୈଷ୍ଣବ ସୁଲଭ ପ୍ରଗଳଭତା କିମ୍ବା ଶୈବ/ଶାକ୍ତ ସୁଲଭ ତନ୍ତ୍ର ମନ୍ତ୍ର ଯୋଗାଚାରର ଶୁଷ୍କ ନୀତିନିୟମ । କିନ୍ତୁ ଏପରି ଏକ ବିଷୟ ବସ୍ତୁକୁ ଆଧାର କରି ଗଳ୍ପଟିଏ ପରିକଳ୍ପନା କରାଯାଇ ପାରେ ତାହା ଅଚିନ୍ତନୀୟ । ତାହା ବୋଧ ହୁଏ ଗାଳ୍ପିକଙ୍କ ଅନବଦ୍ୟ କଳା ନିପୁଣତାର ସିଦ୍ଧି ଓ ସ୍ୱାକ୍ଷର ।

'ବଟମାହାତ୍ମ୍ୟ ବା ଆଲମ୍ ଚଣ୍ଡୀ ବୃତ୍ତାନ୍ତ' ଗଳ୍ପଟି ଦୁଇଟି ବିଶେଷ ଭାବଗର୍ଭକ ଆବେଦନ ଉପରେ ପର୍ଯ୍ୟବସିତ । ପ୍ରଥମଟି ହେଉଛି, ଗାଁକୁ ସହରୀ କରଣ ଛଳରେ ଗ୍ରାମ୍ୟ ଜୀବନର ଭାବମୟ ସମ୍ବନ୍ଧଥିବା ବଟବୃକ୍ଷମାନଙ୍କୁ ଉତ୍‌ଖାତ କରି ତଥାକଥିତ ସଭ୍ୟ ମଣିଷର ଚଳଣୀ ପାଇଁ ବହୁବିଧ ଯୋଜନା ପ୍ରସ୍ତୁତ କରିବା, ଏବଂ ଦ୍ୱିତୀୟଟି ଗ୍ରାମ୍ୟ ଜୀବନରେ ସାଂପ୍ରଦାୟିକ ସଦଭାବନାର ପୂର୍ଣ୍ଣ ପ୍ରତିଷ୍ଠା ପାଇଁ ଯତ୍ନଶୀଳ ହେବା । ବନସ୍ପତିର ସ୍ନିଗ୍ଧ ଛାୟାଲୋକର ଗ୍ରାମୀଣ ମଣିଷଟିଏ ତାର ଆତ୍ମାକୁ ରସମୟ କରିଥାଏ । ଯେଉଁ ବଟବିଟପମାନେ ଶହ ଶହ ବର୍ଷ ଧରି 'ଗ୍ରାମ୍ୟ ଐତିହ୍ୟକୁ ସମୃଦ୍ଧିବନ୍ତ'କରି ଗାଁର ମଣିଷମାନଙ୍କ ସହିତ ଏକ ଆବେଗିକ ସଂପର୍କରେ ବାନ୍ଧିହେଇ ପଡ଼ିଥିଲେ, ଏବଂ ପ୍ରତ୍ୟେକ ବଟବୃକ୍ଷର ଉତ୍ପତ୍ତି ସଂବନ୍ଧୀୟ ଗୋଟିଏ ଲେଖାଏ ଅଦ୍‌ଭୂତ କିମ୍ବଦନ୍ତୀକୁ ଜନ୍ମ ଦେଇଥିଲା, ତାର ମାହାତ୍ମ୍ୟକୁ ଉପେକ୍ଷା କରି ସ୍ୱାର୍ଥୀ ମଣିଷମାନେ ସେସବୁକୁ ଧ୍ୱଂସ କରି ନଗର ସଭ୍ୟତା ପ୍ରତିଷ୍ଠା ପାଇଁ ବ୍ୟଗ୍ର ହେଇ ପଡ଼ିଛନ୍ତି । ଯାହା ସେହି ନଗର ସଭ୍ୟତାର ସନ୍ତାନ ମୁଖରୁ ବାହାରିଥିବା 'ସବୁଜ ବିପ୍ଳବ'ର ପ୍ରକାଶ୍ୟ ବିରୋଧାଭାସ ବୋଲି ଧରିବାକୁ ହେବ । ଗ୍ରାମ୍ୟ ସଂସ୍କୃତିକୁ ଉଜ୍ଜିବୀତ କରୁଥିବା ବଟବୃକ୍ଷ ତଳେ ଜଳ ସିଂଚନ କରି ଗାଁ ନାରୀ ତା'ର ଈପ୍‌ସିତ ଅଭିଳାଷକୁ ପୂର୍ଣ୍ଣ କରିବା ପାଇଁ ଆଶାବାନ୍ଧି ରଖିଥାଏ । କିମ୍ବଦନ୍ତୀ କୁହେ ବଟବୃକ୍ଷର ଛାୟା ତଳେ ବସି ଗୋରେଖନାଥ ସମେତ ବହୁ ସନ୍ନ୍ୟାସୀ ତପସ୍ୟାରେ ମଗ୍ନ ଥିଲେ । ଉତ୍କଳୀୟ ପରମ୍ପରାରେ ବଟବୃକ୍ଷର ମହାତ୍ମ୍ୟ ଆଜି ନିସ୍ତେଜ । ତେଣୁ ଦୈବ ଭୟ ଦେଖାଇ,



Source: Author, Digitized by PPRACHIN, SOA

ଗ୍ରାମ୍ ଗୋଷ୍ଠୀ ଯୋଜନା ମୁତାବକ ଅଫିସରମାନଙ୍କ ଘର ନିର୍ମାଣ ପାଇଁ ସେହି ମହା ଦ୍ରୁମମାନେ ଧରାଶାୟୀ ହେଉଛନ୍ତି । ତା' ସହିତ ନିଶ୍ଚିହ୍ନ ହୋଇଯାଇଛି ବୃକ୍ଷ ସହିତ ମଣିଷର ଭାବମୟ ସଂପର୍କ । ତେବେ ସେଇ ବଟବୃକ୍ଷର ନିଭୃତ କୋରଡ଼ ଭିତରେ ଶହ ଶହ ବର୍ଷଧରି ଉଭୟ ହିନ୍ଦୁ ମୁସଲମାନଙ୍କ ଆରାଧ୍ୟ ଦେବୀ ଆଲାମ ଚଣ୍ଡୀ ରକ୍ଷା କରିପାରି ନାହାନ୍ତି ନିଜ ବାସ ସ୍ଥାନକୁ । ଯେଉଁ ଆଲାମ ଚଣ୍ଡୀ ଏକ ଉଚ୍ଚତର ଭାବନା ପୋଷଣ କରି ହିନ୍ଦୁ ମୁସଲମାନ ଭକ୍ତମାନଙ୍କୁ ଅଭୟ ଆଶୀର୍ବାଦରେ ମହାନ ମାନବ ଜୀବନ ଯାତ୍ରାର କଥା ଉଦ୍‌ଘୋଷଣା କରୁଥିଲା, ବଟବୃକ୍ଷର ଶିରଛେଦନ ପରେ ସେହି ମହା ଭାବମୟ ମାନବିକ ମୂଲ୍ୟବୋଧଟିର ମୃତ୍ୟୁ ଘଟିଲା । ଗାଳ୍ପିକ ମହାପାତ୍ର ନୀଳମଣି ସାହୁ ବଟବୃକ୍ଷର ମହାତ୍ମ୍ୟ ପ୍ରଖ୍ୟାପନ ମାଧ୍ୟମରେ ଜୀବନ ଦର୍ଶନ ଓ ସାଂସ୍କୃତିକ ପରିଚର୍ଯ୍ୟାର ଏକ ଦୁଃଖଦ ପରିଣତିକୁ ଦର୍ଶାଇଛନ୍ତି ।

ଗଳ୍ପ ସଂକଳନର ଶେଷଗଳ୍ପ 'ମମ ମୟା ଦୂରତ୍ୟୟା'ରେ କଥାକାର ଏକ ବିଶେଷ ଅନୁଭବ ଅବତାରଣା କରିଛନ୍ତି । ଭିକ୍ଷା ବୃତ୍ତି ଯେ ହୀନ ବୃତ୍ତି ନୁହେଁ ତା'ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି ମାନବିକତାର ଦାୟବଦ୍ଧତାରେ । ଅପର ପକ୍ଷରେ... । ''ବ୍ୟକ୍ତିଗତ ଭାବେ ଭିକ୍ଷା ଦେବା ଅପେକ୍ଷା, ରାଷ୍ଟ୍ର ହାତରେ ସେମାନଙ୍କୁ ଛାଡ଼ିଦିଅ । ରାଷ୍ଟ୍ର କର୍ମଭୀରୁ ସବଳ ଓ ସକ୍ଷମ ଲୋକଙ୍କୁ ନେଇ କାମରେ ଲଗାଇବ ଓ ବିକଳାଙ୍ଗ ଅସମର୍ଥ ଏବଂ ଅସହାୟ ଲୋକଙ୍କର ଭରଣ ପୋଷଣ ବ୍ୟବସ୍ଥା ନିଜ ଆଡୁ କରିବାକୁ ବାଧ୍ୟ ହେବ ।''(ପୃ-୧୬୫) କିନ୍ତୁ ଜଗନ୍ନାଥ ମନ୍ଦିରସ୍ଥ ଆନନ୍ଦ ବଜାରରେ ଭିକ୍ଷାବୃତ୍ତି ସପକ୍ଷରେ / ବିପକ୍ଷରେ ଯୁକ୍ତିବାଦୀ ମନ କୌଣସି ନିଷ୍ପତ୍ତି ନେଇପାରେ ନାହିଁ । କାରଣ ଏ କ୍ଷେତ୍ରକୁ କେନ୍ଦ୍ର କରି ଶହ ଶହ କିମ୍ବଦନ୍ତୀ ଏପରି ଭାବେ ଜନମାନସକୁ ଭାବବିହ୍ୱଳ କରି ରଖିଥାଏ ଯେ ଜଣେ ସହଜରେ ସେଥିରୁ ମାନସିକ ସ୍ତରରେ ନିଷ୍କୃତି ପାଇପାରେ ନାହିଁ । ଏହି ଅବସରରେ ଲେଖକ ଭେଟିଛନ୍ତି ବୃଦ୍ଧା ଭିକାରୁଣୀକୁ । ତାର କୁଶଳ ମଧୁରବାଣୀ ଏବଂ ମାତୃତୁଲ୍ୟ ମମତ୍ୱବୋଧରେ ବାନ୍ଧିହୋଇ ପଡିଛନ୍ତି ଲେଖକ । ଏକ ସମ୍ମୋହନ ଶକ୍ତି ଉଭୟଙ୍କୁ ନିକଟରୁ ନିକଟତର କରିଛି । ମହାଭାବର ଅଦ୍ଭୁତ ଆକର୍ଷଣରେ ପରସ୍ପର ଅନୁଭବ କରିଛନ୍ତି ତଲ୍ଲୀନ ଭାବ । ଜଗନ୍ନାଥ କ୍ଷେତ୍ର ମାହତ୍ମ୍ୟ ସହିତ ବୃଦ୍ଧା ଜଣକ ଏପରି ନିବିଡ ଭାବେ ସମର୍ପିତା ଯେ ଜଗନ୍ନାଥ ହିଁ ହୋଇଛନ୍ତି ତା'ଜୀବନର ସର୍ବଶେଷ ଆଶ୍ରୟ ଦାତା, ମୋକ୍ଷ ଦାତା ଓ ନିର୍ମଳ ଜୀବନ ବଞ୍ଚିବାର ଏକମାତ୍ର ଅବଲମ୍ବନ । ଲେଖକ ଯେତେବେଳେ ସେଇ ବୃଦ୍ଧା ଜଣକ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବା ସହିତ ଲେଖକକୁ ମାୟାଜନ ବୋଲି ଅଭିହିତ କରିଛି । ଲେଖକ ହୋଇଛନ୍ତି ଭାବାନ୍ତର, "ମୋର ମନ ଭିତରେ ଧୀରେ ଧୀରେ କିଏ ଜଣେ ମତେ ବାରମ୍ବାର ଖୁବ୍ ପାଟିକରି ଧିକାର କରି ଚାଲିଥାଏ – ଛି- ଛି- ତୁ ଗୋଟାଏ ମାୟାବୀ ! ତୁ ଭଗବାନଙ୍କ ପାଖରୁ ତାଙ୍କ ଲୋକଙ୍କୁ ଛଡ଼ାଇ ନେଇ ତୋର ମାୟାଜାଲରେ ପକାଇ ଉପଭୋଗ କରୁ । ସେ କିନ୍ତୁ କଲବଲ ହେଉଥାଏ । ଛି-ଛି- ତୁ ଗୋଟାଏ ଖଣ୍ଡ-ଗୋଟାଏ ଯାଦୁକର । ତୋ



Source: Author, Digitized by PPRACHIN, SOA

ହାତର ସ୍ପର୍ଶରେ ପ୍ରପଞ୍ଚମାୟାର ଆବେଶ ରହିଛି । ଛି-ଛି-ଛି-ତୁ ଗୋଟାଏ ହୀନ ମଣିଷ, ହୀନ ମଣିଷ । ତୋର ସ୍ପର୍ଶ ମଣିଷକୁ ମୁକ୍ତି ଦିଏ ନାହିଁ – ବନ୍ଧନରେ ପକାଏ ଛି-ଛି-ଛି- ...ଛି-ଛି-ଛି... ଛି-ଛି-ଛି ।"(ପୃ୧୭୯)

'ବୃନ୍ଦାବନର ଶେଷ ଧୂପ' ଗଳ୍ପ ସଂକଳନସ୍ଥ ସମସ୍ତ ଗଳ୍ପ ନିଜ ନିଜ ସ୍ୱାତନ୍ତ୍ର୍ୟରେ କୋଟୀ ସ୍ପର୍ଶ ଲାଭ କରିଛନ୍ତି । ଗଳ୍ପ ଗୁଡ଼ିକର ଆରମ୍ଭ, ମଧ୍ୟ ଓ ପ୍ରାନ୍ତ ଏକ ଅଭିନବ ଗତିଶୀଳତାରେ ଚଳଚଞ୍ଚଳ । ଗଳ୍ପ-ଗତିରେ ଶିଥିଳତା ନାହିଁ । ପ୍ରଚୁର ସମ୍ବେଦନଶୀଳତା ଯୁକ୍ତିବାଦୀ ମନ ଓ ଭାବପ୍ରବଣତାର ଅଫୁରନ୍ତ ଉଚ୍ଛ୍ୱାସ ମଧ୍ୟରେ ଗାଳ୍ପିକ ତାଙ୍କ ସୃଜନ ପ୍ରକ୍ରିୟାକୁ କରିଛନ୍ତି ଗୌରବ ମଣ୍ଡିତ । ଅତି ସହଜରେ ଗାଳ୍ପିକଙ୍କ ମାୟା ଜାଲରେ ପାଠକଟିଏ ନିଜ ଅସ୍ତିତ୍ୱକୁ ଭୁଲି ଯାଇପାରେ । ଭୁଲି ଯାଇପାରେ ତା'ବାସ୍ତବ ଜୀବନର ଜଞ୍ଜାଳ ପୂର୍ଣ୍ଣ ମୁହୂର୍ତ୍ତଗୁଡ଼ିକୁ । ଏକ ଭାବାବାଦୀ ସମୁଦ୍ର ମଧ୍ୟରେ ଏକାକୀ ବଟପତ୍ରରେ ଶୟନ ପୂର୍ବକ ସାଂସାରିକ ମାୟା-ମୋହ-ବନ୍ଧନରେ ବାନ୍ଧି ହୋଇପଡ଼େ । ଆବେଗାପ୍ଲୁତ ତାର ମନ ସେହି ଭାବବାଦକୁ ଆଶ୍ରୟ କରି ଇହଲୀଳା ସମ୍ବରଣ କରିବାର ଆକାଂକ୍ଷା ରଖେ । ସଂସାରକୁ ପ୍ରେମପୂର୍ଣ୍ଣ ଦୃଷ୍ଟି ନେଇ ତର୍ଜମା କରୁଥିବା ଗାଳ୍ପିକ ମହାପାତ୍ର ନୀଳମଣି ସାହୁ ମଣିଷକୁ ଅମୂଲ୍ୟ ସଂପଦ ଭାବେ, ସୃଷ୍ଟିର ଅମୃତମୟ ସ୍ୱାକ୍ଷର ଭାବରେ ଗ୍ରହଣ କରିଛନ୍ତି । ଏବଂ, ସେହି ସଂପଦକୁ ଅଧିକ ପ୍ରାଚୁର୍ଯ୍ୟପୂର୍ଣ୍ଣ କରିବା ପାଇଁ ନୈସର୍ଗିକ ପ୍ରକୃତିକୁ ଏକ ଅଭିନବ ଉପାଦାନ ଭାବେ ଗ୍ରହଣ କରିଛନ୍ତି କଥାକାର । ତେବେ ଏ ସମସ୍ତଙ୍କୁ ଯେଉଁ ଭାବବାଦୀ ବଳୟଟି ତାର ସମ୍ମୋହନ ଶକ୍ତିରେ ବାନ୍ଧି ରଖିଛି ସେଥିରୁ କଥାକାର ମୁକ୍ତି ପାଇପାରି ନାହାନ୍ତି, ପାଠକ ମୁକ୍ତ ହେବ ବା କିପରି ?

**ସହାୟକ ଗ୍ରନ୍ଥସୂଚି**

୧) କର, (ପ୍ରଫେସର) ବାଉରୀବନ୍ଧୁ, ଓଡ଼ିଆ ସାହିତ୍ୟର ଇତିହାସ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ,୨୦୧୦ ।

୨) ଗାହାଣ, (ଡ.) କପିଳେଶ୍ୱର, ଓଡ଼ିଆ କ୍ଷୁଦ୍ରଗଳ୍ପ: ସ୍ରଷ୍ଟା ସହୃଦୟ, ଅଗ୍ରଦୂତ, ବାଙ୍କାବଜାର, କଟକ,୨୦୦୭ ।

୩) ବାରିକ, (ଡ.) କବିତା, ଶହେ ବର୍ଷର ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଏକ ତାତ୍ତ୍ୱିକ ବିଶ୍ଳେଷଣ (୧୮୯୮-୧୯୯୮), ବିଦ୍ୟାପୁରୀ, କଟକ,୧୯୯୯ ।

୪) ସାମଲ, (ଡ.) ବୈଷ୍ଣବ ଚରଣ, ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ, ବୁକ୍ସ ଏଣ୍ଡ ବୁକ୍ସ, କଟକ,୧୯୯୦ ।

୫) GRAMSCI, ANTONIO, Selections from the Prison Note Books, Orient Longman, Chennai,2007.

୬) BENNETT, ANDREW, The Author, Routledge New York, 2005.



Source: Author, Digitized by PPRACHIN, SOA

# 'ରାଜକନ୍ୟା'ର ରୂପକାର ନିତ୍ୟାନନ୍ଦ ମହାପାତ୍ର

ଆମ ସମୟର ଶତାୟୁ ପୁରୁଷ ନିତ୍ୟାନନ୍ଦ ମହାପାତ୍ର ଓଡ଼ିଆ ସାହିତ୍ୟରେ ଜଣେ ଅନବଦ୍ୟ କଥାକାର । ଘରଡିହ, ହିଡମାଟି, ଭଙ୍ଗାହାଡ଼ ପରି ଉପନ୍ୟାସ ତାଙ୍କ ସାରସ୍ୱତ ସୃଜନ ପ୍ରତିଭାର ଗୋଟିଏ ଲେଖାଏଁ ଉଚ୍ଚତର ନମୂନା । କଥା ସାହିତ୍ୟରେ ପରୀକ୍ଷାନିରୀକ୍ଷା କରି ନିଜ ପ୍ରକ୍ରିୟାକୁ ସେ ଯେପରି ଏକ ରୁଚିଶୀଳ ସୋପାନଟିଏ ନିର୍ମାଣ କରିଛନ୍ତି ସେଇପରି ତାଙ୍କ ବ୍ୟକ୍ତିଗତ ଜୀବନ ବହୁ ସଂଘାତରେ ଏକ ଦୃଶ୍ୟମାନ ଆଲେଖ୍ୟ । ମଣିଷ ପ୍ରତି ତାଙ୍କର ଯେପରି ରହିଛି ଶ୍ରଦ୍ଧାଶୀଳ ମନୋଭାବ ସେହିପରି ବସ୍ତୁବାଦୀ ଦୁନିଆଠାରୁ ରଖିଛନ୍ତି ସେ ଯଥେଷ୍ଟ ଦୂରତ୍ୱ ।

ଆମ ଓଡ଼ିଶା ସୌଜନ୍ୟରୁ ସୌମ୍ୟରଞ୍ଜନ ପଟ୍ଟନାୟକ ସମ୍ପାଦନାରେ ପ୍ରକାଶ ପାଇଛି ନିତ୍ୟାନନ୍ଦ ମହାପାତ୍ରଙ୍କ 'ରାଜକନ୍ୟା' ଶୀର୍ଷକ ଗଳ୍ପ ସଂକଳନ (୨୦୧୧) । ''ରାଜକନ୍ୟା' ଶୀର୍ଷକ ଗଳ୍ପଗୁଡିକ ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ଏକ ନୂତନ ପରୀକ୍ଷା । ଏ ପରୀକ୍ଷା ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର କରିଥିଲେ ଆଜିଠୁଁ ପ୍ରାୟ ଚାଳିଶ ବର୍ଷ ତଳେ । ଆଜି ଦୀର୍ଘ ବର୍ଷ ପରେ ସେହି ଲେଖାଗୁଡିକୁ ସାଉଁଟି ଆମେ ଏହି ବହିଟିକୁ ନୂଆକରି ପ୍ରସ୍ତୁତ କରିଛୁ । ଶେଷ ସୁଦ୍ଧା ଆମକୁ ମାତ୍ର ନଅଟି 'ରାଜକନ୍ୟା' ମିଳିଲା । ତାହା ସହିତ ତାଙ୍କର ପ୍ରସିଦ୍ଧ ଗଳ୍ପ 'ଅନ୍ୱେଷଣ'କୁ ମିଶାଇ ମୋଟ ଦଶଟି ଗଳ୍ପର ଏହି ବହି ପ୍ରକାଶ ପାଇଛି । ଲେଖକଙ୍କ ଅନୁମତି ନେଇ 'ଅନ୍ୱେଷଣ' ଗଳ୍ପଟିର ନାଆଁ ମଧ୍ୟ 'ରାଜକନ୍ୟା' ରଖାଯାଇଛି ।"(ପ୍ରକାଶକଙ୍କ ମନ୍ତବ୍ୟ)

ସାମ୍ପ୍ରତିକ ଗଳ୍ପଧାରାର କାହାଣୀ ସଂରଚନା, ଚରିତ୍ର ଚିତ୍ରାୟନ ତଥା ଭାବ ଅବବୋଧକୁ ବିଚାରକଲେ, 'ରାଜକନ୍ୟା' ସଂକଳିତ ଗଳ୍ପ ମଧ୍ୟରେ ସେସବୁ ପରିଦୃଶ୍ୟ ହୁଏ ନାହିଁ । ଫାଣ୍ଟସୀ ପର୍ଯ୍ୟାୟଭୁକ୍ତ ଏ ସମସ୍ତ ଗଳ୍ପର ଶେଷ ପର୍ଯ୍ୟାୟରେ ରହିଛି ବୁଦ୍ଧିଦୀପ୍ତ ପ୍ରଶ୍ନରାଜି । ଯାହାର ଉତ୍ତର ବୁଦ୍ଧିର କଷଟି ପଥରରେ ଶାଣିତ ହେବା ପାଇଁ ବାଧ୍ୟ । କାରଣ ପ୍ରତ୍ୟେକ ଗଳ୍ପର ଅନ୍ତରାଳରେ ଯେଉଁ ତୀକ୍ଷଣ ମନସ୍ତାତ୍ତ୍ୱିକ ପ୍ରକାର୍ଯ୍ୟଟିର ଅବତାରଣା କରାଯାଇଛି ତାକୁ ଭେଦ କରିବା ଏତେ ସହଜସାଧ୍ୟ ନୁହେଁ । ଯେହେତୁ ମନୋବିଶ୍ଳେଷଣ ହେଉଛି ଫାଣ୍ଟସୀର ମୂଳକେନ୍ଦ୍ର ତେଣୁ ଏହି ସବୁ ଗଳ୍ପରେ ବୁଦ୍ଧିମତୀ ରାଜକନ୍ୟାର ବିବାହ ଜନିତ ସର୍ତ୍ତ ଓ ତାକୁ କେନ୍ଦ୍ରକରି ଉତ୍ଥିତ ସମସ୍ୟାର ସମାଧାନ କେବଳ ତାର ଯୋଗ୍ୟ



Source: Author, Digitized by PPRACHIN, SOA

ବରପାତ୍ର ପାଇଁ ଅଭିପ୍ରେତ, ଅନ୍ୟଥା ଏହାର କୌଣସି ବିକଳ୍ପ ବ୍ୟବସ୍ଥା ନାହିଁ । ଯାହା ବ୍ୟତିରେକ ଅତି ସହଜରେ ଯେକୌଣସି ବ୍ୟକ୍ତି ରାଜକୁମାରୀର ପାଣିଗ୍ରହଣ ପାଇଁ ଯୋଗ୍ୟ ବିବେଚିତ ହୋଇପାରିବ ନାହିଁ । କେତେବେଳେ ରାଜକନ୍ୟା ନିଜେ ସୃଷ୍ଟି କରିଥିବା ପ୍ରଶ୍ନ ପହେଳୀର ସମାଧାନ ସୂତ୍ର ନିର୍ଦ୍ଧାରଣ କରିପାରି ନାହିଁ ତ କେତେବେଳେ ବିବାହ ପାଇଁ ଆସିଥିବା ପ୍ରାର୍ଥୀ ସେଇ ପହେଳୀକୁ ଭେଦ କରିପାରିନାହାନ୍ତି । ଏହି ସଂକଳନ ସ୍ଥିତ ୧୦ଟି ରାଜକନ୍ୟା ଗଳ୍ପଗୁଡିକର ବିଷୟବସ୍ତୁ ଆଲୋଚନା କରାଗଲେ ତାହା ପାଠକ ଉପରେ ଯେଉଁ ପ୍ରଭାବ ବିସ୍ତାର କରିଛି, ସହଜରେ ବୋଧଗମ୍ୟ ହେବ ।

'ରାଜ କୁମାରୀ – ୧' ଗଳ୍ପରେ ରାଜକୁମାରୀ ଋଷି ଦ୍ୱାରା ଅଭିଶପ୍ତ । ଋଷି ଅଭିଶାପ ଦେଇ କହିଛନ୍ତି ଯେ ରାଜକୁମାରୀର ବିବାହ ଜଣେ ଅନ୍ଧ ସହିତ ହେବ । ସାରା ରାଜ୍ୟରେ ଭାଳେଣୀ ପଡିଗଲା । ବର ଖୋଜା ଚାଲିଲା । ରାଇଜରେ ଯେତେ ଅନ୍ଧ ବାତୁଅ ଥିଲେ, ସମସ୍ତେ ଠୁଳ ହେଲେ । ତାଙ୍କ ଭିତରୁ ରାଜା ବାଛିଲେ ତିନିଜଣ । ଜଣେ ଜନମରୁ ଅନ୍ଧ, ରୋଗରେ ପଡି ଜଣକର ଆଖି ଫୁଟିଯାଇଛି, ଆଉ ଜଣେ ଆଖିକୁ ଫୁଟାଇ ଦେଇଛି । କେମା କାହାକୁ ବାଛିବେ ?"(ପୃ-୮) । ପାଠକମାନଙ୍କ ଉଦ୍ଦେଶ୍ୟରେ ଅଭିପ୍ରେତ ଏହି ପ୍ରଶ୍ନର ଉତ୍ତର ପାଇଁ ନିଜ ବୁଦ୍ଧି, ବିବେକ ଓ ପ୍ରଜ୍ଞାର ବିନିଯୋଗ କରିବାକୁ ପଡିବ । କ୍ଷୁଦ୍ରଗଳ୍ପର ଆକସ୍ମିକ ଆରମ୍ଭ ଓ ଅସନ୍ତୋଷଜନିତ ପରିସମାପ୍ତି ଗୁଣଟି ଏହି ଗଳ୍ପରେ ପ୍ରତୀକିତ ହେବା ସହିତ ମାନସିକ ଦ୍ୱନ୍ଦ୍ୱ ଉକ୍ତ ଗଳ୍ପଟିକୁ ଅଧିକ ପ୍ରାଣୋଦୀପ୍ତ କରିଛି । 'ରାଜକନ୍ୟା –୨' ଗଳ୍ପରେ ସ୍ୱୟଂବର ପାଇଁ ରାଜକନ୍ୟା ପଣ କରିଛି, "ମୋ ପୋଇଲୀ ପରିଚାରୀକାମାନେ ହାଟକୁ ଯିବେ ନାହିଁ, ବାଡ଼ିରେ ହାଟବସିବ । ବଜାରକୁ ଯିବେ ନାହିଁ, ଘରେ ବଜାର ବସିବ । ଆଉ ମୋ ପାଇଁ ଯେ ଫୁଲର ବସ୍ତ୍ର ବୁଣିଦେବ ମୁଁ ତାକୁଇ ବାହାହେବି ।" (ପୃ-୯) ଅଙ୍ଗ, ବଙ୍ଗ, କଳିଙ୍ଗର ରାଜକୁମାରମାନଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଏଭଳି ସର୍ତ୍ତ ପୂରଣ ପାଇଁ ଅକ୍ଷମତା ପ୍ରକାଶ କରି ଚାଲିଯାଇଛନ୍ତି । ଛ'ମାସ ପରେ ପ୍ରଥମ ରାଜପୁତ୍ର ରାଜଉଆସକୁ ଲାଗିଥିବା ବାଡ଼ିରେ ସମସ୍ତ ପ୍ରକାର ପନିପରିବା ଉତ୍ପାଦନ କରିଦେଲା ଯେପରି କାହାରିକୁ ପରିବା ଆଣିବାକୁ ପାଇଁ ହାଟକୁ ଯିବାକୁ ପଡିବ ନାହିଁ । ଦ୍ୱିତୀୟ ରାଜକୁମାର ଅନ୍ତପୁରରେ ଏପରି ବଜାରଟିଏ ବସେଇ ଦେଲା ଯେ ସମସ୍ତ ବ୍ୟବହାରିକ ଜିନିଷପତ୍ର ପାଇଁ ବଜାରକୁ ଯିବା ଅନାବଶ୍ୟକ ହେଲା । ସେଇପରି ତୃତୀୟ ରାଜପୁତ୍ର, କପା ଫୁଲରୁ ଶାଢ଼ୀ ତିଆରି କରି ରାଜକୁମାରୀକୁ ଉପହାର ଦେଲା । ରାଜକନ୍ୟାର ସର୍ତ୍ତପୂରଣ ହେବା ଦେଖି ରାଜା ସ୍ଥିର କଲେ, ରାଜକୁମାରୀ ଯାହାକୁ ବିବାହ କରିବାପାଇଁ ଇଚ୍ଛା ତାକୁ ପତି ରୂପେ ବରଣ କରିପାରେ । ରାଜକୁମାରୀ ଦେଖିଲେ, ରାଜକୁମାରମାନଙ୍କ ମଧ୍ୟରୁ ଜଣକର ଆଖି ସୁନ୍ଦର, ଜଣକର ନାକ ସୁନ୍ଦର ଏବଂ ଆଉ ଜଣକର ପାଟି ସୁନ୍ଦର । ଏହି ତିନ ରାଜକୁମାର ମଧ୍ୟ ତିନୋଟି ପ୍ରସଙ୍ଗ ଉପସ୍ଥାପନ କଲେ । ତେବେ ରାଜକୁମାରୀର ସମସ୍ୟା, ସେ ଏବେ



Source: Author, Digitized by PPRACHIN, SOA

କାହା ବେକରେ ବରଣମାଳା ଦେବେ । ଗଳ୍ପର ପରିସମାପ୍ତି ଘଟିଛି ରାଜକୁମାରୀର ପତିନିର୍ବାଚନ ଜନିତ ମାନସିକ ଦ୍ୱନ୍ଦ୍ୱରେ ।

'ରାଜକୁମାରୀ-୩' ଗଳ୍ପରେ ବିବାହଯୋଗ୍ୟ ରାଜକୁମାରୀର ଉପଯୁକ୍ତ ପାତ୍ର ସନ୍ଧାନରେ ମହାରାଜା ଚିନ୍ତାଗ୍ରସ୍ତ । ଜଗନ୍ନାଥଙ୍କ ନିକଟରେ ଶରଣାପନ୍ନ ହେବାରୁ ସ୍ୱପ୍ନାଦେଶ ହେଲା । 'ରାଜା, ଜେମା ବିଭା ହେବେ । ନିଶ୍ଚୟ ବିଭା ହେବେ, ଯେଉଁ ନିଶାର୍ଦ୍ଧରେ ସୂର୍ଯ୍ୟ ଉଦୟ ହେବ, ଅମାବାସ୍ୟାରେ ଚନ୍ଦ୍ର ଦେଖାଯିବେ, ସେହିଦିନ ।" (ପୃ-୧୨) ଏପରି ଅସମ୍ଭବ କଳ୍ପନାତୀତ ସ୍ୱପ୍ନାଦେଶ ରାଜପରିବାର ପାଇଁ ଆଣିଦେଲା ବିଷାଦର କଳାମେଘ । ଏକ ଅନିଶ୍ଚିତ ଭବିଷ୍ୟତ ଆଶଙ୍କାଭିତରେ ରାଜପରିବାର ଗତି କରୁଥିବା ସମୟରେ ହଠାତ୍ ଦୁଇ ଯୁବ କବି 'ନିଶୀଥ ସୂର୍ଯ୍ୟ' ଏବଂ 'ଅମାବାସ୍ୟାରେ ଚନ୍ଦ୍ର' ଶୀର୍ଷକ ଦୁଇଟି କାବ୍ୟଗ୍ରନ୍ଥ ଧରି ରାଜନଅରରେ ପ୍ରବେଶ କଲେ । ସ୍ୱପ୍ନାଦେଶକୁ ସାକାର କରିବା ଉଦ୍ଦେଶ୍ୟରେ ଗଜପତି ମହାରାଜ ଏକ ପଣ୍ଡିତ ସଭାର ଆୟୋଜନ କଲେ । ଅମାବାସ୍ୟାରେ ଚନ୍ଦ୍ର ଉଦୟ ଏବଂ ରାତିରେ ସୂର୍ଯ୍ୟୋଦୟ କିପରି ସମ୍ଭବ ହୋଇପାରେ ଯୁବ କବି ଦ୍ୱୟ ସ୍ୱରଚିତ କାବ୍ୟ ମାଧ୍ୟମରେ ବହୁ ଶାସ୍ତ୍ର ପୁରାଣର ଉଦାହରଣ ଦେଇ ନିଜ ନିଜ ବଳିଷ୍ଠ ଯୁକ୍ତିମାନ ଉପସ୍ଥାପନ କଲେ । ବହୁ ତର୍କ ବିତର୍କ ପରେ ରାଜଜେମାଙ୍କ ହସ୍ତରେ ପତି ନିର୍ବାଚନର ଦାୟିତ୍ୱ ନ୍ୟସ୍ତ କଲେ ମହାରାଜା । ଅବାସ୍ତବ, ଅତିକଳ୍ପନା ସହିତ ବାସ୍ତବର ତୁଳନାତ୍ମକ ବିଚାରକରି କେଉଁଟି ପ୍ରକୃତ ପକ୍ଷେ ଗ୍ରହଣୀୟ, ସେ ସମ୍ପର୍କରେ ଏକ ସନ୍ଦିଗ୍ଧ ମାନସିକତା ସୃଷ୍ଟି ହୋଇଛି ରାଜକୁମାରୀଠାରେ । ରାଜକୁମାରୀ ସ୍ଥିର ନିଶ୍ଚିତ ହୋଇପାରୁ ନାହିଁ କାହାକୁ ଜୀବନସାଥୀ ରୂପେ ବରଣ କରିବେ । କାରଣ ଉଭୟଙ୍କ ଯୁକ୍ତିନିଷ୍ଠ ତଥ୍ୟ ପ୍ରଦାନ ମୂଳରେ ଯେଉଁ ବାସ୍ତବତାର ଦୃଶ୍ୟପଟଟି ରହିଛି ତାହା କେତେଦୂର ଯଥାର୍ଥ ଓ ସେଥିରେ ସତ୍ୟର କେତେ ଉଦ୍ଘାଟନ ରହିଛି ।

'ରାଜକନ୍ୟା-୪' ଗଳ୍ପରେ ଯାଗଯଜ୍ଞରୁ ସମ୍ଭୂତ ପାତାଳ ପୁରୀର ରାଜଜେମା ନାଗବାଳା ଥିଲେ ଅପରୂପ ସୌନ୍ଦର୍ଯ୍ୟର ଅଧିକାରୀ, ଅନିନ୍ଦ୍ୟାସୁନ୍ଦରୀ, କିନ୍ତୁ ଆଶ୍ଚର୍ଯ୍ୟର କଥା ଜନ୍ମହେବା ଦିନଠାରୁ ଦୀର୍ଘ ୧୭ବର୍ଷ ହେବା ଯାଏଁ ରାଜକୁମାରୀ କେବଳ ଶୋଇ ରହୁଥିଲେ । ସମସ୍ତ କାର୍ଯ୍ୟ ଯଥା ସମୟରେ ସେ ସମ୍ପନ୍ନ କରୁଥିଲା, କିନ୍ତୁ ଆଖି ଖୋଲୁ ନଥିଲା । ମହାରାଜା, ମହାରାଣୀ ସମେତ ସମସ୍ତେ ବିଷାଦରେ ଥିବା ବେଳେ ଜନୈକ ଋଷି ରାଜପ୍ରସାଦରେ ଆବିର୍ଭୂତ ହୋଇ ସମସ୍ତଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ରାଜଜେମା ଉଠିଲାମାତ୍ରେ ବିଭାହେବ ନଚେତ୍, ତା'ର ମୃତ୍ୟୁ ଘଟିବ ଏବଂ ସେ ଏହି ପାତାଳରେ ହିଁ ରହିବ । ଏହି ଘଟଣାଟି ପ୍ରଘଟ ହେବା ପରେ ପଡ଼ୋଶୀ ରାଜ୍ୟର ରାଜଦୂତମାନେ ରାଜକନ୍ୟାର ନିଦ୍ରାଭଙ୍ଗ ନିମନ୍ତେ ତତ୍ପର ହୋଇ ପଡ଼ିଲେ । ନିଦ୍ରାରୁ ଉଠିବାମାତ୍ରେ ପଡ଼ୋଶୀ ରାଷ୍ଟ୍ରର ରାଜଦୂତମାନେ ସେମାନଙ୍କ ରାଜ୍ୟ ଓ ରାଜକୁମାରମାନଙ୍କ ଗୌରବଗାନ କଲେ ।



Source: Author, Digitized by PPRACHIN, SOA

ଜଣେ ନିଜ ରାଜ୍ୟକୁ ଅତିକଳ୍ପନା ରାଜ୍ୟର ମାନ୍ୟତା ଦେଲାବେଳେ ଅନ୍ୟ ଜଣେ ରାଜ୍ୟ ଓ ପ୍ରଜାମାନଙ୍କ ସ୍ୱାଭାବିକ ଜୀବନଧାରଣ ସମ୍ପର୍କରେ ବକ୍ତବ୍ୟ ରଖୁଥିଲେ । ଜେମା କିନ୍ତୁ ଥିଲେ ନିରୁତ୍ତର, ତାଙ୍କର ଏହି ନିରବତା ରାଜା ଓ ରାଣୀଙ୍କୁ ବ୍ୟସ୍ତ ବିବ୍ରତ କରୁଥିଲା । ରାଜଜେମା ନିଷ୍ପତ୍ତି ନେବାରେ ଯେଉଁ କାଳକ୍ଷେପଣ ନୀତି ଅବଲମ୍ବନ କରୁଥିଲେ ତା'ର ଅନ୍ତରାଳରେ ଥିଲା ମାନସିକ ଦ୍ୱନ୍ଦ୍ୱ ।

'ରାଜକନ୍ୟା-୫' ଗଳ୍ପରେ ମଗଧର ବିଦୂଷୀ, ନୀତିନିପୁଣା ରାଜକନ୍ୟା ନିଜ ବିବାହ ପାଇଁ ସର୍ତ୍ତ ରଖିଥିଲେ – "ସ୍ୱୟଂବର କାର୍ଯ୍ୟକ୍ରମ ଥରକରେ ସମ୍ପନ୍ନ ନ ହୋଇ ସମ୍ପୂର୍ଣ୍ଣ ହେବ ଥର ଥର ଚାରିଥରରେ । ଯୋଗ୍ୟ, ଯୋଗ୍ୟତର, ଅଯୋଗ୍ୟ ପ୍ରାର୍ଥୀମାନଙ୍କର କ୍ରମ ପରିହାର କ୍ରମରେ ।" ପୃ-୨୦) ଏହି ସର୍ତ୍ତ ପୂରଣ ପାଇଁ ଅନ୍ୟ ଏକ ମାଧ୍ୟମ ଥିଲା ; ନିଶିଶେଷରେ ଯେଉଁ ରାଜକୁମାରଙ୍କ ଭାଲପଟରେ ଭସ୍ମାଙ୍କିତ ଥିବ ସେ ହେବ ଯୋଗ୍ୟତମ । ତା'ପରଦିନ ସ୍ଥିର କରାଗଲା, ଯେଉଁ ରାଜକୁମାରଙ୍କ ମସ୍ତକରେ ସିନ୍ଦୂରବିନ୍ଦୁ ଅଙ୍କିତ ଥିବ ସେମାନେ ହେବେ ଅଯୋଗ୍ୟତର । ସ୍ୱୟଂବରର ତୃତୀୟ ଦିବସରେ ସ୍ଥିର ହେଲା କପାଳରେ ଚନ୍ଦନ ଚର୍ଚ୍ଚିତ ରାଜକୁମାର ହେବେ ଅଯୋଗ୍ୟ । ଚତୁର୍ଥ ପର୍ଯ୍ୟାୟରେ ଯେଉଁ ତିନିଜଣ ରାଜକୁମାର ଥିଲେ ସେମାନେ ଥିଲେ ଜନ୍ମସିଦ୍ଧ, ସାଧନାସିଦ୍ଧ ଓ କୃପାସିଦ୍ଧ । ବିବାହ ସର୍ତ୍ତ ମୁତାବକ ଏହି ତିନି ସୁଯୋଗ୍ୟ ପାତ୍ର କେବଳ ଜ୍ଞାନ-ଗୌରବର ଅଧିକାରୀ ନଥିଲେ ପରନ୍ତୁ ବଳିଷ୍ଠ ବ୍ୟକ୍ତିତ୍ୱ ଧାରଣ କରିଥିଲେ । ତେବେ ଏମାନଙ୍କ ମଧ୍ୟରୁ କିଏ ଶ୍ରେୟ ଏବଂ ବିବାହଯୋଗ୍ୟ ସେ ନେଇ ରାଜକୁମାରୀ ଦ୍ୱନ୍ଦ୍ୱରେ ପଡିଛନ୍ତି ।

'ରାଜକନ୍ୟା-୬' ଏକ ଭିନ୍ନ ଭାବଗତ ଶୈଳୀର ଗଳ୍ପ । ଏଥିରେ ରହିଛି ତିନୋଟି ପର୍ଯ୍ୟାୟ ବା ପର୍ବ । ପ୍ରଥମ ପର୍ବରେ ରାଜକନ୍ୟା ନିଜ କଳ୍ପନାପ୍ରସୂତ ରାଜକୁମାରର ସ୍ୱରୂପ ସମ୍ପର୍କରେ ଅବଗତ କରାଇଛି ପ୍ରିୟ ସଖୀକୁ । ସଖୀ ଅନୁରୂପ ରାଜକୁମାର ସ୍ୱଭାବ, ରୂପ ବର୍ଣ୍ଣନା ସହିତ ତାର ପ୍ରେମପୂର୍ଣ୍ଣ ବ୍ୟବହାରକୁ ଏପରି ବର୍ଣ୍ଣନା କରିଛି ଯେ ରାଜକୁମାରୀ ସତେଯେପରି ପ୍ରତଟି ମୁହୂର୍ତ୍ତରେ ରାଜକୁମାରର ସ୍ୱରୂପକୁ ସଖୀର ମନ ଓ ହୃଦୟ ଭିତରେ ଉପଲବ୍ଧି କରିଛି । ଦ୍ୱିତୀୟ ପର୍ବରେ ସଖୀ ଓ ରାଜକୁମାରୀ ମଧ୍ୟରେ ଥିବା ଅନ୍ତରଙ୍ଗ, ବନ୍ଧୁତ୍ୱର ବର୍ଣ୍ଣନା ଏବଂ ରାଜକୁମାରର ସର୍ତ୍ତ ସମ୍ପର୍କିତ ଚର୍ଚ୍ଚା ବେଶ୍ ରସୋଚ୍ଛଳ । ତୃତୀୟ ପର୍ବରେ ଅଭୀଷ୍ଟ ଫଳପ୍ରସୂ ସ୍ୱରୂପ ଯେତେବେଳେ ରାଜକୁମାର ନିଶାର୍ଦ୍ଧରେ ରାଜକୁମାରୀ ଦ୍ୱାରଦେଶରେ ଉପନୀତ ହୋଇଛି ସେତେବେଳେ ରାଜକୁମାରୀ ଏଭଳି ପରିସ୍ଥିତିକୁ ସହଜରେ ଗ୍ରହଣ କରିପାରିନି । କାରଣ ବାସ୍ତବ ଓ କଳ୍ପନା ମଧ୍ୟରେ ଥିବା ପ୍ରଭେଦକୁ ରାଜକୁମାରୀ ବୁଝିବାକୁ ଅକ୍ଷମ । ମନେହୁଏ ରାଜକୁମାରୀ ସଖୀଠାରୁ କେବଳ ଶ୍ରୁତିରେ ଶ୍ରୁତିରେ ସଖୀର ବିବରଣୀରେ ମନ୍ତ୍ରମୁଗ୍ଧ ହୋଇଛି । ରାଜକୁମାରୀର ମନ ଓ ପ୍ରାଣ ଯେପରି ସେଇ ଶ୍ରୁତିରେ ରୋମାଞ୍ଚିତ ହୋଇଛି ସେଇପରି ଏକ ସୁଖସ୍ୱପ୍ନରେ ହୋଇଛି ବିଭୋରିତ । ରାଜକୁମାରୀର ସ୍ୱରୂପକୁ ସେ



Source: Author, Digitized by PPRACHIN, SOA

ସନ୍ଦର୍ଶନ କରିଛି ସଖୀର ସ୍ନେହବୋଳା ହୃଦୟର ଭାଷାରେ । ତେଣୁ ସେ ସଖୀର ହୃଦୟରୁ ବିଚ୍ଛିନ୍ନ ହେବା ପାଇଁ ଚାହିଁନି । ଅଲକ୍ଷ୍ୟରେ ରାଜକୁମାରର ବାସ୍ତବ ରୂପ ଓ ସାନ୍ନିଧ ଅପେକ୍ଷା ସଖୀ ହିଁ ହୋଇଛି ରାଜକୁମାରୀର ସୁଖ, ଶାନ୍ତି ଓ ପ୍ରେମର ଉତ୍ସ ।

'ରାଜକନ୍ୟା -୭' ଗଳ୍ପରେ ରାଜକୁମାରୀ କଳାବତୀର ବୟସ ଅତିକ୍ରାନ୍ତ ହେବାରେ ଲାଗିଛି । କଳାବତୀ ଦେହରେ ବାଉଁଆ ପାଣି ନ ପଡିବାରୁ ଚିନ୍ତିତ ହୋଇ ପଡିଛନ୍ତି ରାଜା ଓ ରାଣୀ । ବାପା ମା'ଙ୍କ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲା ରାଜକୁମାରୀ । ବିଚଳିତ କଳାବତୀ ପରିଶେଷରେ ନିଷ୍ପତ୍ତି ନେଇ କାଚ ଗମ୍ଭିରୀରେ ତିନିଦିନ ତିନିରାତି ମୁହଁମାଡ଼ି ଅଖିଆ ଅପିଆ ପଡିରହିଲା । ଏହି ଅବସରରେ ଅର୍ଦ୍ଧରାତ୍ରରେ ସମୁଜ୍ଜ୍ୱଳ ହୋଇଉଠିଲା ଅନ୍ଧାର ଆଚ୍ଛାଦିତ ଗିମ୍ଭିରୀ ଘର । ଦେବୀ ରାଜଲକ୍ଷ୍ମୀ ଆବିର୍ଭାବ ହୋଇ ରାଜକନ୍ୟାକୁ ବର ଦେଇ କହିଲେ, "ଗହନ ବନ ଭିତରେ ଗୋଟିଏ ଶଙ୍ଖମର୍ମର ପାହାଡ଼ ଅଛି । ପାହାଡ଼ ତିନିପାଖରେ ତିନୋଟି ଗୁମ୍ଫା – ମଣି, ମାଣିକ୍ୟ ଆଉ ବୈଦୂର୍ଯ୍ୟ ଖଣି ଖୋଳି ତିଆରି ହୋଇଛି । ଗୋଟିଏ ରତ୍ନରେ ଗୋଟିଏ ଗୁମ୍ଫା, ଏକ ଏକ୍ ଗୁମ୍ଫାରେ ଏକ୍ ଏକ୍ ଯତି । ଯାହାକୁ ପସନ୍ଦ କରିବୁ ସେଇ ତୋର ବର ।" (ପୃ-୨୯) କାହାକୁ ନ ଜଣାଇ ଏକ ମୁହାଁ ହୋଇ ରାଜଜେମା ଦେବୀ ନିର୍ଦ୍ଦେଶ ପର୍ବତ ନିକଟରେ ଉପସ୍ଥିତ ହେଲା । ପ୍ରଥମ ଗୁମ୍ଫାରେ ସୁନ୍ଦର ବଳିଷ୍ଠ ସୌଷ୍ଠବ ଯତିଙ୍କୁ ସାକ୍ଷାତ କଲା ରାଜଜେମା । ଯତି ତାକୁ ମାଳାଟିଏ ଅର୍ପଣ କରି କହିଲେ, "ଦେବୀ ଏହି ମାଳାଧରି ସ୍ମରଣ କଲାମାତ୍ରେ ମୋତେ ସାକ୍ଷାତରେ ଲାଭ କରିପାରିବ ।" (ପୃ.୩୦) ଏହିପରି ଗୋଟିକ ପରେ ଗୋଟିଏ ତିନୋଟି ଗୁମ୍ଫା ଅତିକ୍ରମ କରି ତିନି ଯତିଙ୍କଠାରୁ ତିନୋଟି ମାଳା ସହିତ ଚରୁ ଧରି ନବରକୁ ଫେରିଆସିଲେ ରାଜକନ୍ୟା । ରାଜପ୍ରସାଦରେ ନିଜ ଉଦ୍ଦିଷ୍ଟ କୋଠରୀରେ ତିନୋଟି ମାଳା ସହିତ ଚରୁକୁ ସୁସଜ୍ଜିତ କରି ରଖିଲା କଳାବତୀ । ତା'ପରଦିନ ଜେମା ସ୍ନାନକରି ତିନୋଟି ମାଳାକୁ ପୂଜା କରିବାକୁ ଗଲାବେଳେ ଦେଖିଲା, ତିନୋଟିଯାକ ଚରୁ ଆଉ ନାହିଁ । ତା ଜାଗାରେ ଆଉ ତିନୋଟି ଦରବ କିଏ ଥୋଇ ଦେଇଛି । ମଣିହାର ପାଖରେ ଗୋଟିଏ ବଇଁଶୀ, ମାଣିକ୍ୟ ହାର ପାଖରେ ଗୋଟିଏ ରଙ୍ଗ ତୁଳୀ, ଆଉ ବୈଦୁର୍ଯ୍ୟ ହାର ପାଖରେ ଗୋଟିଏ ଲେଖନୀ ।" (ପୃ.୩୪) ପରଦିନ ରାଜ୍ୟରେ ଘୋଷଣା କରାଗଲା ରାଜକନ୍ୟାଙ୍କ ସ୍ୱୟଂବର । ରାଜ୍ୟର ଏହି ମହାର୍ଘ ମହୋତ୍ସବ ପାଇଁ ସବୁକିଛି ପ୍ରସ୍ତୁତ ହୋଇସାରିଛି । ରାଜକନ୍ୟା ମନରେ ଅସରନ୍ତି ଦ୍ୱନ୍ଦ୍ୱ – କାହାକୁ ସେ ନିଜର ପତିରୂପେ ବରଣ କରିବେ ? ବଂଶୀବାଦକ ସମ୍ମୋହନ ସୁର ତାଙ୍କୁ ଯେପରି ବିମୋହିତ କରିଛି ସେଇପରି ଚିତ୍ରଶିଳ୍ପୀର ରଙ୍ଗପସରାରେ ସେ ମନ୍ତ୍ରମୁଗ୍ଧ ଏବଂ କବିର ପ୍ରାଣୋଚ୍ଛଳ କାବ୍ୟମାଧୁରିମାରେ ରାଜକୁମାରୀର ମନ ଉଚ୍ଚାଟିତ । ବଂଶୀବାଦକ, ଚିତ୍ରଶିଳ୍ପୀ ଏବଂ କବିଙ୍କ ମଧ୍ୟରୁ କିଏ ହେବ ତାର ଉପଯୁକ୍ତ ଜୀବନସାଥୀ ! ମାନସିକ ଦ୍ୱନ୍ଦ୍ୱ ଭିତରେ ଯଥାର୍ଥ ନିଷ୍ପତ୍ତି ନେଇପାରି ନାହିଁ ରାଜକୁମାରୀ କଳାବତୀ ।



Source: Author, Digitized by PPRACHIN, SOA

'ରାଜକନ୍ୟା -୮' ଗଳ୍ପରେ ରାଜଜେମା ସ୍ଥିର କରିଛି, ସମସ୍ତଙ୍କଠାରୁ ଯିଏ ତାକୁ ଅଧିକ ଭଲ ପାଇବ ସେ ତାକୁ ବିବାହ କରିବେ । ରାଜକୁମାରୀଙ୍କୁ ବିବାହ କରିବା ଲାଗି ବହୁ ଦେଶ ଦେଶାନ୍ତରରୁ ଚିଠି ଲେଖିଛନ୍ତି ରାଜକୁମାରମାନେ । କିନ୍ତୁ ରାଜକୁମାରୀଙ୍କ ମନମର୍ମର ତରଙ୍ଗାୟିତ କଲାଭଳି ରାଜକୁମାରମାନଙ୍କ ସମର୍ପିତ ସ୍ୱୀକୃତି ଏବଂ ଭଲପାଇବାର ପୂର୍ଣ୍ଣ ପ୍ରତିଶ୍ରୁତି ରାଜକୁମାରୀଙ୍କ ନାପସନ୍ଦ ହୋଇଛି । ସମସ୍ତ ଦିଗରୁ ନିରୁତ୍ସାହିତ ହୋଇ ରାଜକୁମାରୀ କାଚ ଗମ୍ଭିରୀ ଘରେ ମୁହଁମାଡି ଶୋଇଥିବା ବେଳେ ଦେବୀ ରାଜଲକ୍ଷ୍ମୀ ଆବିର୍ଭୂତା ହୋଇ ରାଜକୁମାରୀର ମନୋବାଞ୍ଛା ପୂରଣ କରି କହିଲେ, "ମଣିଷ ନ ମିଳିଲେ ପଶୁ, ପକ୍ଷୀ, କୀଟ, ପ୍ରସଙ୍ଗ ଯିଏ ଯେତେ ମଣିଷଙ୍କଠୁ ବେଶୀ ଭଲପାଉଛି ବୋଲି ଭାବିବୁ ସେ ଦିବ୍ୟପୁରୁଷଟିଏ ପାଲଟି ଯିବ, ସେଇ ତୋ'ବର ।" (ପୃ-୩୭) ଗମ୍ଭିରୀ ଘରୁ ବାହାରି ଜେମା ଗାଧୋଇ ଆସିଲାବେଳକୁ ପ୍ରିୟ ପୋଷା କୁକୁର ସ୍ୱାଭାବିକ ରୀତିରେ ତା ଦେହରେ ଘଷି ହୋଇଗଲା । ଆଦରରେ ତାକୁ କୋଳକୁ ନେଇ ଆଉଁସି ଦେଲାବେଳେ କୁକୁରଟି ଗୋଟିଏ ଦିବ୍ୟ ପୁରୁଷରେ ରୂପାନ୍ତରିତ ହୋଇ ବିବାହ କରିବାକୁ ପ୍ରସ୍ତାବ ଦେଇଛି । ସେଇପରି ଜଣେ ଜଣେ ଦିବ୍ୟ ପୁରୁଷର ରୂପଧାରଣ କରି ବିବାହ ପାଇଁ ପ୍ରସ୍ତାବ ଦିଅନ୍ତି । ରାଜାରାଣୀ ଓ ରାଜ୍ୟବାସୀ ସମସ୍ତେ ଉତ୍ସୁକତାର ସହ ଅପେକ୍ଷା କରିଛନ୍ତି ଜେମା କାହାକୁ ପତିରୂପେ ବରଣ କରିବେ ।

'ରାଜକନ୍ୟା -୯' ଗଳ୍ପରେ ପିତୃମାତୃହୀନା ରାଜନନ୍ଦିନୀ ରାଜ୍ୟର ଶାସନଭାର ବହନ କରିଛି । ଶାସନ କାର୍ଯ୍ୟରେ ନିପୁଣା, ବିଦୁଷୀ ରାଜକନ୍ୟାର ପାଣିଗ୍ରହଣ ପାଇଁ ଅଭିଳାଷକୁ ରାଜକୁମାରୀ ପ୍ରତ୍ୟାଖ୍ୟାନ କରିଛି ରାଜନନ୍ଦିନୀ । ସବୁଦିନ ପରି ପ୍ରତ୍ୟୁଷରୁ ଉଠି ରାଜକାର୍ଯ୍ୟ ସମ୍ପାଦନ କରିବା ଏକ ପ୍ରକାର ନୀତି ହୋଇପଡିଛି ରାଜକୁମାରୀଙ୍କ । ହଠାତ୍ ଦିନେ ରାଜକନ୍ୟା ସ୍ୱାଭାବିକ ରୂପେ ପାହାନ୍ତାରୁ ଶଯ୍ୟାତ୍ୟାଗ କରିପାରିଲେ ନାହିଁ କି ରାଜକାର୍ଯ୍ୟ କରିପାରିଲେ ନାହିଁ । କେଉଁ ଏକ ଅଜଣା ବୀଣାବାଦକର ସମ୍ମୋହନ ବୀଣାବାଦନରେ ବିଭୋର ହୋଇ ରାଜକୁମାରୀଙ୍କ ନିତିପ୍ରତିଦିନ ସମଦଶା ଭୋଗ କଲେ । ଠିକ୍ ସମୟରେ ସଠିକ୍ ଭାବେ ରାଜକାର୍ଯ୍ୟ ତଦାରଖ କାରିପାରିଲେ ନାହିଁ ରାଜକନ୍ୟା । ଦିନକୁ ଦିନ ସେହି ବୀଣାର ଝନତ୍କାର ସୂର ରାଜକନ୍ୟାକୁ ମୋହାଚ୍ଛନ୍ନ କଲା । ଗୋଟିଏ ପଟେ ରାଜଧର୍ମ ଏବଂ ଅନ୍ୟପଟେ ହୃଦୟର ମଧୁର ମୂର୍ଚ୍ଛନାରେ ବିଭୋରିତ ରାଜଜେମା । ରାଜ୍ୟରେ ଯେହେତୁ ସଂଗୀତ ନୃତ୍ୟ ପରିବେଷଣ ଉପରେ ପ୍ରଜାମାନଙ୍କ ସ୍ୱାଧୀନତା ରହିଛି ତେଣୁ ରାଜକାର୍ଯ୍ୟରେ ବିଘ୍ନ ସୃଷ୍ଟି କରୁଥିଲେ ମଧ୍ୟ ବୀଣାବାଦକକୁ ନିଷିଦ୍ଧ କରିପାରିଲେ ନାହିଁ ରାଜଜେମା । ସଙ୍ଗୀତ ଓ ନୃତ୍ୟ ପରିଚର୍ଚ୍ଚା ରାଜ୍ୟର ଲିଖିତ ନିୟମ ଥିବାରୁ ବୀଣାବାଦକର ଅହରହ ବୀଣାବାଦନ ରାଜନନ୍ଦିନୀକୁ ଯେପରି ଆତ୍ମହରା କରୁଥିଲା, ସେଇପରି ରାଜକାର୍ଯ୍ୟରେ ସନ୍ତୋଷଜନକ ଅଗ୍ରଗତିରେ ବାଧକ ସାଜୁଥିଲା । ପରିଶେଷରେ



Source: Author, Digitized by PPRACHIN, SOA

ବିଚଳିତ ରାଜକନ୍ୟାର ନିଷ୍ପତ୍ତି ନେଲେ ବୀଣାବାଦକକୁ ଲକ୍ଷେ ମୁଦ୍ରା ଦେଇ ବୀଣାବାଦନରୁ ନିବୃତ କରିବା ପାଇଁ। ବୀଣାବାଦକ ଏଥିରେ ସନ୍ତୁଷ୍ଟ ନ ହୋଇ ଅବିରତ ଭାବରେ ବୀଣା ବଜାଇ ଚାଲିଲା। ଲକ୍ଷେ ମୁଦ୍ରାରୁ ଏକ କୋଟି ମୁଦ୍ରା ପ୍ରଦାନ ସତ୍ତ୍ୱେ ବୀଣାବାଦକ ନିଜ କର୍ମରେ ବ୍ୟସ୍ତ ରହିଲା, ରାଜକନ୍ୟା ରାଜ୍ୟର ଏକ ଚତୁର୍ଥାଂଶ ପ୍ରଦାନ ମଧ୍ୟ ବୀଣାବାଦକକୁ ପ୍ରଲୋଭିତ କରିବା ଦୂରର କଥା ରାଜ୍ୟର ସମସ୍ତ ଅଂଶ ପ୍ରତିବଦଳରେ ମଧ୍ୟ ବୀଣାବାଦକ ବୀଣା ବଜାଇବା ବନ୍ଦ କଲା ନାହିଁ। ପରନ୍ତୁ ଦିନକୁ ଦିନ ବୀଣାର ଝଙ୍କୃତ ସ୍ୱନରେ ରାଜକନ୍ୟାର ଅଥୟ ହୋଇପଡିଲେ କିନ୍ତୁ ବୀଣାବାଦକ ପୂର୍ବପରି ଘନଘନ ବୀଣାବାଦନ କରିଚାଲିଥାନ୍ତି।

'ରାଜକନ୍ୟା -୧୦' ଗଳ୍ପଟି ରାଜକନ୍ୟା ସଂକଳନସ୍ଥିତ ସମସ୍ତ ଗଳ୍ପଠାରୁ ଉଭୟ କଳେବର ଏବଂ ସମୟ ଅବଧି ଦୃଷ୍ଟିରୁ ଅଧିକ। ଏହି ଗଳ୍ପଟିକୁ ବାଦ୍‌ଦେଲେ ଅନ୍ୟ ନଅଗୋଟି ଗଳ୍ପରେ ରାଜକନ୍ୟାର ବିବାହ ସମ୍ପନ୍ନ ହେବା ବଦଳରେ ରହିଛି ପତି ନିର୍ବାଚନରେ ଅନ୍ତର୍ଦ୍ୱନ୍ଦ୍ୱ। କିନ୍ତୁ ସାତଗୋଟି ପର୍ବରେ ବର୍ଣ୍ଣିତ ଏହି ଦୀର୍ଘ ଗଳ୍ପରେ ରାଜକୁମାର ଶେଷ ପର୍ଯ୍ୟାୟରେ ବିବାହ କରିବା ଏକ ପ୍ରକାର ନିଶ୍ଚିତ ହୋଇଛି ସାନ ରାଜକୁମାରୀକୁ।

ପ୍ରଥମ ପର୍ବରେ ଅବନ୍ତୀ ରାଜକୁମାରୀମାନଙ୍କୁ ବିବାହ ପାଇଁ କଳିଙ୍ଗ ଯୁବରାଜ ନିଜ ଯୋଗ୍ୟତାର ମାପକାଠି ଭାବେ ଐଶ୍ୱର୍ଯ୍ୟ ଓ ପରାକ୍ରମକୁ ଗୁରୁତ୍ୱ ଦେଇଛି। ଐଶ୍ୱର୍ଯ୍ୟ ନୁହେଁ ପରନ୍ତୁ ହୃଦୟର ମମତା ହିଁ ଶ୍ରେୟ ବୋଲି ତିନି ରାଜକୁମାରୀ ନିଜ ନିଜର ମତ ପ୍ରକାଶ କରିଛନ୍ତି। କାରଣ, "ମନର ଆସକ୍ତି କ୍ଷଣସ୍ଥାୟୀ କିନ୍ତୁ ମମତା ଚିରନ୍ତନୀ।" ଦ୍ୱିତୀୟ ପର୍ବରେ ଧନଧାନ୍ୟ ପୂରିତ ଅବନ୍ତୀ ନଗରୀରେ ଭିକ୍ଷୁକ ଦର୍ଶନ ସ୍ୱପ୍ନତୁଲ୍ୟ। ତେଣୁ ଐଶ୍ୱର୍ଯ୍ୟଶାଳିନୀ ଅବନ୍ତୀ ନଗରୀରେ ଭିକ୍ଷାବୃତ୍ତି ଏକ ଦଣ୍ଡନୀୟ ଅପରାଧ। ରାଷ୍ଟ୍ରନୀତିକୁ ବିରୁଦ୍ଧାଚରଣ କରି ଜଣେ ସୌମ୍ୟ ସୁଗଠିତ ଭିକ୍ଷୁକ ମହାରାଜାଙ୍କ ଆଗରେ ଯେତେବେଳେ ନିଜ ମନୋଭାବକୁ ପ୍ରକାଶ କରିଛି ସେତେବେଳେ ସେଇ ଅକ୍ଷମଣୀୟ ଅପରାଧ ପାଇଁ ସେ ଭୋଗିଛି ଆଠମାସ ନିର୍ଜନ କାରାଦଣ୍ଡ। ମାତ୍ର ଯୁବକ ଭିକ୍ଷାବୃତ୍ତିକୁ 'ନରକଠାରୁ ଅଧିକ ଘୃଣା' କରୁଥିବା ଏବଂ ପରିସ୍ଥିତିରେ ପଡି ଏପରି ବୃତ୍ତିକୁ ଆପଣେଇ ନେବା କଥା ଜାଣି ଅବନ୍ତୀର ମହାରାଜ ତାର ଗୋଟିଏ ଅଭିଳାଷ ପୂରଣ କରିବା ପାଇଁ ପ୍ରସ୍ତୁତ ହୋଇଛନ୍ତି। ଅଭିଳାଷ ପୂରଣ ପାଇଁ ମହାରାଜାଙ୍କଠାରୁ ନିର୍ଭରଶୀଳ ପ୍ରତିଶ୍ରୁତି ପାଇବା ପରେ ଯୁବକ ଜଣକ କହିଛି, "ମୁଁ ପ୍ରତିଦିନ ସନ୍ଧ୍ୟାରେ ଥରେ ମାତ୍ର କାରାଗାରରୁ ବାହାରକୁ ଆସି ମୋର ବଂଶୀଟି ଯେପରି ବଜାଇ ପାରିବି, ସେଥିପାଇଁ ଅନୁମତି ଚାହେଁ।" (ପୃ.୪୪)

ତୃତୀୟ ପର୍ବରେ ପ୍ରତି ସନ୍ଧ୍ୟାରେ ଭିକ୍ଷାର୍ଥୀ ଯୁବକର ବଂଶୀସ୍ୱନ ରାଜପ୍ରାସାଦରେ ଉପସ୍ଥିତ ସମସ୍ତଙ୍କ ମନପ୍ରାଣରେ ଭରିଦିଏ ବିଦ୍ୟୁତର ଶିହରଣ। ପ୍ରତିଟି ମନପ୍ରାଣ ଉଚ୍ଚାଟିତ ହୋଇଉଠେ ବଂଶୀର ମୂର୍ଚ୍ଛନାରେ। ଚତୁର୍ଥ ପର୍ବରେ ତିନି ରାଜକୁମାରୀ ସେଇ ମର୍ମାହିତ



Source: Author, Digitized by PPRACHIN, SOA

ବଂଶୀସ୍ୱନରେ ବିମୋହିତ ହୋଇ ଜଣକ ପରେ ଜଣେ ଯୁବକକୁ ପ୍ରଶ୍ନ କରିଛନ୍ତି ସେଇ ମୁଗ୍ଧ ମଧୁର ମୁରଲୀ ସ୍ୱନର ଅନ୍ତରାଳରେ ଥିବା ବଂଶୀବାଦକର ଅଭିପ୍ରାୟ । ପ୍ରଥମ ରାଜକନ୍ୟା କଳିଙ୍ଗ ରାଜକୁମାରଙ୍କ ସୌନ୍ଦର୍ଯ୍ୟ, ଦ୍ୱିତୀୟ ରାଜଜେମା ଐଶ୍ୱର୍ଯ୍ୟ ଏବଂ ତୃତୀୟ ରାଜକନ୍ୟା କଳିଙ୍ଗ ରାଜକୁମାରଙ୍କ ହୃଦୟ ଓ ବୁଦ୍ଧିମତା ସମ୍ପର୍କରେ ନିଜ ନିଜର ମନଗହୀରର ତଳେ କଳିଙ୍ଗ ଯୁବରାଜଙ୍କ ପ୍ରତି ଥିବା ଉତ୍ସୁକତାପୂର୍ଣ୍ଣ ପ୍ରଶ୍ନ ପଚାରିଛନ୍ତି ଏବଂ ସ୍ୱୟଂବର ସଭାକୁ ତାଙ୍କର ଉପସ୍ଥିତିକୁ କାମନା କରିଛନ୍ତି ।

ପଞ୍ଚମ ପରିଚ୍ଛେଦରେ ସନ୍ଧ୍ୟା ଉପଗତ ହେବାମାତ୍ରେ ତିନି ରାଜକୁମାରୀ ଭିନ୍ନ ଭିନ୍ନ ସମୟରେ ସେଇ କାରାଗାର ନିକଟରେ ଉପସ୍ଥିତ ହୁଅନ୍ତି ବନ୍ଦୀ ଭିକ୍ଷୁକର ଦର୍ଶନ ପାଇବା ପାଇଁ । ତେବେ ସାନ ରାଜକୁମାରୀ ପ୍ରତି ସନ୍ଧ୍ୟାରେ କାରାଗାର ସଂଲଗ୍ନ କ୍ଷୁଦ୍ର ଛିଦ୍ର ମଧଦେଇ ବନ୍ଦୀପାଇଁ ଅତି ଯତ୍ନରେ ରଖିଦିଏ ବିବିଧ ସୁସ୍ୱାଦୁ ଫଳ ।

ଷଷ୍ଠ ପର୍ବରେ ଆଠମାସ ବନ୍ଦୀଶାଳରେ ରହି ତିନି ରାଜକୁମାରୀଙ୍କ ସହିତ ଭାବଗତ ବନ୍ଧନରେ ବାନ୍ଧି ହୋଇଥିବା ଭିକ୍ଷୁ ଯୁବକ ଆଜି ମୁକ୍ତି ପାଇବାକୁ ଯାଉଛି । ଆଜି ମଧ ଅବନ୍ତୀ ନଗରୀରେ ପ୍ରସ୍ତୁତି ଚାଲିଛି ତିନି ରାଜକୁମାରୀଙ୍କ ସ୍ୱୟଂବର ଉତ୍ସବ । ଆଜି କିନ୍ତୁ ବନ୍ଦୀର ବଂଶୀରୁ ନିର୍ଗତ ହେଉନାହିଁ ମଧୁର ନିନାଦିତ ସ୍ୱନ । ଭିକ୍ଷୁ ନିଜର ମର୍ମବେଦନା ବଡ଼ ରାଜକୁମାରୀଙ୍କୁ ଜଣାଇବାରୁ ଅର୍ଥାତ୍ ବିବାହ ପ୍ରସ୍ତାବ ଦେଲାମାତ୍ରେ ରାଜକୁମାରୀ ଭିକ୍ଷୁକର ଆସ୍ପର୍ଦ୍ଧାରେ କ୍ରୋଧାନ୍ୱିତ ହୋଇଛି । ଅନୁରୂପ ଭାବରେ ମଧମା ରାଜକୁମାରୀ କ୍ରୋଧ ପ୍ରକାଶ କରିଛି ।

ଏହି ଦୁଇ ରାଜକନ୍ୟା ନିଜର ପତି ଭାବେ କଳିଙ୍ଗର ରାଜକୁମାରଙ୍କୁ ହୃଦୟରେ ସ୍ଥାନ ଦେଇଛନ୍ତି । କାରଣ ସେମାନେ ଜାଣିଛନ୍ତି କଳିଙ୍ଗ ରାଜ୍ୟ ଯେପରି ଧନ ଐଶ୍ୱର୍ଯ୍ୟରେ ମହିମାମଣ୍ଡିତ, ସେହିପରି ରାଜକୁମାର ଅପରୂପ ସୌନ୍ଦର୍ଯ୍ୟର ଅଧିକାରୀ । ଅପର ପକ୍ଷରେ ସାନ ରାଜକୁମାରୀ ଭିକ୍ଷୁକର ଅନ୍ତର୍ବେଦନାକୁ ସମ୍ମାନ ଜଣାଇଛି । ତା ନିକଟରେ ପ୍ରେମର ପ୍ରତିସ୍ପର୍ଦ୍ଧି ରୂପଧନ ଏବଂ ସ୍ୱ-ସୁଖ ନୁହେଁ, ପ୍ରେମ ନିକଟରେ ସମସ୍ତ ବାହ୍ୟ ପଦାର୍ଥ ତୁଚ୍ଛ, ପ୍ରେମ ହିଁ ସାରସ୍ୱତ ଓ ଚିରନ୍ତନ ।

ସପ୍ତମ ପରିଚ୍ଛେଦରେ ରାଜକୁମାରୀମାନଙ୍କୁ ଭିକ୍ଷୁବନ୍ଦୀ ବିବାହ କରିବାର ଦୁର୍ବାର ଅଭିଳାଷ ଜାଣି ରାଜା ତାକୁ ଶୂଳୀ ଦଣ୍ଡରେ ଦଣ୍ଡିତ କରିଛନ୍ତି । ତେବେ ସାନଜେମାର ନିର୍ଦ୍ଦେଶରେ ଜଣେ ପରିଚାରିକା ଗୋପନରେ ବନ୍ଦୀକୁ ରାଜ୍ୟ ବାହାରେ ଛାଡ଼ି ଦେଇଛି । ବନ୍ଦୀ ପ୍ରତି ସୃଷ୍ଟି ହୋଇଥିବା ପ୍ରେମର ଫଳଗୁଳୁ ବାସ୍ତବାୟିତ କରିବାରେ ଅକ୍ଷମତା ପ୍ରକାଶ କରିଥିଲେ ମଧ ସାନ ରାଜକୁମାରୀ କେଉଁ ଏକ ମର୍ମବେଦନାରେ ଅହରହ ସନ୍ତୁଳିତ ହେଉଥିଲା ।



Source: Author, Digitized by PPRACHIN, SOA

ଅଷ୍ଟମ ପରିଚ୍ଛେଦରେ ଅବନ୍ତୀ ନଗରୀରେ ମହାଡମ୍ବର ପାଳିତ ହେଉଥିବା ସ୍ୱୟଂବର ସଭାରେ କଳିଙ୍ଗ ରାଜକୁମାର ଉପସ୍ଥିତ । ଛଦ୍ମବେଶରେ ଦୀର୍ଘ ଆଠମାସ ଅବନ୍ତୀର କାରାଗାରରେ ବନ୍ଦୀ ଥିଲେ ମଧ୍ୟ ରାଜକୁମାରଙ୍କୁ କେହି ଚିହ୍ନି ପାରିନାହାନ୍ତି । ଏହି ଅବସରରେ ଅବନ୍ତୀର ସାନ ରାଜକୁମାରୀଙ୍କୁ ସେ ରାଜରାଣୀ କରିବା ପାଇଁ ଇଚ୍ଛା ପୋଷଣ କରିଛନ୍ତି । ଯଦିଓ କଳିଙ୍ଗ ଧନ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ତଥାପି ରାଜ୍ୟରେ ଥିବା ଗରିବ ପ୍ରଜାର ସେ ପ୍ରତିନିଧି । ସେଥିପାଇଁ ଯେଉଁ ରାଜଜେମା ଧନ ଐଶ୍ୱର୍ଯ୍ୟ ବଦଳରେ ମଣିଷର ପ୍ରେମମୟ ହୃଦୟର ଭାଷାକୁ ବୁଝିପାରିଛି ସେ ହିଁ କେବଳ କଳିଙ୍ଗର ରାଜରାଣୀ ହେବାର ଯୋଗ୍ୟ ବୋଲି କଳିଙ୍ଗର ରାଜକୁମାର ଅବନ୍ତୀ ମହାରାଜାଙ୍କୁ ଜଣାଇଛନ୍ତି ।

'ରାଜକନ୍ୟା' ସଙ୍କଳନସ୍ଥିତ ସମସ୍ତ ଗଳ୍ପଗୁଡ଼ିକ ଯଦିଓ ଲୋକକାହାଣୀ ଢ଼ାଞ୍ଚାରେ ରଚିତ କିନ୍ତୁ ଲୋକକାହାଣୀ ପର୍ଯ୍ୟାୟଭୁକ୍ତ ନୁହନ୍ତି । ତେଣୁ ସେଇ କାହାଣୀଗୁଡ଼ିକର ଗଠନ ପଦ୍ଧତି ଆଧୁନିକ କ୍ଷୁଦ୍ରଗଳ୍ପର ନିୟମ ପର୍ଯ୍ୟାୟଭୁକ୍ତ । ଆକସ୍ମିକତା, ମାନସିକ ଦ୍ୱନ୍ଦ୍ୱ ଏବଂ ମନରେ ତୀବ୍ର ଅବସୋସ ରଖି 'ରାଜକନ୍ୟା'ର ପ୍ରତିଟି ଗଳ୍ପର ପରିସମାପ୍ତି ଘଟିଛି । ଏହି ସବୁ କାହାଣୀର ଚରିତ୍ର ଓ ଚାରିତ୍ରିକ ମନୋବିଶ୍ଳେଷଣ ମଧ୍ୟଯୁଗୀୟ କାବ୍ୟ ଭାବନା ଉପରେ ପର୍ଯ୍ୟବସିତ । ଚରିତ୍ରଗୁଡ଼ିକ ଉଚ୍ଚବଂଶଜ । ସମସ୍ତ କାହାଣୀର ମୂଳକେନ୍ଦ୍ରରେ ରହିଛି ରାଜକୁମାରୀର ବିବାହଜନିତ ସମସ୍ୟା ଓ ସମାଧାନର ନିଗୂଢ଼ ତତ୍ତ୍ୱ । ପ୍ରତିଟି ଗଳ୍ପରେ ରାଜକୁମାରୀ ବିବାହ ଉପଯୋଗୀ ହେବାମାତ୍ରେ ରାଜାରାଣୀଙ୍କ ଚିନ୍ତା ରହିଛି ଉପଯୁକ୍ତ ପାତ୍ର ସନ୍ଧାନରେ । ରାଜଜେମାଙ୍କୁ ବିବାହ ପାଇଁ ରାଜକୁମାରଙ୍କ ଅଭାବ ନାହିଁ କିନ୍ତୁ ରହିଛି ବିବାହ ସମ୍ବନ୍ଧୀୟ ସର୍ତ୍ତ । ଯେଉଁ ସର୍ତ୍ତ ଭିତରେ ରହିଛି ବୌଦ୍ଧିକ କସରତ । ଏହି ବୌଦ୍ଧିକ କସରତରେ କେତେବେଳେ ରାଜଜେମା ନିଜେ ଛନ୍ଦି ହୋଇ ବୈବାହିକ ନିଷ୍ପତ୍ତିରେ ଦ୍ୱନ୍ଦ୍ୱ ସଂଘାତ ସୃଷ୍ଟି ହୋଇଛି ତ କେତେବେଳେ ଭାବପ୍ରବଣତାବଶତଃ ନିଜ ମନଗହନ ତଳେ ସ୍ୱତଃସ୍ଫୂର୍ତ୍ତ ଭାବେ ରାଜକୁମାର ପ୍ରତି ନିଜର ଦୁର୍ବଳତା ପ୍ରକଟ କରିଛି ଅଜ୍ଞାତସାରରେ । ତେବେ ଯେଉଁଠି ରାଜକୁମାରୀ ରଖିଥିବା ସର୍ତ୍ତଟି ପୂରଣ ହୋଇଛି ସେଠି ଗାଳ୍ପିକ ପାଠକ ପାଇଁ ଛାଡ଼ିଦେଇଛନ୍ତି ଏକାଧିକ ସର୍ତ୍ତପୂରଣ କରିଥିବା ରାଜକୁମାରମାନଙ୍କ ମଧ୍ୟରେ ଯୋଗ୍ୟପ୍ରାର୍ଥୀ ନିର୍ବାଚନ ନିମନ୍ତେ ଚିନ୍ତା କରିବାର ଅବକାଶଟିଏ । ଏହି ସବୁ ଦୃଷ୍ଟିରୁ ଚିନ୍ତାକଲେ ଆଧୁନିକ ଗଳ୍ପରେ ଥିବା ଗଠନ କଳାକୌଶଳ ଠାରୁ 'ରାଜକନ୍ୟା' ସଂକଳନସ୍ଥ ଗଳ୍ପଗୁଡ଼ିକ ଆଦୌ ଅଲଗା ନୁହେଁ । ଏଥିରେ ଥିବା ସମସ୍ୟା ଆଦୌ ସାମାଜିକ ବା ସାଧାରଣ ମଣିଷର ସମସ୍ୟା ନୁହେଁ । ଏଥିରେ ଥିବା ଦ୍ୱନ୍ଦ୍ୱ ଆଦୌ ସାମ୍ପ୍ରତିକ ସମୟରେ ବଞ୍ଚି ରହିବା ପାଇଁ ପ୍ରତିଟି ମୁହୂର୍ତ୍ତରେ ମଣିଷ ବଞ୍ଚିବାର ଦ୍ୱନ୍ଦ୍ୱ । ତେଣୁ ଏ କ୍ଷେତ୍ରରେ ମୁଖ୍ୟତଃ ଏହି ପୁସ୍ତକସ୍ଥ ଗଳ୍ପରେ ମଧ୍ୟଯୁଗୀୟ ପ୍ରତିଭାତ ହେଉଥିବା ବୁଦ୍ଧିବାଦୀ ରାଜକନ୍ୟାମାନଙ୍କର ସ୍ୱରୂପକୁ



Source: Author, Digitized by PPRACHIN, SOA

ଉଦ୍‌ଘାଟନ କରିବା ପାଇଁ ଉଦ୍ୟମ କରିଛନ୍ତି । ତେବେ ମନେହୁଏ ବର୍ତ୍ତମାନ ସମୟରେ ନାରୀ ଜାଗରଣର ଯେଉଁ ବାତାବରଣଟି ସୃଷ୍ଟି ହୋଇଛି ତା'ର ପ୍ରତୀକ ସ୍ୱରୂପ କିଛି ମାତ୍ରାରେ ସେସବୁର ଅବତାରଣା କରିବାକୁ ଚାହିଁଛନ୍ତି ଗାଳ୍ପିକ । କିନ୍ତୁ ନାରୀ ସମ୍ପର୍କରେ ଥିବା ସ୍ନେହପ୍ରେମମୟୀ ମିଥ୍‌ରୁ ସେ ବାହାରି ପାରିନାହାନ୍ତି । ଗୋଟିଏ ପଟେ ରାଜକନ୍ୟାମାନଙ୍କ ପ୍ରଜ୍ଞା ପ୍ରତିଭାକୁ ସମୁଜ୍ଜ୍ୱଳ କରିବା ପାଇଁ ଗାଳ୍ପିକଙ୍କ ମନୋଭାବ ସ୍ପଷ୍ଟ ହୋଇଥିବା ବେଳେ ଅନ୍ୟପଟେ ରାଜକୁମାରୀଙ୍କୁ ଏପରି ମାନସିକ ଦ୍ୱନ୍ଦ୍ୱରେ ଉପନୀତ କରାଇଛନ୍ତି ଯେ ସେଥିରୁ ମନେହୁଏ ଗାଳ୍ପିକ ନାରୀ ଓ ପୁରୁଷ ମଧ୍ୟରେ ବହୁକାଳରୁ ପ୍ରଚଳିତ ସଂଘାତକୁ ଉପେକ୍ଷା କରି ପୁରୁଷକୈନ୍ଦ୍ରିକ ମନୋଭାବରୁ ମୁକୁଳି ପାରିନାହାନ୍ତି ।



Source: Author, Digitized by PPRACHIN, SOA

## ‘ଓ ! କାଲକାଟା !!’: ସୁରେନ୍ଦ୍ରୀୟ ଚେତନାର ଉତ୍ତରିତ ଉପଲବ୍ଧି

‘ଅଧୁନା’ ପତ୍ରିକାର ୮ମ ବର୍ଷ, ୭ମ ସଂଖ୍ୟା, ୧୯୮୨ରେ ଗଳ୍ପ ସମ୍ପର୍କରେ ସୁରେନ୍ଦ୍ର ମହାନ୍ତି କୁହନ୍ତି, “ପ୍ଲଟ୍‌ରେ ମୁଁ ବିଶ୍ୱାସ କରେ ନାହିଁ । ପ୍ଲଟ ବା ଘଟଣା ବା ଚରିତ୍ର – ଏସବୁ ଗୋଟିଏ ମାଳାର ଗୋଟିଏ ଗୋଟିଏ କଣ୍ଢୀ । କିନ୍ତୁ ସୂତାଟିର ଦରକାର ତାକୁ ଗୁନ୍ଥିବା ପାଇଁ । ସେଇ ସୂତା ହେଉଛି ଥିମ୍ ବା ଭାବସଂପଦ । ଏ ଭାବସଂପଦ ନଥିଲେ ଗଳ୍ପ ସବୁ କାହାଣୀ ସ୍ତରରେ ହିଁ ରହିଯାଏ । ତା’ର ସ୍ୱକୀୟ ସତ୍ତା ଫୁଟେ ନାହିଁ । ଏ ଥିମ୍ ବା ଭାବସଂପଦ ହେଉଛି ଏକ Supra Artistic concept, ଯାକୁ ଠିକ୍ ବୁଝାଇ ହେବ ନାହିଁ ।” ଶୈଳ୍ପିକ ଅବଧାରଣାର ଏପରି ଏକ ସ୍ତର ରହିଛି ଯେଉଁଠି ସ୍ରଷ୍ଟା ନିଜସ୍ୱ ନୈତିକ ସତ୍ତାର ଉପଲବ୍ଧିକୁ ପ୍ଲଟ, ଘଟଣା ଓ ଚରିତ୍ରକୁ ସମନ୍ୱିତ ପୂର୍ବକ ଏକ ଅପୂର୍ବ ରୂପ ବିନ୍ୟାସ କରିବାରେ ସକ୍ଷମ ହୋଇଥାଏ । ସୁରେନ୍ଦ୍ର ମହାନ୍ତିଙ୍କ ସାମଗ୍ରିକ କୃତିକୁ ବିଚାର ବିଶ୍ଳେଷଣ କଲେ ଅନୁରୂପ ରେଖାଚିତ୍ରଟି ସ୍ୱତଃ ଅଙ୍କିତ ହୋଇଥାଏ ।

ତେରଟି ଗଳ୍ପ ଯଥା ଓ ! କାଲକାଟା !!!, କମନରୁମ, ଗୁରୁ, ଗୋଟିଏ ପ୍ରେମ ଗଳ୍ପ, କେନ୍ଦ୍ରାତୀଗ, ଦିନେ ସନ୍ଧ୍ୟାରେ, କମ୍ବଳର ତନ୍ତୁ, ପ୍ରିୟତମାସୁ, ଗୋଟିଏ ଘୋଡ଼ାର ମୃତ୍ୟୁ, କବନ୍ଧ, ଇନ୍ଦ୍ରଦ୍ୟୁମ୍ନ, ବଳୀବର୍ଦ୍ଦ ଓ ସଭ୍ୟତାର ଗ୍ରାସର ସମାବେଶରେ ‘ଓ ! କାଲକାଟା’ କଥାଗ୍ରନ୍ଥଟି (୧୯୭୩) ରଚିତ । ଗଳ୍ପ ଗ୍ରନ୍ଥର ଭୂମିକାରେ ସୁରେନ୍ଦ୍ର ମହାନ୍ତି ପ୍ରତ୍ୟେକ ଗଳ୍ପର ପ୍ରଚ୍ଛଦ ପଟରେ ଥିବା ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ତଥା ସମାଜ-ମାନସିକତା ଓ ପରିବର୍ତ୍ତିତ ସାମାଜିକ, ରାଜନୈତିକ, ସାଂସ୍କୃତିକ ପ୍ରେକ୍ଷାପଟରେ ଆସିଥିବା ବ୍ୟକ୍ତିର ମାନସିକ ସଂକଟକୁ ପ୍ରକାଶ କରିଛନ୍ତି । “ଭଗ୍ନ ସ୍ୱପ୍ନ ଯୌବନର ବିଭ୍ରାନ୍ତି, ବିସ୍ଫୋରଣ ଓ ବିକୃତିର ଏକ ସାଂକେତିକ ଇତିବୃତ୍ତ ... ଆଜିର ନିଃଶ୍ୱାସରୁଦ୍ଧ । ଏଷ୍ଟାବ୍ଲିସମେଣ୍ଟ ବିରୁଦ୍ଧରେ ଏକ ଅନ୍ଧ ବିସ୍ଫୋରଣ ... ଏକ ବିକ୍ଷୁବ୍ଧ ଉତ୍ପୀଡକ ବର୍ତ୍ତମାନଠାରୁ ପଳାୟନ ... ଜୀବନର ଶତ ମୋହଭଙ୍ଗର ଚେତାବନୀ ... ନିଷିଦ୍ଧ ଯୌନାକାଂକ୍ଷାର ସଂସ୍କାର ଭୀରୁ ପରିପ୍ରକାଶ ... କିନ୍ତୁ ଯୌନତା ମଧ୍ୟରେ କକ୍ଷଚ୍ୟୁତି ଓ ନିଃସଙ୍ଗତାର କାରାଗାର ମଧ୍ୟରୁ ଯେ ମୁକ୍ତି ନାହିଁ ... ସାମ୍ପ୍ରତିକ ରାଜନୀତିର ଅନ୍ଧ ଆକ୍ରୋଶ ଓ ତାହାର ମୁକାବିଲା କରିବାରେ ବୁଦ୍ଧିଜୀବୀ ଗୋଷ୍ଠୀର ବିଫଳତାର ମର୍ମନ୍ତୁଦ କାହାଣୀ ... କାଳର ଅତ୍ୟାଚାର ନିର୍ବିବାଦରେ ସହ୍ୟ



Source: Author, Digitized by PPRACHIN, SOA

କରିବାର ପ୍ରତିବାଦହୀନ ପ୍ରଶାନ୍ତି ... ସଭ୍ୟତାର ବାହିରେ ନିଷ୍ପାପ ଆଦିମ ଜୀବନ, ଆଜି ଧର୍ମ, ରାଜନୀତି ଓ ଶାସନତନ୍ତ୍ର ଦ୍ୱାରା ଯେପରି ଧର୍ଷିତ୍ ଓ କୁଣ୍ଠିତ ... ପର୍ଯ୍ୟୁଷିତ, ବିକୃତ ଶତାବ୍ଦୀର ଧ୍ୱଂସ ମଧ୍ୟରେ ନୂତନ ସୃଷ୍ଟିର ଅଶାବାଦୀ ଚିତ୍ର ... " – ସ୍ୱଲିଖିତ ଗଳ୍ପ ସଂପର୍କରେ ତାଙ୍କର ପ୍ରସାରିତ ଦୃଷ୍ଟିବଳୟ ବେଶ୍ ଉପଲବ୍ଧି କରାଯାଇପାରେ ।

ରାଜନୈତିକ ଅଭିଜ୍ଞତା ହେତୁ ଲୋକ ଚରିତ୍ରର ଗଭୀର ଅଧ୍ୟୟନ ଓ ବିଶ୍ଳେଷଣ ତାଙ୍କ ଗଳ୍ପକୁ କରିଛି ବେଶ୍ ଜୀବନବାଦୀ । "ମୂଲ୍ୟ ଓ ମୂଲ୍ୟବୋଧର ତୀବ୍ର ସଂଘର୍ଷ ମଧ୍ୟରେ ଜୀବନକୁ ଶାଶ୍ୱତ କରି ଗଢ଼ିବା ତାଙ୍କ ଶିଳ୍ପୀ ମନର ମୁଖ୍ୟ ସ୍ୱର । ସୁରେନ୍ଦ୍ରଙ୍କ ରାଜନୀତିକ ଘଟଣା-ବହୁଳ ଜୀବନରେ ପ୍ରତ୍ୟକ୍ଷ, ବାସ୍ତବ ଅନୁଭୂତି ଓ ଲୋକ ଚରିତ୍ର ଅଧ୍ୟୟନରେ ପାରିଦର୍ଶିତା ତାଙ୍କ ସାହିତ୍ୟରେ ସ୍ପଷ୍ଟ ରୂପ ଲାଭ କରିଛି । ଜୀବନ ପ୍ରବାହ ଓ ଘଟଣା ତରଙ୍ଗରୁ ବିଚିତ୍ର ରସ ଆସ୍ୱାଦନରେ ସୁରେନ୍ଦ୍ରଙ୍କ କଳାସୌଧ ନିର୍ମିତ ।" (ଲେଙ୍କା, ପୃ ୧୪-୧୫)

'ଓଃ! କାଲକାଟା !!!' ଗଳ୍ପର ପ୍ରାରମ୍ଭରେ ସ୍ଥିତିବାଦୀ ଦାର୍ଶନିକ ସାର୍ତ୍ରେଙ୍କ Troubled sleepର ଉଦ୍ଧୃତି ଗାଳ୍ପିକଙ୍କ ଚିନ୍ତନ ପ୍ରକ୍ରିୟାକୁ ପ୍ରଭାବିତ କରିଛି । ଯୁଦ୍ଧୋତ୍ତର ପୃଥିବୀରେ ମଣିଷର ଛିନ୍ନମୂଳ ମାନସିକତା ତଥା ଯନ୍ତ୍ରଣା ଜର୍ଜରିତ ପୃଥିବୀରେ ମଣିଷ ହୃଦୟରେ ସ୍ଥାନ ପାଇଥିବା ଯୁଗାବ୍ଦୀ ଏଷ୍ଟାବ୍ଲିସ୍‌ମେଣ୍ଟର ଭାବବାଦୀ ଆଦର୍ଶବୋଧର ଉତ୍ତାଣର ପକ୍ଷଚ୍ଛେଦନ ପାଇଁ ଗାଳ୍ପିକଙ୍କ ବିସ୍ଫୋରଣ ମନ୍ତବ୍ୟ ଗଳ୍ପଟିକୁ ଭିନ୍ନ ପର୍ଯ୍ୟାୟଭୁକ୍ତ କରିଛି । ବହୁଦିନରୁ ହଜିଯାଇଥିବା ଜୀବନର ଛନ୍ଦକୁ ପୁନଶ୍ଚ ସକ୍ରିୟ କରିବା ପାଇଁ ହେଲେ ସେକ୍‌ସ ଏବଂ ବିପ୍ଳବର ଆବଶ୍ୟକତା ରହିଛି ବୋଲି ଗଳ୍ପର କିଛି ଚରିତ୍ର ଅନୁଭବ କରିଛନ୍ତି । କାରଣ ମୁକ୍ତ ଜୀବନର ପରିପନ୍ଥୀ ହେଉଛନ୍ତି ଶ୍ରେଣୀଶତ୍ରୁ ବା ପ୍ରତିକ୍ରିୟାଶୀଳ ବ୍ୟକ୍ତି ବିଶେଷମାନେ । ଗୋଟିଏ ପଟେ ସୁକାନ୍ତ, ଲଚକ, ଗୁରୁ ଏବଂ ଅନ୍ୟପଟେ ଭବତୋଷ, ଏହି ଦୁଇଟି ଶ୍ରେଣୀରେ ପ୍ରତିନିଧି କରିଛନ୍ତି । ମହାବିଦ୍ୟାଳୟର ପରିସରରେ ଗାଳ୍ପିକ ସଂଘର୍ଷର ସୂତ୍ରପାତ କରିବା ଅବସରରେ ଯୁବଗୋଷ୍ଠୀଙ୍କ ଆଦର୍ଶ ବ୍ୟକ୍ତି । ଘଟଣା ଦେଶ ସମ୍ପର୍କରେ ଏକ ତୁଳନାତ୍ମକ ପରିବେଶ ସୃଷ୍ଟି କରିବା ପାଇଁ ଯତ୍ନଶୀଳ । ସୁକାନ୍ତ, ଗୁରୁ, ଶୁଭେନ୍ଦୁ (ଲଚକ)ମାନଙ୍କ ପାଇଁ ଆଦର୍ଶ ହେଉଛି ଚେଗୁଏଭରା ଏବଂ ଭିଏତନାମର ବିପ୍ଳବ । ଅନ୍ୟପଟେ ଏଷ୍ଟାବ୍ଲିସମେଣ୍ଟକୁ ସମର୍ଥନ କରୁଥିବା ଭବତୋଷ ଏବଂ ତାର ଅନ୍ୟାନ୍ୟ ସାଥୀ । ଦେଶଗୌରବ କଲେଜ ହଲ୍‌ରେ ସାଂସ୍କୃତିକ ସମାରୋହ ଅବସରେ ମନ୍ତ୍ରୀଙ୍କ ଭାଷଣର ବିକୃତି କରଣ, ଏବଂ ଯୋଜନାବଦ୍ଧଭାବେ ଦୁଇ ଛାତ୍ରଗୋଷ୍ଠୀଙ୍କ ମଧ୍ୟରେ ସୃଷ୍ଟି ହୋଇଛି ସଂଘର୍ଷ । ଏହି ସଂଘର୍ଷରେ ଲଚକକୁ ହତ୍ୟା କରାଯାଇଛି । ପ୍ରତିକ୍ରିୟାଶୀଳ ଏଷ୍ଟାବିସ୍ଲମେଣ୍ଟର ମଜବୁତ୍ ଚଟାଣକୁ ଭାଙ୍ଗିବା ପାଇଁ ସୃଷ୍ଟି ହୋଇଥିବା ପ୍ରତିରୋଧଶକ୍ତିର ରୂପ ପରିଗ୍ରହକୁ ପ୍ରତିଷ୍ଠା କରିବା ପାଇଁ ଯଥାଯଥ ଉଦ୍ୟମ କରିଛନ୍ତି ଗାଳ୍ପିକ, କିନ୍ତୁ, ବିପ୍ଳବ



Source: Author, Digitized by PPRACHIN, SOA

ସହିତ ଯୌନ କ୍ଷୁଧାର ସଂଶ୍ଳିଷ୍ଟ । ସମନ୍ୱୟ ସଂପର୍କିତ ନକରାତ୍ମକ ମନୋଭାବ ବିପ୍ଳବ ସହିତ ସଂଯୁକ୍ତ ହେଲେ ବିପ୍ଳବର ସ୍ୱରୂପ ଅସ୍ପଷ୍ଟ ଛାୟଛନ୍ନ ହୋଇଥାଏ : ମାର୍ଗଦର୍ଶୀ ହୋଇନଥାଏ । ସମାଜରେ ସୁବିଧାବାଦୀ ଲୁଣ୍ଠନମାନଙ୍କର ବିଲୁପ୍ତି ହିଁ ବିପ୍ଳବୀର ମୁଖ୍ୟ ଲକ୍ଷ୍ୟ ।

ସଂକଳନସ୍ଥ ଦ୍ୱିତୀୟ ଗଳ୍ପ 'କମନରୁମ' ଏକ ଦିଶାହୀନ ରାଜନୀତିର ଚିତ୍ରପଟ । କଫିହାଉସରେ ଶିକ୍ଷିତ ଯୁବ ଛାତ୍ରନେତା ସମାବେଶିତ ହୋଇ ଅନ୍ତର୍ମୁଖୀ ଚିନ୍ତନରେ ବ୍ୟସ୍ତ । ପ୍ରଣମ, ଓଁକାର ନାଥ ପ୍ରଭୃତି ଯୁବଛାତ୍ରନେତାମାନେ ବିପ୍ଳବର ସଂଖ୍ୟା, ସ୍ୱରୂପକୁ ନେଇ ଦୁଇଭାଗରେ ବିଭକ୍ତ ହୋଇଛନ୍ତି । ଓଁକାରନାଥ ଦୃଷ୍ଟିରେ ଛିନ୍ନମୂଳ ବିପ୍ଳବର ଉତ୍ସ ଏବଂ ଅଭିସନ୍ଧିତ୍ସା ହେଉଛି "ଆମେ ସବୁ ଊନବିଂଶ ଶତାବ୍ଦୀର ପ୍ରଲିଟାରୀଏଟ ସର୍ବହରା ପରି । ଊନବିଂଶ ଶତାବ୍ଦୀର ପ୍ରଲିଟାରୀଏଟ୍ ଯେଉଁ ବିପ୍ଳବ ଆଣିଥିଲା ; ତାହାର ପ୍ରତିକ୍ରିୟା ଓ ପ୍ରତି ବିପ୍ଳବ ବିରୋଧରେ ଆମେ ଏ ଶତାବ୍ଦୀର ନୂତନ ଲଢୁଆ ବାହିନୀ । ସେମାନେ ଥିଲେ ସର୍ବହରା, ଆମେ ସବୁ କିନ୍ତୁ ଆଜି ସ୍ୱପ୍ନହରା ।" (ପୃ ୨୩-୨୪) ଛାତ୍ରାବସ୍ଥାରୁ ଏହାର ଏକ ସ୍ଥାୟୀ ସମାଧାନ କରିବା ପାଇଁ ଓଁକାର ଇଚ୍ଛା ପ୍ରକାଶ କରିଛି । ଅପର ପକ୍ଷରେ କନେଷ୍ଟବଲଙ୍କୁ ହତ୍ୟା, ଭାଇସ୍ ଚାନସେଲର ଓ ଅଧକ୍ଷଙ୍କୁ ଘେରାଉ ପ୍ରଭୃତିକୁ ବିପ୍ଳବ ବୋଲି ମନେ କରିନାହିଁ ପ୍ରଣମ । ତା ଦୃଷ୍ଟିରେ "ଏ କିନ୍ତୁ ରିଭଲ୍ୟୁସନ ନୁହେଁ । ଆନାର୍କୀ ନୁହେଁ । ନିଛକ ଟେରରିଜିମ୍ । ... ଏଥିରେ ମାର୍ଜିତ ଚିନ୍ତାର ସଂସ୍କୃତି ନାହିଁ । ଅଛି ଅପମାର୍ଜିତ ମନର ଉଚ୍ଛୃଙ୍ଖଳତା ।" (ପୃ.୨୪) କିନ୍ତୁ ଓଁକାର ପକ୍ଷରେ ଏହା ହେଉଛି ଫିଲିଷ୍ଟିନିଜିମ୍ ।' ଏହି ଗଳ୍ପରେ ମଧ ଅନୁରୂପ ବିପ୍ଳବ ସହିତ ଯୌନ ବିକାରଗ୍ରସ୍ତ ଯୁବକମାନଙ୍କର ଯୁବତୀମାନଙ୍କ ପ୍ରତି ଅଶ୍ଳୀଳ ମନ୍ତବ୍ୟମାନ ଦେଖାଯାଏ । ମନୋଜ ଏବଂ ମୃଦୁଳା ମଧ୍ୟରେ କଥୋପକଥନରେ ଗାଳ୍ପିକ ସମାଜରେ ଥିବା ଅଶ୍ଳୀଳତା ନେଇ ଆଲୋଚନା କରିଛନ୍ତି ଏବଂ ପରିସମାପ୍ତି ହୋଇଛି କମନ୍‌ରୁମ୍‌କୁ ନେଇ ଇସ୍ୟୁ । ଯାହାକୁ ନେଇ ଆନ୍ଦୋଳନର ସୂତ୍ରପାତ ଘଟିଛି । କମନ ରୁମ ପାଇଁ ଦାବୀ ଗୋଟିଏ ସଂକେତ ଏବଂ ଏହାର ପ୍ରଚ୍ଛଦପଟରେ ରହିଛି ଶିକ୍ଷାର ଅବ୍ୟବସ୍ଥିତ ପାଠ୍ୟକ୍ରମ, ଶିକ୍ଷାଦାନର ଧାରା ଇତ୍ୟାଦି । ତେଣୁ ରାଜନେତା ଓ ମନ୍ତ୍ରୀମାନଙ୍କ ଶଠତା, ହିପୋକ୍ରାସୀ ଏବଂ ଶାସନ ଚକ୍ରକୁ ସୁରକ୍ଷା ଦେଉଥିବା ପୋଲିସମାନଙ୍କ ବିରୁଦ୍ଧରେ ବିଶ୍ୱବିଦ୍ୟାଳୟରେ ସଂଘଟିତ ହୋଇଛି ବିପ୍ଳବ ।

'ଗୁରୁ' ଗଳ୍ପଟି ପାଶ୍ଚାତ୍ୟ ହିପ୍ପୀ ଆଦର୍ଶବାଦର ଏକ ଜୀବନ୍ତ ଆଲେଖ୍ୟ । ପରଂପରାକୁ ବିଶ୍ୱାସର ଅତଳ ଗହ୍ୱରକୁ ଠେଲିଦେବା ସହିତ ବାସ୍ତବ ଜୀବନରେ ଥିବା ଯନ୍ତ୍ରଣା ଜର୍ଜରିତ ଜୀବନବୋଧଠାରୁ ନିଜକୁ ନିରାପଦ ଦୂରତାରେ ରଖି ଏକ ଦିଶାହୀନ, ଉଚ୍ଛୃଙ୍ଖଳ ଜୀବନ ପାଇଁ ଆତୁରତା ପ୍ରକାଶ ପାଇଥିବା ନବ୍ୟ ଯୁବପିଢ଼ିର କାହାଣୀ ଏକ ଗଳ୍ପର ସାରମର୍ମ । ସୁନନ୍ଦ ଯଦିଓ ହିପ୍‌ପୀ ସଂସ୍କୃତିର ବିରୋଧାଭାସ । ନିଜ ଗୁରୁଙ୍କ ସହିତ ଅପେକ୍ଷା କରିଛି ପାଶ୍ଚାତ୍ୟ ବନ୍ଧୁମାନଙ୍କୁ ଯେଉଁମାନେ ଦେଶ, ଜାତି, ନାମଠାରୁ ଉର୍ଦ୍ଧ୍ୱରେ । ଜନ୍, ଜୀନ ଓ



Source: Author, Digitized by PPRACHIN, SOA

ଜେନୀ ତିନୋଟି ହିପ୍‌ପୀ ଚରିତ୍ରର ଆଦର୍ଶ ଓ ଜାତିମୁଖ୍ୟ ସଂପର୍କରେ ଗାଳ୍ପିକ କୁହନ୍ତି, "ପାଶ୍ଚାତ୍ୟର ସବୁ ପଣ୍ୟ ସମୃଦ୍ଧ ଔଜ୍ଜ୍ୱଲ୍ୟ ଓ ବିଜ୍ଞାପନୀ ଝକଚକ୍ୟ ପ୍ରତ୍ୟାଖ୍ୟାନ କରି ପ୍ରାଚ୍ୟର ଆବର୍ଜନା ସ୍ତୁପ ମଧ୍ୟରେ ସେମାନେ ଯେପରି ନୂଆ ଭାବରେ କରୁଥିଲେ ଜୀବନର ଆବିଷ୍କାର । ଯୁକ୍ତିକୁ ଉତ୍ପାଟିତ କରି, ସେମାନେ ସନ୍ଧାନ କରୁଥିଲେ କରୁଥିଲେ ବୌଦ୍ଧିକତାରୁ ମୁକ୍ତି । ହେତୁବାଦ ଓ ପ୍ରଯୁକ୍ତି ବିଦ୍ୟାର ନିତ୍ୟ ନୂତନ ବିସ୍ମୟକୁ ଅସ୍ୱୀକାର କରି, ସେମାନଙ୍କ ଉତ୍ପୀଡକ ପ୍ରବ୍ରଜ୍ୟା ଥିଲା ; ବିଚାରବର୍ଜିତ ବିଶ୍ୱାସ ମଧ୍ୟରେ ଆନନ୍ଦର ସନ୍ଧାନ ପାଇଁ ।" (ପୃ.୩୯) ନୋଳିଆ ଝିଅର ଅନାବୃତ୍ତ ବକ୍ଷୋଜ ଓ ଜେନୀର ବଟମ' ଖୋଲା ଟି ଶାର୍ଟ ମଧ୍ୟରେ ଯେଉଁ ଉଲଙ୍ଘନ ପ୍ରସଙ୍ଗଟି ଉତ୍‌ଥାପିତ, ତାହା ଗାଳ୍ପିକଙ୍କ ଦୃଷ୍ଟିରେ ଭିନ୍ନ । ପାଶ୍ଚାତ୍ୟର ଉଲଙ୍ଗନତାରେ ରହିଛି ସେମାନଙ୍କ 'ସମୃଦ୍ଧି ଜର୍ଜରିତ' 'ସତ୍ତା' କିନ୍ତୁ ପାଚ୍ୟ ରହିଛି 'ବଞ୍ଚିବାର ଉତ୍ପୀଡକ ସତ୍ୟ' । ସୁନନ୍ଦ ଏହି ଦୁଇଧାରାର ମଧ୍ୟବର୍ତ୍ତୀ ସ୍ଥଳରେ ଦଣ୍ଡାୟମାନ । ତେଣୁ ମୁକ୍ତ ଯୌନ ସୁଖ ଲାଭ ଏବଂ ବୈଦେଶିକ ଅର୍ଥ ସଂଗ୍ରହ କରି ବିଳାସପୂର୍ଣ୍ଣ ଜୀବନର ଅଭୀପ୍‌ସା ହୋଇଛି ତାର ମୁଖ୍ୟ ଧ୍ୟେୟ । ହିପ୍‌ପୀ ସଂସ୍କୃତି ତା ପାଇଁ କେବଳ ଉପଲକ୍ଷ୍ୟ / ଆଧାର ମାତ୍ର । ତେଣୁ ସେମାନେ ତ୍ୟାଗ କରିଛନ୍ତି ଭଣ୍ଡାମୀ ଯୁକ୍ତ ଗୁରୁ ଓ ସୁନନ୍ଦଙ୍କୁ । ସେମାନଙ୍କ ପାଇଁ ଜୀବନର ଏକମାତ୍ର ଲକ୍ଷ୍ୟ ହେଉଛି ନିର୍ଜନ ନିବାସ ଏବଂ ଉଲ୍ଲସିତ ଆତ୍ମସତ୍ତାର ଉତ୍ତରିତ ଉପଲବ୍ଧି ।

ଅତୀତ ସଂଚାରୀ ମନର ଏକ ଶ୍ରଦ୍ଧାଶୀଳ ଆକୃତି ପ୍ରକାଶ ପାଇଛି 'ଗୋଟିଏ ପ୍ରେମଗଳ୍ପ'ରେ । ଫାଇନ ଆର୍ଟ ପ୍ରଦର୍ଶନରେ ଦୀର୍ଘ ଚଉଦ ବର୍ଷ ଉପରାନ୍ତେ ହଠାତ୍ ସାକ୍ଷାତକାର ଘଟେ ପୂର୍ବତନ ପ୍ରେମିକ / ପ୍ରେମିକା ସୁବ୍ରତ ଦାସ ଓ ଜୟା । ଅତୀତର ସ୍ମୃତିଚାରଣ କରି ପ୍ରଗଳ୍‌ଭ ହୋଇ ପୁନଶ୍ଚ ସଂବିତ୍ ଫେରି ଆସିବା ପରେ ପରସ୍ପରଠାରୁ ଦୂରେଇ ଯାଆନ୍ତି । ମୁଖା ଓ ହୃଦୟର ଭାଷାକୁ ଏକତ୍ର ସଂଯୋଗ କରି ପରସ୍ପରର ମନଭିତରକୁ ପଶିବା ପାଇଁ ପ୍ରଚେଷ୍ଟା ସହଜ କିନ୍ତୁ ସେଇ ପୁରୁଣା ଗୁଳାରେ ବାଟ ଚାଲିବା ପାଇଁ ପ୍ରତିବଦ୍ଧତା ଯେ ଅସମ୍ଭବ ସରୋଜ ତାହା ବୁଝିପାରିଛି । ଗାଳ୍ପିକ ଏଠାରେ ଦେହବାଦର କ୍ଷୁଧିତ ଅରଣ୍ୟକୁ ମହାଭାବମୟ ଦୈବୀ ସତ୍ତାରେ ପରିଣତ କରି ଅନନ୍ତ ସମୟର ସାମୟିକ ପ୍ରବାହ ସହିତ ଏହାର ତାଳ ସାମ୍ୟକୁ ଚିହ୍ନିତ କରିବା ପାଇଁ ପ୍ରଚେଷ୍ଟିତ । (ଲେଙ୍କା, ପୃ-୯୦)

'କେନ୍ଦ୍ରାତୀଗ' ଗଳ୍ପରେ ଲେଖକ ନିଜକୁ ସ୍ଖଳିତ ସମାଜର କେନ୍ଦ୍ର ସ୍ଥଳରେ ଅବସ୍ଥାପନ କରି ତାଙ୍କ ଚତୁର୍ପାର୍ଶ୍ୱରେ ଘୂର୍ଣ୍ଣାୟମାନ ଜନଜୀବନକୁ ଅନୁକ୍ଷଣ କରିଛନ୍ତି । ଚରିତ୍ର ପ୍ରମାଣ ପତ୍ର ପ୍ରତ୍ୟାଶୀ ଯୁବକ, ଉତ୍ପଳା, ସୁଲଭା ଦେବୀ ତଥା ଶେଠ ଶିଳ୍ପପତି ପ୍ରଭୃତି ଚରିତ୍ର ସମାଜର ଗୋଟିଏ ଗୋଟିଏ ପ୍ରତୀକ ଯେଉଁମାନଙ୍କ ମନର ସଂଗୋପନ ସ୍ଥଳୀରେ ଭରି ରହିଛି ଅଶ୍ଳୀଳତାର ମହମହ ବାସ୍ନା । ପରୋକ୍ଷରେ ଯୌନତାର ସେଇ ଅବଦମିତ ଇଚ୍ଛାକୁ ଗୋଟିଏ ଆବରଣ ମଧ୍ୟରେ ଲୁଚାଇଦେବାକୁ ଚେଷ୍ଟାକଲେ ସୁଦ୍ଧା



Source: Author, Digitized by PPRACHIN, SOA

ତାହା ଯେ ପ୍ରତ୍ୟକ୍ଷ ଭାବେ ଉନ୍ମୋଚିତ ହୋଇଯାଏ; ସେଇ ଅବବୋଧକୁ ବ୍ୟଂଜନା ମାଧ୍ୟମରେ ରୂପାୟିତ କରିଛନ୍ତି ଗାଳ୍ପିକ । ଯୌନ କ୍ଷୁଧାର ଆଭାସିତ ଚିତ୍ର ସମୂହକୁ ଗାଳ୍ପିକ ସାମାନ୍ୟ ସୂଚନା ଆଧାରରେ ପ୍ରକାଶିତ କରିଛନ୍ତି ସୁଲଭାଙ୍କ ଅଭିମାନ ଏବଂ ଚରିତ୍ର ପ୍ରମାଣପତ୍ର ପ୍ରତ୍ୟାଶୀ୍‌ ଯୁବକର ମାଗାଜିନସ୍ଥ ହିପ୍‌ପୀ ଫଟୋ ଦର୍ଶନ ମାଧ୍ୟମରେ । ଯୌନତା ହିଁ ହୋଇଛି ମାନବ ଜୀବନର ଏକ ଶକ୍ତିଶାଳୀ କେନ୍ଦ୍ର ଏବଂ ଚତୁଃପାର୍ଶ୍ୱରେ ଘୂରିବୁଲୁଥିବା ମଣିଷମାନେ କେବେହେଲେ ତା'ର ଚୁମ୍ବକୀୟ ଶକ୍ତିରୁ ବିଚ୍ୟୁତ ହୋଇପାରିବେ ନାହିଁ । ଯେଉଁମାନେ ବିଚ୍ୟୁତ ହୋଇଛନ୍ତି ବୋଲି ବଡ଼ତି ଦେଖାନ୍ତି ସେମାନେ ଏକ ଶୁଷ୍କ ଭାବାଦର୍ଶର ଆବରରେ ଢ଼ାଙ୍କି ହେବାର ଅଭିନୟ କରିଥାନ୍ତି ବୋଲି ଗାଳ୍ପିକ ସ୍ୱଷ୍ଟ କରିଦେଇଛନ୍ତି । ଡାକ୍ତରଖାନାରେ ଚିକିତ୍ସିତ ଅମିତାଭ ବାବୁଙ୍କ ମନସ୍ତତ୍ତ୍ୱକୁ କେନ୍ଦ୍ରକରି ରଚିତ ଗଳ୍ପ 'ଦିନେ ସନ୍ଧ୍ୟାରେ ।' ଗାଳ୍ପିକ ଏଥିରେ ଦୁଇଟି ପ୍ରତୀକର ବ୍ୟବହାର କରିଛନ୍ତି । ଗୋଟିଏ ହେଉଛି ପୁତିଗନ୍ଧମୟ ଶୌଚାଳୟରେ ବ୍ୟବହୃତ ସୁଗନ୍ଧିତ ବାସ୍ନା ଅର୍ଥାତ୍ ପଚମାନ ଶରୀର ମଧ୍ୟରେ ଥିବା କୁତ୍ସିତ ଯୌନ ବିକୃତି ଏବଂ ଅନ୍ୟଟି ହେଉଛି ଦକ୍ଷିଣ ଦୁଆରୀ ପବନ ଅର୍ଥାତ୍ ସ୍ନାୟବିକ ସିକ୍ରାର । ସ୍ନାୟବିକ ସିକ୍ରାର ଶରୀରରେ ଭରିଦିଏ ପୁଲକ । ମନରେ ଆଣିଦିଏ ଅପୂର୍ବ ରୋମାଞ୍ଚ । ପୁତିଗନ୍ଧମୟ ଶାରୀରିକ ଭାବନା କ୍ରମଶଃ ଏକ ଉତ୍ତରିତ ମାଧୁର୍ଯ୍ୟକୁ ସ୍ୱର୍ଶ କରିଥାଏ । ପୂର୍ବ ପ୍ରେମିକା ସୁନନ୍ଦାର ମଧୁର ସ୍ମୃତି ଉନ୍ମୋଚନ ଅବସରରେ ଚିକିତ୍ସାଧୀନ ଅମିତାଭ ମନ ମଧ୍ୟରେ ଯେଉଁ ସ୍ନାୟବିକ ଉତ୍ତେଜନା ସୃଷ୍ଟି ହୋଇଛି ତାକୁ ପ୍ରଶମିତ କରିବା ପାଇଁ ସେ ଆଶ୍ରା ନେଇଛନ୍ତି ସିଷ୍ଟର ତପତୀ ଠାରେ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସମୟରେ ନିଜ ପ୍ରେମିକ ସହିତ ଡାକ୍ତରଖାନାରୁ ତପତୀ ବିଦାୟ ନେଲାବେଳେ ଅମିତାଭଙ୍କ ମନରେ ଭରିଉଠେ ଅସୂୟାପୂର୍ଣ୍ଣ ଉତ୍ତେଜନା । ସେ ଜାଣନ୍ତି ତପତୀର ଦୃଷ୍ଟି ରହିଛି ତାଙ୍କ ଅର୍ଥ ଉପରେ । ତଥାପି ସେ ତପତୀ ସହିତ ଆବେଗତ ସମ୍ପର୍କ ସ୍ଥାପନ କରିବାକୁ ଚାହାନ୍ତି । ମଣିଷ ମନ ଭିତରେ ଥିବା ଯୌନାକାଙ୍‌କ୍ଷା ମୁହୂର୍ତ୍ତକ ପାଇଁ ହେଲେ ମଧ୍ୟ କିପରି ସର୍ପପରି ଅକସ୍ମାତ୍ ଫଣାଟେକି ଦଂଶନ କରେ ତାହା ଉକ୍ତ ଗଳ୍ପରେ ଦେଖାଯାଏ ।

ପଚାଶୋତ୍ତର ମଣିଷ ଭିତରେ ସୃଷ୍ଟି ହେଉଥିବା ଯୌନ ଶିଥିଳତାକୁ ପୁନଶ୍ଚ କ୍ରିୟାଶୀଳ କରିବା ସହିତ ଯୌବନର ମାଦକତା ଫେରି ପାଇବା ପାଇଁ ପ୍ରଚେଷ୍ଟାରତ ସନ୍ତୋଷର ଜୀବନ କାହାଣୀ 'କମ୍ବଳର ତମ୍ବୁ' ଗଳ୍ପରେ ବର୍ଣ୍ଣିତ । ତେଣୁ ସେ, "କେତେକ ହରମୋନ୍ ଔଷଧ ସହିତ ସଂଗ୍ରହ କରି ଆଣିଥିଲା ଏକ ଉଲ୍ଲଙ୍ଗିନୀ କ୍ୟାଲେଣ୍ଡର ଆଉ କେତେକ ପର୍ଣ୍ଣୋଗ୍ରାଫିକ ଯୌନ ଉପନ୍ୟାସ ... ଯାହା ଏ ଯୁଗର ଜୀବନସଂହିତା । ସନ୍ତୋଷର ଯୌନ-କ୍ଷୁଧାକୁ ସେସବୁ କିନ୍ତୁ ପରିଣତ କରିଥିଲା ଯୌନ-ବିତୃଷ୍ଣାରେ । ତାର ଅସ୍ତିତ୍ୱର ଅଥଳ ଶୂନ୍ୟତାକୁ ଯୌନତାର ଏ ଉଦ୍‌ଗୀରଣ ଆଦୌ ପୂର୍ଣ୍ଣ କରିପାରି ନଥିଲା ।" (ପୃ-୮୪) ଭୟଙ୍କର ନିଃସଙ୍ଗତା ଭିତରେ ଜୀବନ ଜିଉଁଥିବା ମଣିଷ ଯୌନ ଜୀବନ ପ୍ରତି ନିଜକୁ ଉନ୍ମୁଖ ରଖିଲେ ମଧ୍ୟ ଅନୁରୂପ ମାନସିକ ଓ ଶାରୀରିକ ସତେଜତା ଲାଭ



Source: Author, Digitized by PPRACHIN, SOA

ପାରିପାରୁନାହିଁ । ପରନ୍ତୁ ଯେଉଁଥିରୁ ସେ ଆନନ୍ଦର ଉତ୍ସ ଖୋଜିବା ପାଇଁ ଉଦ୍‌ଗ୍ରୀବ ସେଇ ଉତ୍ସଟିରୁ ପରମୁହୂର୍ତ୍ତରେ ଅପସରିତ ହୋଇ ନିଜ ନିର୍ମିତ ପରିଧି ମଧ୍ୟରେ ଅପେକ୍ଷା କରୁଛି ଏକ ଅନାହତ ମୁହୂର୍ତ୍ତକୁ ଏବଂ ତୁଳନା କରୁଛି ନିଜର ସ୍ଥିତାବସ୍ଥା ସହ ଅନ୍ୟ ଜୀବନର ଶୂନ୍ୟତା ଓ ଗ୍ଲାନିବୋଧକୁ ।

କଳାଧନ ମାଧ୍ୟମରେ ପରିଣତ ହୋଇଥିବା ନବ୍ୟ ସମ୍ଭ୍ରାନ୍ତବର୍ଗଙ୍କ ଉଚ୍ଚାଟିତ ଦୀର୍ଘଶ୍ୱାସ ଏବଂ ତାକୁ ପ୍ରତିହତ କରିବା ପାଇଁ ସୃଷ୍ଟି ହୋଇଥିବା ପ୍ରଗତିଶୀଳ ଆଭିମୁଖ୍ୟ 'ପ୍ରିୟତମାଷ୍ଟୁ' ଗଳ୍ପରେ ଚିତ୍ରିତ । ଏହି ଦୁଇଟି ଆଦର୍ଶକୁ ସମନ୍ୱିତ କରିଛି ଯୌନ ପ୍ରବୃତ୍ତି । ରୋମାଣ୍ଟିକ ଭାବ ବିହ୍ୱଳିତ ନବ୍ୟଧନୀକଙ୍କ ପାଇଁ ଅଧିକ ପ୍ରାଚୁର୍ଯ୍ୟ ଲାଳସା ସୃଷ୍ଟିକରେ ସେଇପରି ମଧ ବୈପ୍ଲବିକ ଚେତନା ଭରିଦିଏ ଏକ ନବଯୁଗର ସୃଷ୍ଟି ପାଇଁ, ଯେଉଁଠାରେ ନଥିବ ମଣିଷ ମଣିଷ ଭିତରେ ବ୍ୟକ୍ତିଗତ ସଂପତ୍ତିର ଦୁର୍ଭେଦ୍ୟ ଅହଂକାର । ଚିତ୍ରଶିଳ୍ପୀ ଭୂଦେବଙ୍କ ଚିତ୍ରକଳା ପ୍ରେମିକା ସୁମିତ୍ରା ପାଇଁ ଏକ ବିଜ୍ଞାପନ ଉପଯୋଗୀ ଚିତ୍ରକଳା । ବିଜ୍ଞାପନ ଯୁଗରେ ଯାହାର ବିଜ୍ଞାପନ ବେଶୀ ତାର ସର୍ବଶ୍ରେଷ୍ଠ ହେବାର ପ୍ରତିବନ୍ଧକ ନାହିଁ ବୋଲି ଅନୁଭବ କରିଛି ସୁମିତ୍ରା । ସୁମିତ୍ରାର ସେଇ ଭାବନାକୁ ଆଦିମ ଚିନ୍ତା ପର୍ଯ୍ୟାୟଭୁକ୍ତ ବୋଲି ଭୂଦେବ ମନେ କରିଛି । ଅର୍ଥ ଓ ସମ୍ଭ୍ରାନ୍ତୀୟ ସ୍ପର୍ଶରେ ତରୁଣୀ ସୁମିତ୍ରା ନିଜର ଯୌବନକୁ ଅକାତରେ ସମର୍ପଣ କରିଛି ତା'ଠାରୁ ତିରିଶ ବର୍ଷରୁ ଅଧିକ ବର୍ଷିୟାନ ବୃଦ୍ଧଠାରେ । ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ପ୍ରତି ଆକର୍ଷିତ ହେଉଥିବା ମଣିଷର ଆଭିମୁଖ୍ୟ ଭୂଦେବକୁ ମର୍ମାହତ କରିଛି । ତେଣୁ କ୍ଷୁଧାତୁର ମଣିଷର ବେଦନାକୁ ପ୍ରଶମିତ କରିବା ପାଇଁ ସାମ୍ୟବାଦକୁ ଆପଣେଇଥିବା ବୈପ୍ଲବିକ ଚେତନା ମଧ୍ୟରେ ଭୂଦେବ ନିଜର ସ୍ଥିତି ସଂରକ୍ଷିତ କରିବା ପାଇଁ ଉଦ୍ୟମରତ ।

ସାଂପ୍ରଦାୟିକ ଦଂଗା ପ୍ରପୀଡ଼ିତ ଅଂଚଳ ତଥା ମଣିଷର ମର୍ମଗାଥା ହେଉଛି 'ଗୋଟିଏ ଘୋଡ଼ାର ମୃତ୍ୟୁ' ଗଳ୍ପଟି । ଯେଉଁଥିରେ ଭରିରହିଛି ମାନବିକତା ଶୂନ୍ୟ ମଧ୍ୟ ଯୁଗୀୟ ବର୍ବର ମାନସିକତା । କାଲୁମିଆଁର ସୁଖ ଓ ଦୁଃଖର ସାଥୀ ହେଉଛି ପାଳିତ ଘୋଡ଼ାଟି ଜୀବନର ସହଯୋଗୀ ପ୍ରିୟ ପରିଜନ ସଦୃଶ । ଜାତି, ଧର୍ମ, ବର୍ଣ୍ଣନିର୍ବିଶେଷରେ ନିଜକୁ ଏକାନ୍ତ ଭାବେ ମୁନିବ ପାଖରେ ସମର୍ପିତ ପ୍ରାଣ ଘୋଡ଼ାଟି ସାଂପ୍ରଦାୟିକ ଦଂଗାର ଶିକାର ହୋଇଛି । ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିଥିବା କାଲୁମିଆଁର ଘୋଡ଼ାଟିର ଖୁରା ପିଟିବାର ଶବ୍ଦ ସତେ ଯେପରି ବ୍ୟବସ୍ଥା ବିରୁଦ୍ଧରେ ଏକ ମୌନ ପ୍ରତିବାଦ । "କାଲୁମିଆଁର ମୃତ୍ୟୁମୁଖୀ ଘୋଡ଼ାଟି ଆମର ନିର୍ବେଦ ସମାଜ, ରାଜନୀତି ଓ ସାଂପ୍ରଦାୟିକତା ବିକ୍ଷୁବ୍ଧ ଜୀବନର ଏକ ସୁନ୍ଦର ପ୍ରତୀକ ।" (ଲେଙ୍କା, ପୃ.୯୩) ଶାନ୍ତି କମିଟିର କାର୍ପେଟଦାର ସୁଧୀନ୍ଦ୍ରଙ୍କ ପରି ଅନେକ କେବଳ ରାଜନୈତିକ ସ୍ୱାର୍ଥ ପ୍ରତି ସଚେତନ ଏବଂ ଅନେକ ଜାତି, ଧର୍ମ ବିଦ୍ୱେଷ ଭାବନାର ଶିକାର । ଗାଳ୍ପିକ ଏହି ବିକୃତମାନସିକତା ଦ୍ୱାରା ପରିଚାଳିତ ମଣିଷ ସମ୍ପର୍କରେ କୁହନ୍ତି, "ଶାନ୍ତି-ସେନା ପକ୍ଷରୁ ସୁଧୀନ୍ଦ୍ର ଗୋଟାଏ ବିବୃତିର ଚିଠା କରୁଥିଲା ... ସେଥିରେ ମାବିକତାର ଉଦ୍‌ବୋଧନ ଥିଲା ପ୍ରଚୁର ; ଧର୍ମନିରପେକ୍ଷ ଓ ହେତୁବାଦୀ ମାନବିକତା



Source: Author, Digitized by PPRACHIN, SOA

ଉଦ୍‌ଘୋଷଣା ଥିଲା ମଧ୍ୟ ପ୍ରଖର । ଶେଷରେ ଗୋଟିଏ କିନ୍ତୁ ... ତାହା ଏକଉପ୍ରୀତକ 'କିନ୍ତୁ' ।" (ପୃ-୧୧୫)

'କବନ୍ଧ' ଗଳ୍ପରେ ଓଡ଼ିଶାର ପ୍ରାଚୀନମୂର୍ତ୍ତି ପ୍ରତି ବିଦେଶୀ ଦଲାଲମାନଙ୍କ ଶ୍ୟେନ ଦୃଷ୍ଟି ଏବଂ ଅର୍ଥ ପାଇଁ ନିଜସ୍ୱ ସାରସ୍ୱତ ସାଂସ୍କୃତିକ ପ୍ରତୀକକୁ ବିକ୍ରି କରିବାର ମାନସିକତା ପ୍ରତିଫଳିତ । ଉତ୍କଳର ଶିଳ୍ପୀ ନିଜର ନାମ ଅର୍ଜନ ବଦଳରେ ଶିଳ୍ପକଳାର ମାଧୁର୍ଯ୍ୟକୁ ମହିମାମଣ୍ଡିତ କରିବା ପାଇଁ ନିଜ ଶ୍ରମ, ପାରିବାରିକ ସୁଖ ସମୃଦ୍ଧିକୁ ଉତ୍ସର୍ଗ କରୁଥିଲେ ସେଇ ମାଟିର ଉତ୍ତରସୁରୀ ସାମାନ୍ୟ ଅର୍ଥରେ କ୍ଷଣିକ ବିଳାସପୂର୍ଣ୍ଣ ଜୀବନ ଅତିବାହିତ କରିବା ପାଇଁ । ସେସବୁକୁ ବିଦେଶୀ ହାତରେ ଟେକି ଦେବାର ଗୁଗ୍ଣେ ମାନସିକତାକୁ ଗାଳ୍ପିକ ସମାଲୋଚନା କରିଛନ୍ତି । ଉତ୍କଳର ଉତ୍କୃଷ୍ଟ, କଳାକୃତିକୁ ସଂରକ୍ଷିତ କରିବା ଏବଂ ନିଜ ଅସ୍ମିତାକୁ ବିଶ୍ୱଦରବାରରେ ପ୍ରତିଷ୍ଠା ବଦଳରେ· ଏ ଦେଶରେ ସୃଷ୍ଟି ହୋଇଥିବା ଅର୍ଥଲୋଭୀ ଲୁମ୍ପେନ ମଦ୍ୟପାନରେ କିଛିକ୍ଷଣ ନିଜକୁ ବୁଡ଼ାଇ ରଖିବା ପାଇଁ ନିଜର ଅସ୍ମିତାକୁ ପଦାଘାତ କରିପାରେ । ସାଂପ୍ରତିକ ସମୟରେ ଜନ୍ମିତ ଛିନ୍ନମୂଳ ମାନସିକତା ଧାରୀ ମଣିଷ ଓ ନିଜ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରୁଥିବା ଗୋଲାମମାନଙ୍କ ନୀଚ ମନୋଭାବକୁ ଲେଖକ ତୀବ୍ର ସମାଲୋଚନା କରିଛନ୍ତି । ପ୍ରତ୍ୟେକ ମଣିଷ ଭିତରେ ରହିଛି ସୃଜନଶୀଳତାର ଆନ୍ତରୀଣ ଫଲଗୁ । ସେଇ ସୃଜନ ପରିକଳ୍ପନା ମଣିଷକୁ ତା'ର ଜୀବନର ପୂର୍ଣ୍ଣତା ଆଡ଼କୁ ଅଗ୍ରସର କରାଏ । ଜଣେ କୁଷ୍ଠରୋଗୀ ଏବଂ ପାଗଳ ରାଜମିସ୍ତ୍ରୀର ମିଳିତ ଉଦ୍ୟମରେ ଆଖଣ୍ଡଳମଣିଙ୍କ ମନ୍ଦିର ସ୍ଥାପନ ହୋଇଛି । ମନ୍ଦିର ନିର୍ମାଣ କରି ଯଶକୀର୍ତ୍ତି ଅଜର୍ନ କିମ୍ବା ତା'ମାଧ୍ୟମରେ ଅର୍ଥ ଉପାର୍ଜନ କରି ନିଜ ଜୀବନ ଜୀବିକା ନିର୍ବାହ କରିବା ସେମାନଙ୍କର ଅଭିପ୍ରାୟ ନଥିଲା । ସେମାନଙ୍କର ଇଚ୍ଛା ଥିଲା ଏକ ଆବେଗପୂର୍ଣ୍ଣ ଜୀବନର ଶୁଭାରମ୍ଭ । 'ଇନ୍ଦ୍ରଦ୍ୟୁମ୍ନ' ଗଳ୍ପଟି ଏହି ଭାବଧାରାକୁ ନିର୍ଦ୍ଦେଶ କରେ । ସ୍ୱପ୍ନ ଓ ବେଦନାର ସମନ୍ୱିତ ଧାରାକୁ ଏକାଗ୍ରଚିତ୍ତରେ ନିଜ ଭିତରେ ସମାୟିତ କରି ଏକ ଅର୍ଥପୂର୍ଣ୍ଣ ଜୀବନ ଉଦ୍ଦେଶ୍ୟରେ ନିଜକୁ ସମର୍ପିତ କରିବାର ମନୋଭାବ ମଣିଷକୁ ବଞ୍ଚିବାର ଯେଉଁ ଉଚ୍ଚତାକୁ ନିଏ ତାହା ଅନନ୍ୟ । ଏହି ଭାବଧାରାକୁ ନେଇ ବଞ୍ଚୁଥିବା ମଣିଷ ଉଦ୍ଦେଶ୍ୟରେ ଲେଖକ କୁହନ୍ତି, "ମନୁଷ୍ୟ ବଞ୍ଚେ ନାହିଁ କେବଳ ଦେହରେ । ସାର୍ଥକତର ଭାବରେ ସେ ମଧ୍ୟ ବଞ୍ଚେ ତାର ସ୍ୱପ୍ନ ଆଉ ବେଦନା ମଧ୍ୟରେ ।" (ପୃ.୧୪୦)

'ବଳୀବର୍ଦ୍ଧ' ଗଳ୍ପରେ ଦୁଇଟି କାହାଣୀ ସନ୍ନିବେଶିତ । ଗୋଟିଏ ପଟେ ବିବାହାଦି ସମୟରେ ବାଦ୍ୟ ବଜାଇ ପେଟ ପୋଷୁଥିବା ରାମୁଲର ଜୀବନ ଯନ୍ତ୍ରଣା ଓ ଅନ୍ୟପଟେ ବିବାହ ସମୟରେ ଯୌତୁକ ବ୍ୟାଧି ଲେଖକଙ୍କ ମନ ଓ ହୃଦୟକୁ କରିଛି ବିଚଳିତ । ସମାଜର ନିମ୍ନବର୍ଗ ପ୍ରତି ଲେଖକଙ୍କ ସମବେଦନା ଯେପରି ଘଟିଛି ସେଇପରି ଯୌତୁକ ପ୍ରଥାର ଦ୍ୱାହି ଦେଇ ବଞ୍ଚୁଥିବା ମଣିଷର ଦୟନୀୟ ସ୍ଥିତି ତଥା ହୀନମନ୍ୟତା ଲେଖକଙ୍କୁ ମ୍ରିୟମାଣ କରିଛି । 'ସଭ୍ୟତାର ଗ୍ରାସ' ଏକ ନୃତତ୍ତ୍ୱଭିତ୍ତିକ ଗଳ୍ପ । କନ୍ଧ ଜନଜୀବନର



Source: Author, Digitized by PPRACHIN, SOA

ସାଂସ୍କୃତିକ ତଥା ସାମାଜିକ ପରିଚର୍ଚ୍ଚା ସହିତ ସେମାନଙ୍କ ମୁକ୍ତିକାମୀ ମନ କିପରି ଆଧୁନିକ ସଭ୍ୟତାର କଥାକଥିତ ଶ୍ଳିକ, ଅଶ୍ଳୀଳ ଉର୍ଦ୍ଧ୍ୱରେ ଥିଲା ତା'ର ଏକ ମାର୍ମିକ ବିଚାର ବିଶ୍ଳେଷଣ ଏହି ଗଳ୍ପରେ ଦେଖିବାକୁ ମିଳେ । ଯେଉଁମାନେ ଧରିତ୍ରୀମାତାର ନିରାଭରଣ ରୂପକୁ ନିଜ ଭିତରେ ସମାୟିତ କରନ୍ତି, ସେଇ ମାତୃସ୍ୱରୂପିଣୀ କନ୍ଧ କନ୍ୟା ନିଜ ଶରୀରକୁ ଆଚ୍ଛାଦନ କରିବା ପାଇଁ । ଅବକାଶ ସୃଷ୍ଟି ହେବ ବା କାହିଁକି ? ତେଣୁ କନ୍ଧ ସମାଜ ପାଇଁ ପ୍ରକୃତିର ଚଳଚଞ୍ଚଳ ରୂପ ପରିଗ୍ରହ ଧାରଣ କରିଥିବା ନାରୀସମାଜର ଅନାବୃତ୍ତ ଶରୀର ସେମାନଙ୍କ ଚିତ୍ତକୁ ଚଞ୍ଚଳିତ କରୁନଥିଲା । ସ୍ନାୟବିକ ଚଞ୍ଚଳତା ଠାରୁ ସେମାନେ (ପୁରୁଷ) ଥିଲେ ବହୁ ଦୂରରେ । ନାରୀର ଉନ୍ମୁକ୍ତ ଶରୀର ସେମାନଙ୍କ ମନରେ ସୃଷ୍ଟି କରି ନଥିଲା ଆଧୁନିକ ସଭ୍ୟତାରେ ବହୁ ପରିଚର୍ଚ୍ଚିତ ସମ୍ବେଦନଶୀଳ ଯୌନ ବିକାର । କେଉଁ ଆଦିମକାଳରୁ ନିଜ ଜୀବନକୁ ମୁକ୍ତ ବିହଙ୍ଗ ପରି ବଣଜଙ୍ଗଲ ଘେରା ସମୁଜ୍ଜ୍ୱଳ ପ୍ରାକୃତିକ ପରିବେଶରେ କନ୍ଧମାନଙ୍କର ଗତିଶୀଳ ଜୀବନ ସମୟକ୍ରମେ ଆଧୁନିକମନସ୍କ ବୋଲାଉଥିବା ମଣିଷମାନଙ୍କ ଦ୍ୱାରା ବହୁବିଧ ଭାବରେ ଶୋଷିତ ହୋଇଛି । ସେମାନଙ୍କ ଜୀବନ ଚର୍ଯ୍ୟା ପୁଅଝିଅମାନଙ୍କ ଅବାଧ ତଥା ନିବିଡ଼ ସମ୍ପର୍କ ସ୍ଥାପନ ମଧ୍ୟରେ ଥିଲା ଏକ ନାନ୍ଦନିକ ଅଭିବ୍ୟକ୍ତି । ଯେବେଠାରୁ ସେମାନଙ୍କ ଜୀବନ ପରିଧି ମଧ୍ୟରେ ଅନୁପ୍ରବେଶ କରିଛନ୍ତି ପୋଲିସ, ପାଦ୍ରୀ, ମହନ୍ତ ଓ ମହାଜନ ସେବେଠାରୁ ସେମାନଙ୍କ ସନ୍ତୁଳିତ ଜୀବନଚର୍ଯ୍ୟାର ଭାରସାମ୍ୟ କ୍ରମଶଃ ଅସନ୍ତୁଳନ ହୋଇଛି । ଏକଥା ଅନୁଭବ କରିଛି ବୁଦୁଜାନୀ । କନ୍ଧଝିଅ ପଦୁଆଁର ଅକସ୍ମାତ ମୃତ୍ୟୁର କାରଣ ସମ୍ପର୍କରେ ସଭ୍ୟତାର ଉପରୋକ୍ତ ଚାରି ଦଲାଲ ପ୍ରତିନିଧି ସହିତ କନ୍ଧସମାଜର ମୁଖିଆର ମନୋଭାବକୁ ଗାଳ୍ପିକ ଅତି ଯତ୍ନ ସହକାରେ ବର୍ଣ୍ଣନା କରିଛନ୍ତି । ସଭ୍ୟ ମଣିଷର ଉଗ୍ରକାମୁକତା ଓ ବ୍ୟଭିଚାରରେ ଗାଳ୍ପିକ ଅତ୍ୟନ୍ତ ମର୍ମାହତ ହେବା ସହ ମାନବ ସମାଜର ଛଳନାଯୁକ୍ତ ବୌଦ୍ଧିକ ଇଙ୍ଗିତକୁ ଭର୍ତ୍ସନା କରିଛନ୍ତି ।

ସୁରେନ୍ଦ୍ର ମହାନ୍ତି ନାମାବଳୀ ପକାଇଥିବା ସାଧୁ ସନ୍ନ୍ୟାସୀ ନୁହନ୍ତି । ମଣିଷର ରୂପକାର । ଶାଶ୍ୱତ ପ୍ରେମ, ତ୍ୟାଗ, ନିଷ୍ଠା, ସବୁ ଶବ୍ଦସମୂହ ଭାବାଦର୍ଶ ପର୍ଯ୍ୟାୟଭୁକ୍ତ ଯାହା ମଣିଷ ମନର ଛଦ୍ମବିକାରକୁ ଘୋଡ଼ାଇ ଦେବା ପାଇଁ ଅନନ୍ତ ଯୁଗରୁ ପ୍ରୟାସ ଜାରି ରଖିଛି । ମୁଖାପିନ୍ଧା ମଣିଷର ଏସବୁ ଆଦର୍ଶକୁ ସୁରେନ୍ଦ୍ର ମହାନ୍ତି ପ୍ରତ୍ୟାଖ୍ୟାନ କରିଛନ୍ତି ଜଣେ ସଚ୍ଚୋଟ ଲେଖକୀୟ ସତ୍ତାର ଦାୟବଦ୍ଧତା ଭାବେ । ଯେଉଁ ମାନସିକ ବିକୃତି ମଣିଷ ସଭ୍ୟତାକୁ ଗ୍ରାସ କରିରଖିଛି ସେହି ବିକୃତିର ପରିପ୍ରକାଶରେ ସୁରେନ୍ଦ୍ର ମହାନ୍ତିଙ୍କ ସାହସିକତା ନିଶ୍ଚିତ ରୂପେ ସ୍ୱାଗତଯୋଗ୍ୟ । ଦ୍ୱିତୀୟତଃ ଲେଖକଟିଏ ସଭ୍ୟତାର ଆରମ୍ଭରୁ ଆଗାମୀ ଭବିଷ୍ୟତ କାଳର ସାମାଜିକ, ସାଂସ୍କୃତିକ ସ୍ପନ୍ଦନ ଅନୁଭବ କରିପାରେ । ତେଣୁ ତାଙ୍କର ଅଧିକ ଆଧୁନିକ ଉପଯୋଗୀ ହେବା ତାଙ୍କ ଚିନ୍ତାଶୀଳ ଲେଖକୀୟ ସତ୍ତାର ଉତ୍ତରଣ ।

ସୁରେନ୍ଦ୍ର ମହାନ୍ତି ବାସ୍ତବ ଜୀବନର ରୂପକାର ହେଲେ ମଧ୍ୟ ତାଙ୍କର ବାସ୍ତବତା ବାହ୍ୟ ଆବରଣ ସଦୃଶ୍ୟ ନୁହେଁ କିମ୍ୱା ଘଟଣା ସର୍ବସ୍ୱ ନୁହେଁ । ତାଙ୍କ ପାଖରେ 'ମନ,



Source: Author, Digitized by PPRACHIN, SOA

ବସ୍ତୁ, ଘଟଣା ଏବଂ ଶୂନ୍ୟତା ସବୁ ଗଳ୍ପମୟ ।' ତେଣୁ କାହାଣୀ ମୁଖ୍ୟ ନହୋଇ କେବଳ ଉପଲକ୍ଷ୍ୟ । ଉକ୍ତ ଗଳ୍ପ ଗ୍ରନ୍ଥରେ କେତୋଟି ଗଳ୍ପ ନିଜ ପ୍ରତ୍ୟକ୍ଷ ଅନୁଭୂତି ସିଦ୍ଧ । ଯାହାର ଭିତ୍ତିକରି ଜୀବନର ରୂପନ୍ୟାସ କରିବା ପାଇଁ ଚେଷ୍ଟା କରିଛନ୍ତି । ତେଣୁ ନିଜସ୍ୱ ଭାବ ବ୍ୟକ୍ତ କରିବାକୁ ସେ ଆଶ୍ରୟ ଲୋଡିଛନ୍ତି ବାସ୍ତବତାର ବାସ୍ତବ ରୂପକୁ । ଯେଉଁ ବାସ୍ତବତାର ଅନୁରଣଗୁଡିକୁ ଯୁକ୍ତିମାଧ୍ୟମରେ ସିଦ୍ଧ କରାଯାଇନପାରେ । ସେ ଆଦର୍ଶବାଦର ପ୍ରଚାରକ ନୁହନ୍ତି ପରନ୍ତୁ ଆଦର୍ଶବାଦ ଭିତରେ ଥିବା ବା ତାକୁ ଆଧାର କରି ଗଢ଼ିଉଠିଥିବା ମାନବିକ ଆବେଦନ ସହିତ କୁତ୍ସିତ ଅବଧାରଣାଗୁଡିକୁ ମୂଲ୍ୟାୟନ କରିଛନ୍ତି । "ଏହା ସତ୍ୟ ଯେ ଯନ୍ତ୍ରଣାକ୍ଲିଷ୍ଟ ମଣିଷର ବିଫଳତା, ଅବକ୍ଷୟ ସମାଜ ଓ ଅଭିଶପ୍ତ ଜୀବନର ସାଧାରଣ ଏଷ୍ଟାବ୍ଲିଶ୍‌ମେଣ୍ଟ ବିରୋଧୀ ଚିନ୍ତାଧାରା, ପ୍ରାଚୀନ ସାମନ୍ତାବାଦୀ ସଭ୍ୟତା ଓ ସଂସ୍କୃତି ପ୍ରତି ବିଦ୍ୱେଷ ତଥା ସହାନୁଭୂତିର ଦୃଷ୍ଟିଭଙ୍ଗୀ ଏବଂ ଦାର୍ଶନିକ ତଥା ମାନବିକ ଆଦି ଭାବଧାରା ଗୁଡିକ ତାଙ୍କ ଗଳ୍ପକୁ ବ୍ୟାପକ ତଥା ଚିରନ୍ତନ କରିଛି ।" (ବାରିକ, ପୃ-୯୨) ସାହିତ୍ୟରେ ଚିରନ୍ତନ ବୋଲି କିଛି ନାହିଁ ; ଶାଶ୍ୱାୟଣ ପ୍ରକ୍ରିୟାର ବହୁ ଆଦୃତ ଶବ୍ଦ । ତେଣୁ ସୁରେନ୍ଦ୍ରମହାନ୍ତିଙ୍କ ଗଳ୍ପକୁ ଚିରନ୍ତନ ବୋଲି କହିବାରେ ଯଥାର୍ଥତା ନାହିଁ । ପରନ୍ତୁ ଶତାବ୍ଦୀର ରୁଗ୍ଣ ମାନସିକତାର ଶରବିଦ୍ଧ ମଣିଷର କଥା ଓ ବ୍ୟଜଂନା ତାଙ୍କ ଗଳ୍ପକୁ କରିଛି ଅଧିକ ମାର୍ମିକ । ଏଠାରେ ଜୀବନ କହିଲେ ଅର୍ଥହୀନ ମୁହୂର୍ତ୍ତକୁ ଆପଣାର କରି ବଞ୍ଚିବାର ଅଭିନୟକୁ ବୁଝାଏ । ତେଣୁ ଜୀବନ ପ୍ରତି ଗଭୀର ଅନ୍ତର୍ଦୃଷ୍ଟି, ଅନୁଭୂତି, ଆବେଗ ଓ ପ୍ରକାଶ ଭଙ୍ଗୀର ନିବିଡତା ହିଁ ସୁରେନ୍ଦ୍ରଙ୍କ ଗଳ୍ପର ବୈଶିଷ୍ଟ୍ୟ । ମୂଲ୍ୟବୋଧ ହୀନ ଜୀବନ, ଗତିହୀନ ପ୍ରାଣକୁ ଗୋଟିଏ ଗୋଟିଏ ଗୁଡ଼୍, ସିଚୁଏସନର ସ୍ମୃତି ଓ ସ୍ପନ୍ଦନର ପରିପ୍ରକାଶ ଘଟିଛି ତାଙ୍କ ଗଳ୍ପରେ ।

ସୁରେନ୍ଦ୍ର ମହାନ୍ତି ଯେପରି ସମାଜର ନିମ୍ନବର୍ଗ, ଦଳିତ, ଶୋଷିତ ଘୃଣିତ ମଣିଷମାନଙ୍କର ଚିତ୍ର ଦେଇଛନ୍ତି ସେଇପରି ମଧ୍ୟ ଅହଂକାରୀ ଉଦ୍ଧତ ଉଚ୍ଚବର୍ଗମଣିଷମାନଙ୍କ ଦର୍ପିତ ମାନସିକତାକୁ ବ୍ୟଂଜନାପୂର୍ଣ୍ଣ ଭାବେ ବର୍ଣ୍ଣନା କରିଛନ୍ତି । ତେଣୁ ଅନେକ ସମୟରେ ଏହି ଆଭିଜାତ୍ୟପୂର୍ଣ୍ଣ ମଣିଷର ଅହଂକାରକୁ ଅବଦମିତ କରିବା ପାଇଁ ନକସଲବାଦ, ବିପ୍ଳବ ତଥା ଶ୍ରେଣୀ ଚେତନାର ଆଲେଖ୍ୟ ବାଢ଼ିଛନ୍ତି । "ସମାଜତନ୍ତ୍ର କହୁଛି, ବଂଚିବାର ପୀଡନରୁ ନିସ୍ତାର ପାଇବାକୁ ହେଲେ ଦରକାର ପ୍ରତିଷ୍ଠାନର ବିରୋଧ, ଯାହା ଘଟାଇଦେଇପାରେ ହୁଏତ ଅକସ୍ମାତ ବା ବିଳମ୍ବିତ ପରିବର୍ତ୍ତନ ; ଏବଂ ସେଇ ମଣିଷ ଜୀବନରେ ପରିବର୍ତ୍ତନର କାମନା ସବୁଠୁଁ ବଳି ଅନୁଭୂତ ଯିଏ ସମାଜବ୍ୟବସ୍ଥାରେ ସବୁଠୁଁ ବଳି ନିଷ୍ପେଷିତା । "(ପଣ୍ଡା,ପୃ୨୩୬) ପ୍ରତିଷ୍ଠାନ ବା ଏଷ୍ଟାବ୍ଲିସ୍‌ମେଣ୍ଟ ଭାଙ୍ଗିବା ପାଇଁ ଓଃ ! କାଲକାଟା !!, କମନରୁମ, ଗୋଟିଏ ଘୋଡ଼ାର ମୃତ୍ୟୁ ପ୍ରଭୃତି ଗଳ୍ପର ନାୟକମାନେ ପ୍ରତ୍ୟକ୍ଷ ଓ ପରୋକ୍ଷାଭାବେ ସ୍ୱର ଉଚ୍ଚାରଣ କରିଛନ୍ତି । ତେବେ ଏଷ୍ଟାବ୍ଲିସମେଣ୍ଟଙ୍କୁ ନିରବଂତା ଭିତରେ ଧକ୍‌କା ଦେଇଛନ୍ତି କବନ୍ଧ, ଇନ୍ଦ୍ରଦ୍ୟୁମ୍ନ ଓ ବଳୀବର୍ଦ୍ଧ ଗଳ୍ପର ନାୟକ ବୃନ୍ଦ । ଏହି ଚେତନାଶ୍ରୟୀ ଗଳ୍ପ ଗୁଡିକ କିନ୍ତୁ ପ୍ରୋପାଗଣ୍ଡା ପର୍ଯ୍ୟାୟଭୁକ୍ତ ନୁହେଁ । କାରଣ ଗଳ୍ପର କଳା –



Source: Author, Digitized by PPRACHIN, SOA

ଧର୍ମ ଆଧାରରେ ଅବଜେକଟିଭ୍ – କୋରିଲେଟିଭ୍ ମାଧ୍ୟମରେ ତାଙ୍କ ସମାଜ ସଚେତନତା ପ୍ରକାଶିତ । ତେଣୁ ନୀତିବାଦ, ଆଶାବାଦ ଅପେକ୍ଷା ନୈରାଶ୍ୟ ଜର୍ଜରିତ ମଣିଷର ଆତ୍ମଗାଥା ଦେଖିବାକୁ ମିଳିଥାଏ ଏ ଗଳ୍ପ ସମୂହରେ । ଚରିତ୍ରମାନଙ୍କ ମନୋବିଶ୍ଳେଷଣ କଲାବେଳେ ସୁରେନ୍ଦ୍ର ମହାନ୍ତିଙ୍କ ଚେତନାକୁ ଉଦ୍ଦୀପ୍ତ ଆଲୋଡିତ କରିଛନ୍ତି ମାର୍କସ, ଫ୍ରୟେଡ଼ ଏବଂ ସାର୍ତ୍ରେଙ୍କ ପରି ଦାର୍ଶନିକ ବୃନ୍ଦ । `

**ସହାୟକ ଗ୍ରନ୍ଥସୂଚୀ :**


୧.ଗାହାଣ, କପିଳେଶ୍ୱର, ୧୯୯୪ ; ସୀମାବଦ୍ଧତା ଓ ମୁକ୍ତିର ସ୍ୱପ୍ନ, ଅଗ୍ରଦୂତ, କଟକ ।
୨.ପଣ୍ଡା, ରବୀନ୍ଦ୍ରପ୍ରସାଦ, ୨୦୦୪ : ମଧ୍ୟବିତ୍ତର ଆତ୍ମବିଚାର, ବିଦ୍ୟାପୁରୀ, କଟକ ।
୩.ପରିଡା, ଡ.ପ୍ରକାଶ କୁମାର ସାହୁ, ଡ.ଗିରୀଶଚନ୍ଦ୍ର (ସଂ), ୧୯୯୮: ସୁରେନ୍ଦ୍ର ସାହିତ୍ୟ ସମୀକ୍ଷା, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।
୪.ବାରିକ, ଡ କବିତା, ୧୯୯୯ : ଶହେ ବର୍ଷର ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଏକ ତାତ୍ତ୍ୱିକ ବିଶ୍ଳେଷଣ (୧୮୯୮-୧୯୯୮), ବିଦ୍ୟାପୁରୀ, କଟକ ।
୫.ମହାନ୍ତି, ଶ୍ରୀ ଶରତ କୁମାର, ୧୯୭୭: ଅସ୍ତିତ୍ୱବାଦର ମର୍ମକଥା, ଅଗ୍ରଦୂତ, କଟକ ।
୬.ଲେଙ୍କା, ଡଃ.ଶଇଳେନ୍ଦ୍ର, ୧୯୯୭ : କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ।
୭.ସାହୁ, ଡ,ଆଦିକନ୍ଦ, ୧୯୯୯ : ଓଡ଼ିଆ ଗଳ୍ପ ଉପନ୍ୟାସର ନବଦିଗନ୍ତ, ଜ୍ୟୋତିବିହାର, ବୁର୍ଲା ।

ଇଂରାଜୀ

Altusser, Lais, 2008 : On Ideology, Verso, London, Hawkes David, 2007 : Idelog, Routledge, London
Sartre, Jean, Paul 2008: Between existentialism and Marxism, Verso, London.
Day, Gray, 2007 Class Routledge, London.

ଓଡ଼ିଆ

ଅଧୁନା, ୮/୭,୧୯୮୨
ଆରୋହଣ, ଶାରଦୀୟ, ୨୦୧୦ : ଭାବାଦର୍ଶ, ବିଜ୍ଞାନ ଓ ମାର୍କସବାଦ ଅଧ୍ୟାପକ କୁଳମଣି ଜେନା ।




Source: Author, Digitized by PPRACHIN, SOA

# 'ପୁନଶ୍ଚ ହସ୍ତିନା' – କଥାସୃଷ୍ଟି : ଶିଳ୍ପୀଦୃଷ୍ଟୀ

ଭାରତବର୍ଷର ପ୍ରାଚୀନ ପରମ୍ପରା ଖୁବ୍ ମହାନ୍ ଓ ସୁଦୃଢ଼ । ପୁରାଣ ଇତିହାସଠାରୁ ଆରମ୍ଭ କରି ବେଦ-ବେଦାନ୍ତ, ଗୀତା ଉପନିଷଦ ଚର୍ଚ୍ଚାନିମିତ୍ତ ଏହି ଦେଶ ସମଗ୍ର ପୃଥିବୀରେ ଶ୍ରେଷ୍ଠସ୍ଥାନ ଅଧିକାର କରିଛି । ଆମ ଦେଶରେ କେଉଁ ସୁଦୂର ଅତୀତରୁ ମହାଭାରତ, ରାମାୟଣ, ଭାଗବତାଦି ପୁରାଣର ଅନୁରୂପ ଚର୍ଚ୍ଚା ରହିଆସିଛି । ଆମ ଦେଶରେ ପୁରାଣ ଚର୍ଚ୍ଚା ମୁଖ୍ୟତଃ ଦୁଇଟି ଦିଗରୁ ହୋଇଥାଏ । ଗୋଟିଏ – ଏହାର ଧର୍ମ ଓ ସଂସ୍କୃତିକୁ ନେଇ ଏବଂ ଅନ୍ୟଟି ପୁରାଣରେ ବର୍ଣ୍ଣିତ କଥା-କାହାଣୀକୁ ନେଇ । ଅତୀତରେ ପୁରାଣ ବର୍ଣ୍ଣିତ କଥା-କାହାଣୀ ହିଁ ଏହାକୁ ଜନପ୍ରିୟ କରିଥିଲା । ନିରକ୍ଷର ଜନତାଙ୍କର ପୁରାଣ ପ୍ରିୟ ହେବାରେ ଏହି କାହାଣୀଟି ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଆଜି ସମୟ ବଦଳିଛି । ସାହିତ୍ୟ ପୁରାଣ ମଧ୍ୟରେ ସୀମିତ ନ ରହି ବହୁ ଶାଖାପ୍ରଶାଖା ଯୁକ୍ତ ହୋଇ ମହୀରୁହରେ ପରିଣତ ହୋଇଛି । ଆମେ ଯେତେ ଆଧୁନିକ ହେଲେ ବି ଅତୀତକୁ ଭଲିପାରୁନାହୁଁ କଥାକଥାକେ ପୁରାଣର ଢ଼ଗଢ଼ମାଳି, ପୁରାଣର ଚିତ୍ର ଓ ଚରିତ୍ର ଆମର ଦୈନନ୍ଦିନ ଜୀବନକୁ ନିୟନ୍ତ୍ରିତ କରୁଛି । ଏହା ସାଂପ୍ରତିକ କାବ୍ୟ-କବିତାରେ ଯେପରି, ଉପନ୍ୟାସଠାରୁ ଆରମ୍ଭ କରି ପ୍ରବନ୍ଧ, ନାଟକ, କ୍ଷୁଦ୍ରଗଳ୍ପରେ ମଧ୍ୟ ସେହିପରି ପ୍ରତିଫଳିତ ହୋଇଛି । ସାଂପ୍ରତିକ ସମୟର ଆମ ସାହିତ୍ୟର ଜଣେ ଚର୍ଚ୍ଚିତ କାହାଣୀକାର ଓ କଥାଶିଳ୍ପୀ ପ୍ରଭାକର ସ୍ୱାଇଁଙ୍କର 'ପୁନଶ୍ଚ ହସ୍ତିନା' ଗଳ୍ପ ସଂକଳନ ମଧ୍ୟରେ ଆମେ ଏହାହିଁ ଅନୁଭବ କରିଥାଉ ।

'ପୁନଶ୍ଚ ହସ୍ତିନା' ହେଉଛି ସ୍ରଷ୍ଟାଙ୍କର ଦ୍ୱିତୀୟ ଗଳ୍ପ ସଂକଳନ । ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ଯଦା ଯଦା ହିଁ ଧର୍ମସ୍ୟ' ମଧ୍ୟରେ ସ୍ରଷ୍ଟା ମହାଭାରତର ଜନପ୍ରିୟ କାହାଣୀମାନଙ୍କର କଙ୍କାଳକୁ ଗ୍ରହଣ କରି ତାହାକୁ ପାଠକଙ୍କ ସମ୍ମୁଖରେ ଆଧୁନିକ ରୀତିରେ ଚମତ୍କାର ଗଳ୍ପରୂପ ପ୍ରଦାନ କରିଥିଲେ । ସ୍ରଷ୍ଟାଙ୍କର ସେହି ଜନପ୍ରିୟ କାହାଣୀମାନଙ୍କର ପରବର୍ତ୍ତୀ ରୂପରେଖ ଥିଲା ତାଙ୍କ ରଚିତ ଦ୍ୱିତୀୟ ଗଳ୍ପ ସଂକଳନ 'ପୁନଶ୍ଚ ହସ୍ତିନା' (୧୯୯୨) । ଓଡ଼ିଶା ବୁକ୍‌ଷ୍ଟୋର, କଟକ ପକ୍ଷରୁ ପ୍ରକାଶିତ ଏହି ଗଳ୍ପଗ୍ରନ୍ଥରେ ରହିଛି ମହାଭାରତର ଷୋଳଗୋଟି କାହାଣୀର ଆଧୁନିକୀ ଗଳ୍ପରୂପ, ଆରମ୍ଭ ହୋଇଛି 'ଗଙ୍ଗା ବୋଇଲେ ଥିବି' ଗଳ୍ପରୁ । ମହାଭାରତର ଆଦିପର୍ବରେ ଏକ ଚମତ୍କାର ଲୋକୋକ୍ତି ଅଛି – 'ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି ।' ଲୋକୋକ୍ତିଟି ଶାନ୍ତନୁ ଓ ଗଙ୍ଗାଙ୍କ ଦାମ୍ପତ୍ୟ ଜୀବନ



Source: Author, Digitized by PPRACHIN, SOA

ସହିତ ଜଡିତ । ଲୋକୋକ୍ତିକୁ ଆମ ପାଠକ ଜାଣନ୍ତି ସିନା, ମାତ୍ର ତାହାର ପଶ୍ଚାତ୍‌ଦେଶରେ ଥିବା କାହାଣୀ ସଂପର୍କରେ ଅନେକ ଅଜ୍ଞ । ସୁତରାଂ ଗଳ୍ପ ସ୍ରଷ୍ଟା ପ୍ରଭାକର ଆମର ସମକାଳୀନ ପାଠକଙ୍କୁ ପୁରାଣ ମନସ୍କ କରିବା ପାଇଁ ଶାନ୍ତନୁ ଓ ଗଙ୍ଗାଙ୍କ ସଂପର୍କିତ ସେହି ଲୋକୋକ୍ତିର ଚମତ୍କାର ତଥ୍ୟରୂପ ପ୍ରଦାନ କରିଛନ୍ତି ଏବଂ ଗଳ୍ପଟିର ଶିରୋନାମା ରଖିଛନ୍ତି 'ଗଙ୍ଗା ବୋଇଲେ ଥିବି' । ଗଳ୍ପ ଆରମ୍ଭ ହୋଇଛି ଖୁବ୍ ନାଟକୀୟ ଭଙ୍ଗୀରେ – "ବିବାହ ବେଦୀରେ ଗଙ୍ଗା ଓ ଶାନ୍ତନୁ । ଶିବଙ୍କ ପରିବର୍ତ୍ତେ ମହର୍ଷି ଶାନ୍ତନୁ । ଆଚମ୍ବିତ ହେଲେ ନିର୍ଘାତ ନନ୍ଦିନୀ । ଅସ୍ଥିର ହୋଇପଡିଲେ ଗଙ୍ଗାଦେବୀ । ହଠାତ୍ ପିତାଙ୍କ କୋଳରୁ ଉଠିପଡ଼ିଲେ ସେ ।" ଗଳ୍ପ ମଧ୍ୟରେ ଗଙ୍ଗା ଓ ଶାନ୍ତନୁଙ୍କୁ ନେଇ ଭୁଲ ବୁଝାବଣା ହୋଇଛି । ଯେତେବେଳେ ଗଙ୍ଗା ଜାଣିଛନ୍ତି ବିବାହ ବେଦୀରେ ତାଙ୍କୁ ବିବାହ କରିବାକୁ ଯାଉଥିବା ପୁରୁଷ ଶିବ ନୁହନ୍ତି – ଶାନ୍ତନୁ, ତାଙ୍କ ମୁଣ୍ଡ ଉପରେ ଆକାଶ ଖସିପଡ଼ିଛି ସତେଯେପରି । ଗଙ୍ଗାଙ୍କର ପିତା ନିର୍ଘାତ ଧର୍ମକୁ ସାକ୍ଷୀ ରଖି ତ୍ରିବାର ସତ୍ୟ କରିଛନ୍ତି ଗଙ୍ଗାଙ୍କୁ ଶାନ୍ତନୁଙ୍କ ହସ୍ତରେ ସମର୍ପଣ କରିବେ ବୋଲି । ଏହି ପ୍ରସଙ୍ଗରେ ଗଳ୍ପ ସ୍ରଷ୍ଟା ପ୍ରଭାକରଙ୍କର ଗଳ୍ପ ବର୍ଣ୍ଣନା ଖୁବ୍ ଚମତ୍କାର ।

''ଆଉ ଭାବିବାର ବେଳ ନାହିଁ ।''

ନିର୍ଘାତ କନ୍ୟା ଗଙ୍ଗାଙ୍କୁ ବହୁକଥା ବୁଝାଇଥିଲେ – "ଏଥିରେ ମୋର ବା ଦୋଷ କ'ଣ ପୁତ୍ରୀ । ତୋ'ର ସମ୍ମତିରେ ମୁଁ ରାଜର୍ଷି ଶାନ୍ତନୁଙ୍କ ସହିତ ତୋତେ ବିବାହ ଦେବାପାଇଁ ସତ୍ୟ କଲି । ବର୍ତ୍ତମାନ ସତ୍ୟ ରକ୍ଷା କରି ନପାରିଲେ ସତ୍ୟ ଭଗ୍ନ ଦୋଷରେ ମୁଁ ଯେ ଦୋଷୀ ହେବି । ବିଚଳିତ କଣ୍ଠରେ କହୁଥାନ୍ତି ରାଜା ନିର୍ଘାତ ।" (ପୃ-୧)

ଶାନ୍ତନୁ ଓ ଗଙ୍ଗାଙ୍କର ଦୁଃଖଦ ଦାମ୍ପତ୍ୟ ଜୀବନର କାହାଣୀ ସ୍ରଷ୍ଟାଙ୍କ ଲେଖନୀରେ ଖୁବ୍ ରସସିକ୍ତ ହୋଇ ପାଠକଙ୍କ ସମ୍ମୁଖରେ ପରିବେଷିତ ହୋଇଛି । ପୁଣି ସଦ୍ୟଜାତ ସନ୍ତାନମାନଙ୍କୁ ଗଙ୍ଗା ଗୋଟି ଗୋଟି କରି କଟୁରୀରେ ଖଣ୍ଡ ଖଣ୍ଡ କରି କାଟି ନଦୀରେ ଫୋପାଡିଦେବାର ବର୍ଣ୍ଣନା ଓ ଦୃଶ୍ୟ ସାରଳାଦାସଙ୍କ ଲେଖନୀ ଅପେକ୍ଷା ଆଧୁନିକୀ ଗଳ୍ପ ସ୍ରଷ୍ଟା ପ୍ରଭାକରଙ୍କ ଗଳ୍ପରେ ଅଧିକ ଜୀବନ୍ତ ଓ ହୃଦୟସ୍ପର୍ଶୀ ମନେହୋଇଛି ।

ସଂକଳନର ଦ୍ୱିତୀୟ ଗଳ୍ପ 'ଅଟଳ ପ୍ରତିଜ୍ଞା' । ଶାନ୍ତନୁଙ୍କର ତିନିଗୋଟି ସନ୍ତାନ । ପ୍ରଥମ ଓ ଦ୍ୱିତୀୟ ହେଉଛନ୍ତି ଯଥାକ୍ରମେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଏବଂ ତୃତୀୟ ସନ୍ତାନ ଗଙ୍ଗାଙ୍କ ଗର୍ଭସଂଜାତ ଭୀଷ୍ମ । ବିବାହର ବହୁବର୍ଷ ପର୍ଯ୍ୟନ୍ତ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଥିଲେ ଅପୁତ୍ରିକ । ସୋମବଂଶର ଉତ୍ତରାଧିକାରୀ ନିମିତ୍ତ ଶାନ୍ତନୁ ନିଜର ତୃତୀୟ ସନ୍ତାନ ଭୀଷ୍ମଙ୍କୁ ବିବାହ କରିବା ନିମିତ୍ତ ପ୍ରବର୍ତ୍ତାଇଛନ୍ତି । ସ୍ରଷ୍ଟାଙ୍କ ଭାଷାରେ – "ବହୁ ବେଳ ଭାବି ଭାବି ଏଥର ସେ ଏକ ନୂତନ ଉପାୟ ଚିନ୍ତା କରିଛନ୍ତି । ତାଙ୍କର ପୁତ୍ର ଭୀଷ୍ମଙ୍କୁ ବିବାହ ଦେଲେ ହୁଏତ ତାଙ୍କର ନିଜ ବଂଶ ରକ୍ଷା ହେବ । ଭୀଷ୍ମଙ୍କର ଉତ୍ତରାଧିକାରୀ ହେବ ସୋମବଂଶର ଅଧିପତି ।



Source: Author, Digitized by PPRACHIN, SOA

ସମ୍ମୁଖରେ ପୁତ୍ର ଭୀଷ୍ମ । ଶାନ୍ତନୁ ଆଉ ନିଜକୁ ବେଶୀବେଳ ଭାବିବାକୁ ଦେଲେନାହିଁ । ଭୀଷ୍ମଙ୍କୁ ଲକ୍ଷ୍ୟ କରି କହିଲେ – "ପୁତ୍ର ! ବିବାହ କରି ବଂଶ ରକ୍ଷା କର ।" (ପୃ-୧୦)

ଠିକ୍ ଏହିକାଳରେ ମହାରାଜ ପଦ୍ମନାଭ ନିଜର କନ୍ୟା ଅମ୍ବାଙ୍କ ନିମିତ୍ତ ସ୍ୱୟଂବର ସଭାର ଆୟୋଜନ କରିଛନ୍ତି । ଭୀଷ୍ମଙ୍କର ସେହି ସ୍ୱୟଂବର ସଭାକୁ ଆସିବାର ଖବର ପାଇବା ପରେ ଉପସ୍ଥିତ ପ୍ରାୟ ସମସ୍ତ ରାଜକୁମାର ଇତସ୍ତତଃ ହୋଇପଡିଛନ୍ତି । ରାଜକୁମାରମାନଙ୍କ ମଧ୍ୟରେ ଭୀତି ସଂଚାର ହୋଇଛି । ସେମାନେ ରାଜା ପଦ୍ମନାଭଙ୍କୁ ଲକ୍ଷ୍ୟ କରି କହିଛନ୍ତି – "ଭୀଷ୍ମଦେବଙ୍କୁ ଆମର ପ୍ରାଣ ଭୟ । ମହାରାଜ, କେଉଁ ରାଜାର ବା ସତ୍‌ସାହସ ଅଛି ଜଳନ୍ତା ଜୁଇରେ ଝାସଦେବ ? କହୁ କହୁ ନିମିଷକମଧ୍ୟରେ ସମସ୍ତ ରାଜା ସ୍ୱୟମ୍ବର ସଭାରୁ ଅନ୍ତର୍ଦ୍ଧାନ ହୋଇଗଲେ ।" (ପୃ-୧୩) ଆହୁରି ମଧ୍ୟ ସ୍ରଷ୍ଟାଙ୍କ ବର୍ଣ୍ଣନାରେ ପ୍ରକାଶ ପାଇଛି – "ବହୁ ଦେବଦେବୀଙ୍କୁ ସ୍ତୁତି କଲାପରେ ଭୀଷ୍ମଙ୍କ ମସ୍ତକରେ ମୁକୁଟ ବନ୍ଧାଗଲା । ତାଙ୍କ କଣ୍ଠରେ ନାନା ରତ୍ନମାଳା ପରିଶୋଭିତ ହେଲା । ସେ ନବ ଭୂଷଣ ପରିଧାନ କଲେ । ଦଧି ଓ ମାଛର ଅନୁକୂଳ ଯୋଗ ଦେଖି ଗଣିକାମାନେ ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ କଲେ । ଏତିକିବେଳେ ଦଧିବାମନଙ୍କୁ ସ୍ମରଣ କରି ପଦ୍ମନାଭ ରାଜ୍ୟକୁ ଯିବା ପାଇଁ ପ୍ରସ୍ତୁତ ହେଉଥାନ୍ତି ଭୀଷ୍ମଦେବ ।" (ପୃ-୧୪) ମାତ୍ର ଶେଷବେଳକୁ ଶାନ୍ତନୁଙ୍କର ସବୁ ସ୍ୱପ୍ନ ଧୂଳିରେ ମିଶିଯାଇଛି । ମନେପଡିଛି ଭୀଷ୍ମଙ୍କର ଅତୀତର ଶପଥ । ସେ ଶପଥ କରିଥିଲେ ପିତାଙ୍କର ପ୍ରାଣରକ୍ଷା ନିମିତ୍ତ ବିବାହ କରିବେନାହିଁ । ତେଣୁ ସେ ପ୍ରକାଶ କରିଛନ୍ତି - "ମହାଭାଗ ! ପିତାଙ୍କ ବିନା ମୁଁ କାହିଁକି ବିବାହ କରିବି ? ପିତାଙ୍କ ପାଇଁ ପୁତ୍ର ହିଁ ଧର୍ମ କାର୍ଯ୍ୟ କରନ୍ତି । ପିତା ବଂଶ ରକ୍ଷା ନିମିତ୍ତ ପୁତ୍ର କାମନା କରନ୍ତି । ମାତ୍ର ମୋର ପୁତ୍ର ଜାତ ହେଲେ ଯଦି ପିତାଙ୍କର ବିନାଶ ହୁଏ, ତେବେ ମୋର ବିବାହରେ କି ଧର୍ମ ହେବ ! ତେଣୁ ଏ ବିବାହରେ ବା କ'ଣ ପ୍ରୟୋଜନ । ସେଥିପାଇଁ ମୁଁ ସମସ୍ତ ମୋହମାୟା ତ୍ୟାଗ କରି ତ୍ରିବାର ସତ୍ୟ କରୁଛି – ମୋର ଜୀବଦ୍ଦଶାରେ ମୁଁ ବିବାହ କରିବି ନାହିଁ କି ମୋର ପୁତ୍ର ସନ୍ତାନ ଜାତ ହେବନାହିଁ । ମୁଁ ଚିରକୁମାର ରହିବି – ଏହା ମୋର ଅଟଳ ପ୍ରତିଜ୍ଞା ।" (ପୃ-୧୫) ଚମତ୍କାର ନାଟକୀୟତା ମଧ୍ୟରେ ସ୍ରଷ୍ଟା ଗଳ୍ପଟିର ପରିସମାପ୍ତି ଘଟାଇଛନ୍ତି ।

ଆଲୋଚ୍ୟ ସଂକଳନର ତୃତୀୟ ଗଳ୍ପ 'ଅମ୍ବା' ଗଳ୍ପସ୍ରଷ୍ଟା ପ୍ରଭାକର ସଂସାର କିପରି ସତ୍ୟ ଉପରେ ପ୍ରତିଷ୍ଠିତ ତାହା ଭୀଷ୍ମ ଚରିତ ମାଧ୍ୟମରେ ପ୍ରତିପାଦିତ କରିଛନ୍ତି । ପର୍ଶୁରାମଙ୍କର ଭୀଷ୍ମଙ୍କୁ ଅନୁରୋଧ, ଶେଷରେ ନିର୍ଦ୍ଦେଶ ଏପରିକି ଭୀଷ୍ମଙ୍କ ଉପରେ କ୍ରୋଧାନ୍ୱିତ ହୋଇ ତାଙ୍କୁ ସେ ଅଭିଶାପ ଦେବାକୁ ଧମକ ଦେଇଥିଲେ ବି ଭୀଷ୍ମ ନିଜ ସତ୍ୟ ଓ ଶପଥରୁ ତିଳେହେଲେ ବିଚ୍ୟୁତ ହୋଇନଥିଲେ । ବରଂ ରାଜା ପଦ୍ମନାଭ ଓ ପର୍ଶୁରାମଙ୍କ ସମେତ ଶାନ୍ତନୁ, ପରାଶର, ଭୁରିଶ୍ରବା ପ୍ରଭୃତିଙ୍କ କଥାକୁ ବିନମ୍ରତାର ସହିତ ସେ ଅସ୍ୱୀକାର କରି କହିଥିଲେ – "ସଂସାର ସତ୍ୟରେ ତିଷ୍ଠି ରହିଛି । ସତ୍ୟଭଙ୍ଗ କଲେ ପ୍ରାଣୀମାନେ ନର୍କଗତି



Source: Author, Digitized by PPRACHIN, SOA

ପାଆନ୍ତି । ମୁଁ ପିତାଙ୍କ ନିମିତ୍ତ ସତ୍ୟ କରିଅଛି । ଆପଣମାନେ କାହିଁକି ମୋତେ ସତ୍ୟଭ୍ରଷ୍ଟ କରାଉଛନ୍ତି ?"(ପୃ-୧୮) ଶେଷରେ ଭୀଷ୍ମଙ୍କ ଉପରେ ନରହତ୍ୟା ଦୋଷ ଲଦିଦେଇ ଅମ୍ବାଙ୍କୁ ପ୍ରୟାଗ ତୀର୍ଥରେ ଝାସ ଦେବାକୁ ପଡିଥିଲା ।

ବେଳେବେଳେ ସମାଜରେ ଏମିତି ଅଘଟଣମାନ ଘଟେ, ଯେଉଁ କଥା କାଳକାଳକୁ ସ୍ମୃତି ହୋଇ ରହିଯାଏ । ମହାଭାରତରେ ସୋମବଂଶର ଉତ୍ତରାଧିକାରୀ ନିମିତ୍ତ ସେହିପରି ଘଟଣାମାନ ଘଟିଥିଲା । ଭୀଷ୍ମ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ଦାରା ଗ୍ରହଣ କରିବାକୁ ନାସ୍ତିବାଣୀ ଶୁଣାଇବାରୁ ପରାଶର ବ୍ୟସ୍ତ ହୋଇ ଯେକୌଣସି ଉପାୟରେ ବଂଶରକ୍ଷା କରିବା ପାଇଁ ସତ୍ୟବତୀଙ୍କୁ କହିଲେ – "ସତ୍ୟବତୀ ! ଅମ୍ବିକା ଓ ଅମ୍ବାଳିକା । ବଧୂଦ୍ୱୟଙ୍କ ପୁତ୍ର ସନ୍ତାନ ଜାତ ନିମିତ୍ତ ବ୍ୟାସଦେବଙ୍କ ନିକଟକୁ ପ୍ରେରଣ କର । ମହର୍ଷି ବ୍ୟାସଦେବ ତାଙ୍କୁ ରମଣ କରି ସୋମବଂଶ ରକ୍ଷା କରନ୍ତୁ ।"(ପୃ-୨୩) ସତ୍ୟବତୀ ପୁତ୍ର ବ୍ୟାସଦେବଙ୍କୁ ଅନୀତିକର କାର୍ଯ୍ୟ ପାଇଁ ବାରମ୍ବାର ପ୍ରବର୍ତ୍ତାଇଥିଲେ । ଏପରିକି ଦୁଇ ଭାଇବୋହୂ ଅମ୍ବିକା ଓ ଅମ୍ବାଳିକାଙ୍କ ସହିତ ଅନୈତିକ ସଂପର୍କ ଯୋଡ଼ିବାକୁ ସେ ବାଧ୍ୟ କରିଥିଲେ । ସେ କାଳରେ ବି ସମାଜରେ ଉତ୍ତରଦାୟାଦ ନିମିତ୍ତ ଏହିପରି ଅନୀତିକୁ ପ୍ରଶ୍ରୟ ଦିଆଯାଉଥିଲା । ରାଜନନ୍ଦିନୀମାନେ ପଥଚ୍ୟୁତ ହେଉଥିଲେ । ସ୍ରଷ୍ଟାଙ୍କ ଭାଷାରେ – "ବ୍ୟାସଦେବଙ୍କର ଅପରୂପ ସୌନ୍ଦର୍ଯ୍ୟ ଓ ଅପୂର୍ବ ବ୍ୟକ୍ତିତ୍ୱର ପରିଚୟ ପାଇ ଅମ୍ବିକା ଓ ଅମ୍ବାଳିକାଙ୍କ ମନରେ ତାଙ୍କ ପ୍ରତି ଆସକ୍ତି ଜାତ ହୋଇଛି । ମୁହଁକୁ ଟିକେ ତଳକୁ କରି ଲାଜ ଲାଜ ହୋଇ ଦୁହେଁ ସମ୍ମତି ପ୍ରଦାନ କରିଛନ୍ତି ବ୍ୟାସଙ୍କ ସହ ମିଳନ ପାଇଁ । ନିଜର ନାରୀତ୍ୱର ଚରିତାର୍ଥ, କାମପିପାସାର ପରିତୃପ୍ତି ଓ ସୋମବଂଶର ଉତ୍ତର ପୁରୁଷ ନିମିତ୍ତ ଆଜି ରାଜନନ୍ଦିନୀ ମଧ୍ୟ ପଥଚ୍ୟୁତ ।" (ପୃ-୨୭) ଅମ୍ବିକାଙ୍କ ସହିତ ବ୍ୟାସଦେବଙ୍କ ଅନୈତିକ ମିଳନ ଓ ଧୃତରାଷ୍ଟ୍ରଙ୍କ ପରି ଏକ ଚକ୍ଷୁହୀନ ସନ୍ତାନର ଜନ୍ମ ସହିତ ଅମ୍ବାଳିକାଙ୍କ ସହିତ ତାଙ୍କର ମିଳନ ଏବଂ ପଣ୍ଡୁଙ୍କର ଜନ୍ମକୁ ଚମତ୍କାର ରୀତିରେ ପ୍ରକାଶ କରି ଗଳ୍ପ ସ୍ରଷ୍ଟା ସଂକଳନର 'ସୋମବଂଶର ସୂର୍ଯ୍ୟୋଦୟ' ଗଳ୍ପର ପରିକଳ୍ପନା କରିଛନ୍ତି । ଗଳ୍ପର ପ୍ରାରମ୍ଭରେ "ଘନ ଅନ୍ଧକାର ରଜନୀ । ରାତ୍ର କେତେଘଡ଼ି ହେବ କିଛି ଜାଣିହେଉନି । ନିଶା ସାଇଁ ସାଇଁ ଗର୍ଜୁଛି । ଚତୁର୍ଦ୍ଦିଗ ଶୁନ୍‌ଶାନ୍ । ଏତିକିବେଳେ ବ୍ୟାସଦେବଙ୍କ ସହିତ ଅମ୍ବିକା ଭୁବନରେ ପ୍ରବେଶ କଲେ ସତ୍ୟବତୀ ।" (ପୃ-୨୮) ବର୍ଣ୍ଣନା ମଧ୍ୟରେ ପାଠକୀୟ ଉତ୍କଣ୍ଠା ଅତ୍ୟନ୍ତ ସ୍ୱଷ୍ଟ ଭାବରେ ପ୍ରକାଶ ପାଇଛି । ସୂର୍ଯ୍ୟୋଦୟର ପୂର୍ବାବସ୍ଥା ଅନ୍ଧକାର । ଅନୁରୂପ ଭାବେ ସୋମବଂଶର ସୂର୍ଯ୍ୟୋଦୟ ପୂର୍ବରୁ ଅନୀତି ରୂପକ କୁକାର୍ଯ୍ୟ ସୃଷ୍ଟି ହୋଇଛି । ସ୍ରଷ୍ଟା ସେହି ଦୃଷ୍ଟିରୁ ଅନ୍ଧକାର ପରେ ଆଲୋକର ଆଗମନ ପରି ଗଳ୍ପକୁ 'ସୋମବଂଶର ସୂର୍ଯ୍ୟୋଦୟ' ଭାବରେ ନାମିତ କରିଛନ୍ତି ।

ଧୃତରାଷ୍ଟ୍ର କୃତ୍ତିକା ଯୋଗରେ ଜନ୍ମ, ବ୍ରହ୍ମରାକ୍ଷସ, ପୁଣି ଜନ୍ମାନ୍ଧ । ମାତ୍ର ସତ୍ୟବତୀ ତାଙ୍କର ବିବାହ ପାଇଁ ବ୍ୟସ୍ତ ଓ ବିବ୍ରତ । ଧୃତରାଷ୍ଟ୍ରଙ୍କ ଯୁବାବସ୍ଥାରେ ତାଙ୍କ ନିମିତ୍ତ ବହୁ



Source: Author, Digitized by PPRACHIN, SOA

ବିବାହ ପ୍ରସ୍ତାବ ଆସିଛି । ନରପତି ଶାଲ୍ୱ କନ୍ୟାଠାରୁ ଆରମ୍ଭ କରି ଗଣପତି ମହାରାଜାଙ୍କ କନ୍ୟା ଶରଧୃତି, କର୍ଣ୍ଣମାଧବଙ୍କ କନ୍ୟା ପର୍ଯ୍ୟନ୍ତ । ଏକ ଏକ ହୋଇ ଆସିଥିବା ବାଇଶିଗୋଟି ପ୍ରସ୍ତାବରେ ସମସ୍ତ ବାଇଶିଜଣ କନ୍ୟା ମୃତ୍ୟୁମୁଖରେ ପଡ଼ିଛନ୍ତି । ପତ୍ନୀହରା ହୋଇ ଭାଙ୍ଗିପଡିଛନ୍ତି ଧୃତରାଷ୍ଟ୍ର । ଧୃତରାଷ୍ଟ୍ରଙ୍କର ଏହି ଭାବନା ସ୍ରଷ୍ଟାଙ୍କ ଲେଖନୀରେ ଏହିପରି ପ୍ରକାଶ ପାଇଛି – "ପୂର୍ବପରି ପତ୍ନୀହରା ହୋଇ ଧୃତରାଷ୍ଟ୍ର ଭାଙ୍ଗିପଡ଼ିଲେ । ତାଙ୍କ ମସ୍ତକରେ ଅକାଳ ବଜ୍ର ପଡ଼ିବା ପରି ସେ ଅନୁଭବ କଲେ । ଗୋଟି ଗୋଟି ହୋଇ ଅନେକ ରାଜକନ୍ୟା ବିବାହ ସମୟରେ ସ୍ୱର୍ଗଗାମୀ ହେବାରୁ ଆଉ କେହି ରାଜା ମହାରାଜା ଧୃତରାଷ୍ଟ୍ରଙ୍କୁ ତାଙ୍କର କନ୍ୟା ବିବାହ ଦେବାପାଇଁ ରାଜି ହେଲେନାହିଁ । ତା'ହେଲେ କି ଭାଗ୍ୟ ନେଇ ଜନ୍ମ ହୋଇଥିଲେ ଧୃତରାଷ୍ଟ୍ର ! ଜନ୍ମ କାଳରେ ମାତା ଅମ୍ବିକା ନାଶ ଗଲେ । ମାତୃହରା ବି ଏବେ ପତ୍ନୀହରା ହେଲେ । ଭାଗ୍ୟର କି ବିଡମ୍ବନା ! ! !" (ପୃ-୩୭) ଧୃତରାଷ୍ଟ୍ରଙ୍କ ଭାଗ୍ୟର ଏହିପରି ବିଡ଼ମ୍ବନାକୁ ସ୍ରଷ୍ଟା ଖୁବ୍ ଚମତ୍କାର ରୀତିରେ ଆଲୋଚ୍ୟ 'ଭାଗ୍ୟର ବିଡ଼ମ୍ବନା' ଗଳ୍ପରେ ପ୍ରକାଶ କରିଛନ୍ତି ।

ଆମ ସମାଜରେ ପ୍ରଚଳିତ 'ଉଆଁସୀ କନ୍ୟାକୁ ସାହାଡ଼ା ବର' ପରି ଜନପ୍ରିୟ ଲୋକୋକ୍ତି ଭିତ୍ତିରେ ସ୍ରଷ୍ଟାଙ୍କର ଆଲୋଚ୍ୟ ସଂକଳନର ପରବର୍ତ୍ତୀ ଗଳ୍ପ 'ଅପୂର୍ବ ମିଳନ'ର ପରିକଳ୍ପନା । ଗାନ୍ଧାର ରାଜ୍ୟର ରାଜନନ୍ଦିନୀ ଗାନ୍ଧାରୀ । ମାତ୍ର ସେ ଅମାବାସ୍ୟା ତିଥିରେ ଜନ୍ମ – ବ୍ରହ୍ମରାକ୍ଷସୀ । ତାଙ୍କର ବିବାହ ପ୍ରସ୍ତାବ ଆସିବାମାତ୍ରେ ଗୋଟି ଗୋଟି ହୋଇ ବାଇଶିଗୋଟି ରାଜପୁତ୍ର ମୃତ୍ୟୁମୁଖରେ ପଡ଼ିଛନ୍ତି । ପିତା ଗାନ୍ଧାରସେନ ସେଥିନେଇ ଖୁବ୍ ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଛନ୍ତି । ଗାନ୍ଧାରୀଙ୍କର ବ୍ୟସ୍ତତାକୁ ନେଇ ଗଳ୍ପସ୍ରଷ୍ଟା ପ୍ରଭାକର ଆଲୋଚ୍ୟ ଗଳ୍ପର ପ୍ରାରମ୍ଭରେ ଏକ ଅନୁକୂଳ ନାଟକୀୟ ପରିବେଶ ପରିକଳ୍ପନା କରିଛନ୍ତି । "କନ୍ୟାର ଏପରି ଦୁରବସ୍ଥା ପାଇଁ ଗଭୀର ଦୁଃଖରେ ମ୍ରିୟମାଣ ପିତା ଗାନ୍ଧାରସେନ । ଗାନ୍ଧାରୀଙ୍କ ଦୁଃଖ ଝୁରି ଝୁରି ସେ ମୂର୍ଚ୍ଛା ଗଲେ । ମନ୍ତ୍ରୀ ବିକ୍ରୟସେନ ତାଙ୍କୁ କୋଳକୁ ନେଇ ସାଷ୍ଟମ କରାଇଲେ । ନିକଟରେ ଉପସ୍ଥିତ ଥିଲେ ବ୍ୟାସଦେବ । ଗାନ୍ଧାରସେନଙ୍କର ଏହି କରୁଣ ଅବସ୍ଥା ଆଉ ସେ ସହ୍ୟ କରିନପାରି କହିଲେ – "ବ୍ୟଥିତ ହୁଅନ୍ତୁ ନାହିଁ ଗାନ୍ଧାରସେନ । ଗାନ୍ଧାରୀର ରିଷ୍ଟ ଖଣ୍ଡନ ପାଇଁ ଉପାୟ ଅଛି । ଗୋଲକ ବୃକ୍ଷ ହେଉଛି କଳ୍ପବୃକ୍ଷ । ଏହି ବୃକ୍ଷ ମହାପାତକର ବିନାଶକ । ପ୍ରଜାପତି ଏହାକୁ ସୃଷ୍ଟି କରିଛନ୍ତି । କନ୍ୟାର ରିଷ୍ଟ ଥିଲେ, ଏହି ବୃକ୍ଷ ସହିତ ତାକୁ ବିବାହ ଦେଇ ତାହା ମୋଚନ କରାଯାଇଥାଏ ।" (ପୃ-୩୮) ଗାନ୍ଧାରସେନ ଓ ବ୍ୟାସଦେବଙ୍କର କଥୋପକଥନ ସହିତ ବ୍ୟାସଦେବ ସାହାଡ଼ା ପତ୍ର ମାହାତ୍ମ୍ୟ ଏବଂ ଗୋଲକ ବୃକ୍ଷକୁ ଗାନ୍ଧାରୀଙ୍କ ସହିତ ବିବାହ ଦେଇ ତାର ରିଷ୍ଟ ଖଣ୍ଡନ କରିବାକୁ ପରାମର୍ଶ ଦେଇଛନ୍ତି । ବର୍ଣ୍ଣିତ ଗଳ୍ପ ମଧ୍ୟରେ ଗଳ୍ପ ସ୍ରଷ୍ଟା ପ୍ରକାଶ କରିଛନ୍ତି – "କହୁ କହୁ ଗାନ୍ଧାରସେନଙ୍କ ସହିତ ବ୍ୟାସଦେବ ରାଜପ୍ରାସାଦ ମଧ୍ୟକୁ ପ୍ରବେଶ କଲେ ଓ ରାଜନଅରରେ ଥିବା ଗୋଲକ ବୃକ୍ଷକୁ ବର ବେଶରେ



Source: Author, Digitized by PPRACHIN, SOA

ସଜ୍ଜିତ କରାଇଲେ । ଗାନ୍ଧାରୀ ମଧ୍ୟ ବଧୂ ବେଶଭୂଷା ପରିଧାନ କଲେ । ମଙ୍ଗଳ ବାଦ୍ୟ ବାଜିଉଠିଲା । ମୁନିଋଷିମାନେ ତାଙ୍କର କୁଳ ଗୋତ୍ର ଉଚ୍ଚାରଣ କରି ଗାନ୍ଧାରୀର ହସ୍ତ ସହିତ ଗୋଲକ ବୃକ୍ଷ ଡ଼ାଳ ଆଣି କୁଶ ବନ୍ଧନ କଲେ । ମାତ୍ର ଗାନ୍ଧାରୀଙ୍କ ହସ୍ତଗଣ୍ଠି ପଡିବା କ୍ଷଣି ବୃକ୍ଷଟି ତତ୍‌କ୍ଷଣାତ ମୃତ୍ୟୁବରଣ କଲା । ଏହା ଦେଖି ବ୍ୟାସମୁନି ଚକିତ ହୋଇପଡ଼ିଲେ । ଗାନ୍ଧାରସେନ ମଧ୍ୟ ବିରସରେ ଭାଙ୍ଗିପଡିଲେ । ଗାନ୍ଧାରସେନଙ୍କୁ ଭାଙ୍ଗିପଡ଼ିବାର ଦେଖି ବ୍ୟାସଦେବ କହିଲେ - "ତୁମେ କିଛି ଚିନ୍ତା କରନା ଗାନ୍ଧାରସେନ । ଏଇଠି ଗାନ୍ଧାରୀର ସର୍ବାରିଷ୍ଟ ଖଣ୍ଡନ ହୋଇଗଲା ।"(ପୃ-୪୧/୪୨)

ଗାନ୍ଧାରୀଙ୍କର ଗୋଲକ ବୃକ୍ଷକୁ ବିବାହ କରିବା ପରେ ତାଙ୍କର ରିଷ୍ଟ ଖଣ୍ଡନ ହୋଇଥିଲା । ଫଳତଃ ଧୃତରାଷ୍ଟ୍ରଙ୍କ ସହିତ ତାଙ୍କର ଚବିଶିତମ ବିବାହ ହେଲା । "ଶଙ୍ଖ ହୁଳହୁଳିରେ ହସ୍ତିନାର ଗଗନ ପବନ ପ୍ରକମ୍ପିତ ହେଲା । ବ୍ରହ୍ମ ଅସୁର ସହ ବ୍ରହ୍ମ ଅସୁରୀର ମିଳନ । ଏହା ଏକ ଅପୂର୍ବ ମିଳନ । ଦାମ୍ପତ୍ୟ ଜୀବନର ଅୟମାରମ୍ଭ । ପ୍ରୀତିର ଉଜାଣି ଯମୁନାରେ ଉଭୟ ଜୁଡୁଜୁଡୁ ।"(ପୃ-୪୨)

ଯୁବାବସ୍ଥା ଓ ଯୁବାମନ ବଢ଼ିଲା ନଦୀଧାର ପରି । ସ୍ଥାନ, କାଳ ଓ ପରିସ୍ଥିତିର ବିଚାରଭେଦ ନ ରହିଲେ ଏବଂ ବିବେକାନୁମୋଦିତ ନହେଲେ ଏହି କାଳରେ ନାନା ଅଘଟଣ ଘଟିବାର ସମ୍ଭାବନା ରହିଥାଏ । ସଂକଳନର ଆଲୋଚ୍ୟ ଗଳ୍ପ 'ରାଧେୟ' ମଧ୍ୟରେ କୁନ୍ତଭୋଜଙ୍କ କନ୍ୟା କୁନ୍ତୀଙ୍କର ଆଦ୍ୟ ଯୌବନରେ ଆମେ ଏହି ଭାବ ହିଁ ଲକ୍ଷ୍ୟ କରିଥାଉ । ଗଳ୍ପ ସ୍ରଷ୍ଟା ପ୍ରଭାକରଙ୍କ ଭାଷାରେ – "ବାଲ୍ୟାବସ୍ଥାରେ ସେ ମହର୍ଷି ଦୁର୍ବାସାଙ୍କୁ ତପ କରି ତାଙ୍କଠାରୁ ମହାମନ୍ତ୍ର ଶୟନ କାଳରେ ସେ ଜପାମାଳି ଧରି ସ୍ମରଣ କରିବେ,ତାହାଙ୍କ ସଂସ୍ପର୍ଶରେ ଆସିଲେ କୁନ୍ତୀଙ୍କ ଗର୍ଭରୁ ପୁତ୍ର ସନ୍ତାନ ଜାତ ହେବ ।" (ପୃ-୪୩) କୁନ୍ତୀ କୌତୂହଳୀ ହୋଇ ଦୁର୍ବାସାଙ୍କ ଜପାମାଳିର ମାହାତ୍ମ୍ୟ ଜାଣିବା ପାଇଁ ଯମୁନା ତଟରେ ଶାଳପତ୍ରର ଶଯ୍ୟାଟିଏ ପ୍ରସ୍ତୁତ କରି ଜପାମାଳିର ମହାମନ୍ତ୍ରରେ ସୂର୍ଯ୍ୟଦେବଙ୍କୁ ସ୍ମରଣ କରିଥିଲେ । ଫଳତଃ ସୂର୍ଯ୍ୟଦେବଙ୍କ ଆସନ ପ୍ରକମ୍ପିତ ହୋଇଥିଲା । ସୂର୍ଯ୍ୟଦେବ ନିଜ ଆସନରୁ ତତ୍‌କ୍ଷଣାତ ଆସି କୁନ୍ତୀଙ୍କ ନିକଟରେ ଉପନୀତ ହୋଇ ତାଙ୍କ ସହିତ ମିଳିତ ହୋଇଯାଇଥିଲେ । ଉଭୟଙ୍କ ମିଳନରୁ ଜନ୍ମ ନେଇଥିଲା କର୍ଣ୍ଣ । ମାତ୍ର କୁନ୍ତୀ ଅବିବାହିତା ଥିବାରୁ ସେ କର୍ଣ୍ଣମାର୍ଗ ଦେଇ କର୍ଣ୍ଣଙ୍କୁ ଜନ୍ମ ଦେଇଥିଲେ । ଶିଶୁପୁତ୍ରର ନାମ ସୂର୍ଯ୍ୟଦେବ କର୍ଣ୍ଣ ରଖିଥିଲେ । ମାତ୍ର ଅବିବାହିତା ଅବସ୍ଥାରେ ସନ୍ତାନବତୀ କୁନ୍ତୀ ନବଜାତ ଶିଶୁପୁତ୍ରକୁ ଲୋକଲଜ୍ଜା ହେତୁ ପିତୃଗୃହକୁ ନ ଆଣି ସେହି ଯମୁନା ତଟରେ ଭସାଇ ଦେଇଥିଲେ । ତାହା ଅକସ୍ମାତ୍ ସଂଜୟଙ୍କର କନ୍ୟା ରାଧାଙ୍କ ଦୃଷ୍ଟିରେ ପଡ଼ିଥିଲା । ରାଧା ଏପରି ଏକ ତେଜୋଦୀପ୍ତ ଶିଶୁପୁତ୍ରକୁ ଦେଖି ନିଜ ପୁରକୁ ନେଇଆସିଥିଲେ ଓ ସେହି ପୁତ୍ରର ନାମ



Source: Author, Digitized by PPRACHIN, SOA

ରଖିଥିଲେ 'ରାଧେୟ' । ପ୍ରତୀକାତ୍ମକ ଭାବରେ ଗଳ୍ପସ୍ରଷ୍ଟା ଏହି ପ୍ରସଙ୍ଗରୁ ହିଁ ଗଳ୍ପର ନାମ ଚୟନ କରିଛନ୍ତି ।

ଥରେ ପଣ୍ଡିତ ସଭାରେ ଦୁର୍ଯ୍ୟୋଧନ ଭୀମକୁ ପବନ ସୁତ କହି ଅପମାନିତ କରିବାରୁ ତା'ର ପ୍ରତିବାଦ ସହିତ ପ୍ରତିଶୋଧ ପରାୟଣ ହୋଇ ପରଦିନ ଦୁର୍ଯ୍ୟୋଧନଙ୍କୁ ସେ 'ଗୋଲକ ପୁତ୍ର' ଭାବେ ସମ୍ବୋଧନ କରିଥିଲା । ଏଥିରେ ଭୀମଙ୍କ ସମେତ ମାତା ଗାନ୍ଧାରୀଙ୍କ ପିତୃପକ୍ଷ ଗାନ୍ଧାରସେନ ଓ ତାଙ୍କ ବଂଶଧରଙ୍କ ଉପରେ ପ୍ରତିହିଂସାପରାୟଣ ହୋଇଉଠିଥିଲେ ଦୁର୍ଯ୍ୟୋଧନ । ଏଥିପାଇଁ ଏକ ପ୍ରସ୍ତର ଗୃହ ନିର୍ମାଣ କରି ତହିଁରେ ଗାନ୍ଧାରସେନ ଓ ତାଙ୍କ ବଂଶଧରଙ୍କୁ ଦୁର୍ଯ୍ୟୋଧନ ବିନାଖାଦ୍ୟରେ ଶୁଖାଇ ଶୁଖାଇ ମାରିଥିଲେ । ଏକାକୀ ବଂଚି ରହିଥିଲା ଦୁର୍ଯ୍ୟୋଧନଙ୍କର ମାମୁ ତଥା ଗାନ୍ଧାରୀଙ୍କର ଭ୍ରାତା ଶକୁନି । ସେ ନିଜ ପିତାଙ୍କ ଅସ୍ଥିରେ ପଶାକାଠି ପ୍ରସ୍ତୁତ କରି କୁରୁପାଣ୍ଡବଙ୍କ ମଧ୍ୟରେ କଳିର ମଂଜି ପୋତିବା ସହିତ ଭାରତ ଯୁଦ୍ଧର ହେତୁ ପାଲଟିଥିଲା । ମହାଭାରତର ଏହିପରି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଗଳ୍ପକାର ପ୍ରଭାକର କଥ୍ୟ ରୀତିରେ ଆଧୁନିକତାର ଛାପ ଦେଇ ଗାନ୍ଧାରସେନ, ଦୁର୍ଯ୍ୟୋଧନ, ଶକୁନି ପ୍ରଭୃତି ଚରିତ୍ର ମାଧ୍ୟମରେ ଗଳ୍ପକଳାର ଛାଞ୍ଚରେ ଢ଼ାଳି ସମକାଳର ସମାଜବ୍ୟବସ୍ଥା ପରିପ୍ରେକ୍ଷୀରେ ଯେପରି ପ୍ରତିହିଂସାର ସ୍ୱରୂପ ବ୍ୟାଖ୍ୟା କରିଛନ୍ତି ତାହା ବାସ୍ତବରେ ହୃଦ୍ୟ ।

ସ୍ରଷ୍ଟାଙ୍କର 'ଗୁରୁ ଶିଷ୍ୟ' ଗଳ୍ପର ବିଷୟ ମହାଭାରତର ଗୁରୁ ଦ୍ରୋଣାଚାର୍ଯ୍ୟ ଓ ଜାରାଶବରଙ୍କୁ ନେଇ ପରିକଳ୍ପିତ । ଯୁଗେ ଯୁଗେ ସଂସାରର ମାଂସଲୋଭୀ ମନୁଷ୍ୟମାନଙ୍କର ବିଷଦୃଷ୍ଟିର ଶରବ୍ୟ ହୁଅନ୍ତି ଅବଳା ଦୁର୍ବଳାମାନେ । ଏହିପରି ଘଟଣା ଘଟିଛି ଶବର ଜାରାର ସ୍ତ୍ରୀ ଶିରିଆର ଭାଗ୍ୟରେ । ଶବର କୁଳରେ ଜାତ ହୋଇଥିଲେ ହେଁ ସେ ଅପରୂପ ସୌନ୍ଦର୍ଯ୍ୟମୟୀ । ମାତ୍ର ଦୁଃଶାସନ ସହିତ ତାର ଭ୍ରାତାମାନଙ୍କର ଲୋଲୁପ ଦୃଷ୍ଟିର ଶିକାର ହୋଇଛି ଶିରିଆ । ଜାରା ଏସବୁ ଜାଣିଲା ପରେ ତାର ଦୃଢ଼ ପ୍ରତିବାଦ କରିଛି । ଗୁରୁ ଦ୍ରୋଣଙ୍କ ନାମ ଉଚ୍ଚାରଣ କରି ପତ୍ନୀ ଶିରିଆକୁ ରକ୍ଷା କରିବାକୁ ସେ ପ୍ରୟାସୀ ହୋଇଛି । ଲେଖକଙ୍କ ଭାଷାରେ – "ଜାରା ଜାତିରେ ଶବର । ହାତରେ ତାର ଧନୁ ଓ ତୀର । ସ୍ୱହସ୍ତରେ ଧନୁ ତୀର ଥିବାଯାଏ ତା'ର ନିଜ ଉପରେ ଗଭୀର ଆତ୍ମବିଶ୍ୱାସ । ଦୁଃଶାସନର ଅପମାନ ଜାରାର କର୍ଣ୍ଣପଟଳରେ ପ୍ରତିଧ୍ୱନିତ ହେଉଥାଏ । ସେହି ଘୋର ଅପମାନର ପ୍ରତିଶୋଧ ନେବା ସହିତ ଶିରିଆକୁ ମହାବିପଦରୁ ରକ୍ଷା କରିବାକୁ ଯାଇ ସେ ସଙ୍ଗେ ସଙ୍ଗେ ଗୁରୁନାମ ସ୍ମରଣ କରି ଶର ନିକ୍ଷେପ କଲା ; ଏଥର କୁରୁବୀରମାନଙ୍କ ଉଦ୍ଦେଶ୍ୟରେ ଧନୁରୁ ତୀରଗୁଡ଼ିକ ଛୁଟି ଚାଲିଲା । ଜାରାର ଶରାଘାତରେ କୁରୁବୀରମାନେ ମୁହୂର୍ତ୍ତକ ମଧ୍ୟରେ ଟଳିପଡ଼ିଲେ । ରୁଧିର ନଦୀରୂପ ଧାରଣ କଲା ।"(ପୃ-୫୮) ଅନ୍ୟ ପକ୍ଷରେ କୌରବଭ୍ରାତାଙ୍କୁ ଚାହିଁ ଚାହିଁ ଦ୍ରୋଣାଚାର୍ଯ୍ୟ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ । ବନଭୂମିରେ ଯାହା ଦେଖିଲେ



Source: Author, Digitized by PPRACHIN, SOA

ସେଥିରେ ସେ ବିଚଳିତ ହୋଇପଡ଼ିଲେ । ଅର୍ଜ୍ଜୁନଙ୍କୁ ନିର୍ଦ୍ଦେଶ ଦେଇ ଗୁରୁ ଦ୍ରୋଣାଚାର୍ଯ୍ୟ କହିଲେ – "ଦେଖ, ଏଇ ବନଭୂଇଁରେ କିଏ ସେ ବୀର ଶ୍ରେଷ୍ଠ ? ଗୁରୁ ଦ୍ରୋଣଙ୍କର କଣ୍ଠ ବାଷ୍ପରୁଦ୍ଧ । ମୁଖନିଃସୃତ ଧ୍ୱନି କ୍ରମଶଃ କ୍ଷୀଣ ହୋଇ ଆସୁଥିଲା ।"(ପୃ-୫୯)

ଜାରାଶବର ଠାରୁ ସମସ୍ତ କଥା ଶୁଣି ସାରିଲା ପରେ ନିଜକୁ ନିଜେ ବିଶ୍ୱାସ କରିପାରିଲେ ନାହିଁ ଦ୍ରୋଣ । ଦ୍ରୋଣଙ୍କଠାରୁ ଅପମାନିତ ହୋଇ ଫେରିଲା ପରେ ଜାରା ଦୃଢ଼ ଭକ୍ତି ଓ ଇଚ୍ଛାଶକ୍ତିକୁ ନେଇ ମୃଣ୍ମୟୀ ଦ୍ରୋଣମୂର୍ତ୍ତି ନିର୍ମାଣ କରି ତାଙ୍କରିଠାରୁ ଶର ଚାଳନା ଶିକ୍ଷା କରିଛି । କି ବିଶ୍ୱାସବୋଧ ଏହି ଶବରର ! ପରୀକ୍ଷା କରିବା ପାଇଁ ଦ୍ରୋଣ ସେହି ଶବରକୁ ଗୁରୁ ଦକ୍ଷିଣା ସ୍ୱରୂପ ତା'ର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ମାଗିଥିଲେ । ଗାଳ୍ପିକଙ୍କ ଭାଷାରେ – "ଇତସ୍ତତଃ ହୋଇଗଲା ଜାରା । ସେ ଜାଣିନଥିଲା ଗୁରୁ ଦ୍ରୋଣାଚାର୍ଯ୍ୟ ତାକୁ ଏପରି ଦକ୍ଷିଣା ମାଗିବେ ବୋଲି । ଏହା ଥିଲା ତା'ର କଳ୍ପନାର ବାହାରେ । ଦକ୍ଷିଣ ହସ୍ତର ଜ୍ୟେଷ୍ଠ ଅଙ୍ଗୁଳି କାଟିଦେଲେ ତା'ର ସବୁ ବିଦ୍ୟା ସେଇଠି ଶେଷ ହୋଇଯିବ, ସେ ଆଉ ଧନୁରେ ଗୁଣ ଦେଇପାରିବ ନାହିଁ । ମାତ୍ର ସେ ସତ୍ୟ କରିଛି ଗୁରୁଦକ୍ଷିଣା ଦେବା ପାଇଁ, ତାକୁ ତା'ର ସତ୍ୟ ନିଶ୍ଚୟ ରକ୍ଷା କରିବାକୁ ହେବ ।" (ପୃ-୬୨/୬୩) ଗୁରୁଙ୍କ ପାଇଁ ଅଙ୍ଗିକାରବଦ୍ଧ ହୋଇଥିବା ଜାରା ଦକ୍ଷିଣା ସ୍ୱରୂପ ଦ୍ରୋଣଙ୍କୁ ନିଜର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ପ୍ରଦାନ କରି କାଳ କାଳକୁ ନିଜ ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଦେଲା । ପୁରାଣର ଏହି କାହାଣୀ ଭିତ୍ତିରେ ଆଧୁନିକ କାଳରେ ଏହିପରି ଏକ ଶିକ୍ଷଣୀୟ ଗଳ୍ପର ଆବଶ୍ୟକତାକୁ ଉପଲବ୍ଧି କରି ଗଳ୍ପସ୍ରଷ୍ଟା ପ୍ରଭାକର ସ୍ୱାଇଁ ରଚନା କରିଥିଲେ 'ଗୁରୁ ଶିଷ୍ୟ' କ୍ଷୁଦ୍ରଗଳ୍ପ ।

ପଣ୍ଡୁଙ୍କ ସହିତ କୁନ୍ତଭୋଜଙ୍କର କନ୍ୟା କୁନ୍ତୀଙ୍କର ବିବାହ ପରେ କିଏ ପଞ୍ଚକଟକର ରାଜସିଂହାସନ ଅଧିକାର କରିବ ସେଥିନେଇ ନାନା ଗୁଞ୍ଜରଣ ସହିତ ବିଭିନ୍ନ କଳ୍ପନା ଜଳ୍ପନା ପ୍ରକାଶ ପାଇଥିଲା । ଭୀଷ୍ମ, ଭୂରିଶ୍ରବା, ଧୃତରାଷ୍ଟ୍ର, ବିଦୁର ପ୍ରଭୃତି ଯୋଦ୍ଧାବୃନ୍ଦ ଏହି ପଦବୀକୁ ନାନା କାରଣରୁ ଅଯୋଗ୍ୟ ବିବେଚିତ ହୋଇଥିଲେ । ଏଥିନେଇ ଭୀଷ୍ମଙ୍କ ମନରେ ସେଦିନ ନାନା ପ୍ରଶ୍ନ ଉଙ୍କି ମାରିଥିଲା । ସେ ପିତା ଶାନ୍ତନୁଙ୍କୁ ପଚାରିଥିଲେ - "କିଏ ଏଇ ପଞ୍ଚକଟକର ଅଧିପତି ହେବ ? ଭୀଷ୍ମ ନିଜେ ଅପୁତ୍ରକ ହୋଇଥିବାରୁ ରାଜସିଂହାସନ ଅଳଙ୍କୃତ କରିପାରିବେ ନାହିଁ ।" (ପୃ-୬୫) ମହାଭାରତର ଏହିପରି ଏକ ସମସ୍ୟାପୂର୍ଣ୍ଣ ଓ ଦ୍ୱନ୍ଦ୍ୱାତ୍ମକ ବିଷୟକୁ ଆଧୁନିକ କାହାଣୀ ମାଧ୍ୟମରେ ଧରି ରଖିବାକୁ ଚେଷ୍ଟା କରିଛନ୍ତି ଗଳ୍ପକାର ପ୍ରଭାକର ସ୍ୱାଇଁ । ସର୍ବସମ୍ମତିକ୍ରମେ ସ୍ଥିର ହୋଇଛି ପଣ୍ଡୁ ହେବେ ପଞ୍ଚକଟକର ନରପତି । ସ୍ରଷ୍ଟା ପ୍ରଭାକର ଏହି କଥାକୁ 'ପଣ୍ଡୁ ନୃପତି' ଗଳ୍ପ ମାଧ୍ୟମରେ ଉଲ୍ଲେଖ କରିଛନ୍ତି । "ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନିଲୋକର ନରପତି ପଣ୍ଡୁଙ୍କର ରାଜଧର୍ମର ପ୍ରଶଂସା ବ୍ୟାପିଗଲା । ସେ ହେଲେ ଧାର୍ମିକ, ବିବେକୀ ଓ ଦୟାବାନ୍ ପୁରୁଷ । ଦାନ ଧର୍ମରେ ସେ ହେଲେ ଶୂରବନ୍ତ । ଦେବ ଓ ବିପ୍ରମାନଙ୍କୁ ସେ ଯଥା ସମ୍ମାନ କରି ପୂଜାର୍ଚ୍ଚନା



Source: Author, Digitized by PPRACHIN, SOA

କଲେ ।" (ପୃ-୬୬) ରାଜ୍ୟ ଶାସନର ସୁବ୍ୟବସ୍ଥା ନିମନ୍ତେ ପଣ୍ଡୁ ଧୃତରାଷ୍ଟ୍ରଙ୍କୁ ହସ୍ତିନାପୁର, ଭୂରିଶ୍ରବାଙ୍କୁ ଇନ୍ଦ୍ରପ୍ରଶସ୍ଥ, ଭୀଷ୍ମଙ୍କୁ ଯମପ୍ରଶସ୍ଥ, ବିଦୁରଙ୍କୁ ବାରୁଣାବନ୍ତ ଦେବା ସହିତ ନିଜେ ଜଇନ୍ତାର ରାଜା ଭାବରେ ଅଧିଷ୍ଠିତ ହେଲେ । ରାଜ୍ୟ ଶାସନର ସୁପରିଚାଳନା ହେତୁ ଶତ୍ରୁମାନେ ବିଜିତ ହେଲେ ଓ ଦିଗ୍‌ବିଜୟୀ ହେଲେ ପଣ୍ଡୁ ରାଜା । ଦୈତ୍ୟ ଓ ଦାନବମାନଙ୍କ ଉପଦ୍ରବ ତ୍ରିଭୁବନରୁ ଲୋପ ପାଇଗଲା । ପ୍ରଜାମାନେ ସୁଖ ଓ ଶାନ୍ତିରେ କାଳାତିପାତ କଲେ । ସମଗ୍ର ରାଜ୍ୟ ପଣ୍ଡୁଙ୍କର ଗୁଣ କୀର୍ତ୍ତନରେ ମୁଖରିତ ହେଲା । ଏହା ହିଁ ସ୍ରଷ୍ଟାଙ୍କର 'ପଣ୍ଡୁ ନୃପତି' ଗଳ୍ପର ବର୍ଣ୍ଣିତ ବିଷୟ ।

ଅନ୍ୟ ପକ୍ଷରେ ଧର୍ମରାଜ ଯୁଧିଷ୍ଠିରଙ୍କ ଚରିତ୍ରକୁ ନେଇ ସ୍ରଷ୍ଟାଙ୍କର 'ଧର୍ମସୁତ ଧର୍ମରାଜ' ଗଳ୍ପର ପରିକଳ୍ପନା । ଶତସିଂଗ ପର୍ବତରେ କୁନ୍ତୀଙ୍କର ଅବସ୍ଥାନ ଠାରୁ ଦୁର୍ବାସାଙ୍କ ଜପାମାଳି ଦ୍ୱାରା ଧର୍ମଦେବଙ୍କୁ ଆହ୍ୱାନ, କୁନ୍ତୀଙ୍କ ସହିତ ଧର୍ମଦେବଙ୍କର ମିଳନ ଓ ସେହି ମିଳନରୁ ଧର୍ମରାଜ ଯୁଧିଷ୍ଠିରଙ୍କର ଜନ୍ମ, ତାହାର ଭବିଷ୍ୟତ ନେଇ ନାନା କଳ୍ପନା ଜଳ୍ପନା ପ୍ରଭୃତିକୁ ଗଳ୍ପକାର ପ୍ରଭାକର ଚମତ୍କାର କଥା ରୂପ ପ୍ରଦାନ କରିଛନ୍ତି । ଗଳ୍ପ ମଧ୍ୟରେ ଗୋଟିଏ ସ୍ଥାନରେ ବର୍ଣ୍ଣିତ ହୋଇଛି – "ଏପରି ଏକ ଶୁଭ ଲକ୍ଷଣଯୁକ୍ତ ପୁତ୍ର ସନ୍ତାନଟିଏ ଜନ୍ମ ହେବାର ଦେଖି ଧର୍ମଦେବ ଭାବିଲେ – ଏହି ପୁତ୍ର ଦେବ ଦ୍ୱାପର ଯୁଗର ଗତି ଓ ମୁକ୍ତିର କାରଣ । କାଳ ଦର୍ପ ଧ୍ୱଂସ କରିବାକୁ ଏହି ଶିଶୁପୁତ୍ର ହିଁ ହେବ ଏକମାତ୍ର ସହାୟ ।" (ପୃ-୬୯) ସଂସାର ଜନଙ୍କ ହିତ ସାଧନ ପାଇଁ କୁନ୍ତୀ ପୁତ୍ରଟିର ନାମ ରଖିଥିଲେ ଯୁଝେଷ୍ଠୀ ।

ଦ୍ୱିତୀୟ ପାଣ୍ଡବ ଭୀମଙ୍କ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତା'ର ଜୀବନର ଘଟଣାବଳୀ ଯେତିକି ଅଦ୍ଭୁତ ଓ ରହସ୍ୟମୟ, ସେତିକି ରୋମାଞ୍ଚକର । ଭୀମ ଚରିତ୍ରର ରହସ୍ୟ ରୋମାଞ୍ଚକର କଥାବସ୍ତୁକୁ ନେଇ ପ୍ରଭାକରଙ୍କର 'ଅଭିଶାପ ନା ଆଶୀର୍ବାଦ' ଗଳ୍ପର ପରିକଳ୍ପନା । ପୁତ୍ର ଯୁଧିଷ୍ଠିରଙ୍କର ଧାର୍ମିକ ଭାବନାକୁ ନେଇ ଆଲୋଚ୍ୟ ଗଳ୍ପର ପ୍ରାରମ୍ଭରେ କୁନ୍ତୀଙ୍କର ନାନା ଆଶା ଓ ଆଶଙ୍କା ପ୍ରକାଶ ପାଇଛି । ସେ ତାଙ୍କର ଭାଗ୍ୟକୁ ଧିକ୍‌କାର କରିଛନ୍ତି । ଅସତୀ ଭାବେ ନିଜ ନାମରେ ଡିଣ୍ଡିମ ବାଜୁଛି । "ପ୍ରଥମେ ଆଦିତ୍ୟ, ଦ୍ୱିତୀୟରେ ପଣ୍ଡୁ ତାପରେ ଧର୍ମଦେବଙ୍କୁ ସେ ନିଜର ପତି ରୂପେ ଗ୍ରହଣ କରିଛନ୍ତି । ଏହା ଫଳରେ ସେ ହୋଇଛନ୍ତି ଅସତୀ । ରାଜକୁଳରେ ଜନ୍ମ ହୋଇ ସେ ଲଜ୍ୟା ତ୍ୟାଗ କରିଛନ୍ତି । ସଂସାରରେ ଜନ୍ମ ଗ୍ରହଣ କରି ସେ କିଛି ଧର୍ମ କାର୍ଯ୍ୟ କରିନାହାନ୍ତି । କିପରିଂ ସେ ଯମ ଦରବାରରେ ମୁକ୍ତି ପାଇବେ – ଏସବୁ କଥା ଚିନ୍ତା କଲାବେଳକୁ ତାଙ୍କର ମୁଣ୍ଡ ଘୂରିଯାଉଛି ।"(ପୃ-୭୪) ତେଣୁ ଏକ ଅମିତ ବିକ୍ରମ ପୁତ୍ରପ୍ରାପ୍ତିର ଆଶା ନେଇ କୁନ୍ତୀ ଦୁର୍ବାସାର ଜପାମାଳି ଫଳରେ କୁନ୍ତୀ ଯେଉଁ ପୁତ୍ର ସନ୍ତାନଟିକୁ ଜନ୍ମ ଦେଇଛନ୍ତି ତା'ର ନାମ ହୋଇଛି ଭୀମସେନ । ଶିଶୁ ପୁତ୍ର ଗୋଡ଼ ହଲାଇ କାନ୍ଦିବା ଆରମ୍ଭ କଲାରୁ ତା'ର ପଦପାତରେ ଶତଶିଂଗର ଶିଖର ଚୂର୍ଣ୍ଣ



Source: Author, Digitized by PPRACHIN, SOA

ବିଚୂର୍ଣ୍ଣ ହୋଇଯାଇଛି । ଶତଶିଂଗ ଭୀଷଣ କ୍ରୋଧରେ ବାଲୁତ ପୁତ୍ର ଭୀମସେନକୁ ଅଭିଶାପ ଦେଇଛି । – "ତୁ ମୋ'ରି କୋଳରେ ଜାତ ହେଲୁ । ମୋତେ ପୁଣି ପ୍ରଥମେ ପ୍ରହାର କଲୁ । ମୁଁ ତୋତେ ଅଭିଶାପ ଦେଉଛି, ପ୍ରଥମ ଯୁଦ୍ଧରେ ତୋର ପରାଜୟ ।" (ପୃ୭୬)

ଦୁର୍ଦ୍ଧର୍ଷ ଭୀମସେନର କୋପରେ ଗଗନ ପବନ ପ୍ରକମ୍ପିତ ହୋଇଛି । ପଣ୍ଡୁ ମଧ୍ୟ ବାଲୁତ ପୁତ୍ର ଭୀମସେନ ଉପରେ ଭୀଷଣ କୋପ କରିଛନ୍ତି । ଦୁଷ୍ଟ ପୁତ୍ର ଭୀମସେନଙ୍କୁ ସେ ହାଣିବା ପାଇଁ ଉଦ୍ୟତ ହୋଇଛନ୍ତି । ସେ ଭୀମସେନଙ୍କୁ ନେଇ ଭାବିଛନ୍ତି – "ଇଏ ପ୍ରାୟ ବର୍ଷେ ପର୍ଯ୍ୟନ୍ତ ପାକଶାଳାରେ ପଶି ସମସ୍ତ ଖାଦ୍ୟ ପଦାର୍ଥ ଅଇଁଠା କଲା । ଅତିଥି, ଅଗ୍ନି, ପିତୃଦେବ ପ୍ରଭୃତିଙ୍କୁ ଏହାର ଅଇଁଠା ଦିଆଯାଇଛି । ବର୍ଷକ ବେଳୁ ଏହାର ଏଇ ପ୍ରକୃତି । ଏପରି ଦୁଷ୍ଟକୁ ମୁଁ କିପରି ପାଳନ କରିବି, କିଛି ଚିନ୍ତା କରିପାରୁନି । ଏ ମୋର ସମସ୍ତ କ୍ରିୟା ନଷ୍ଟ କରିଛି । ଏ ବଞ୍ଚି ରହିଥିଲା ଯାଏଁ ମୋର ଭଲ ନାହିଁ ।" (ପୃ-୮୦) ମାତ୍ର ଅଗ୍ନିଦେବ ଭୀମସେନର ପ୍ରକୃତି ସହିତ ଏକାତ୍ମ ହୋଇ ତାକୁ ଆଶୀର୍ବାଦ କରି କହିଛନ୍ତି – "ମୁଁ ଏହି ବାଲୁତ ପ୍ରତି ପ୍ରସନ୍ନ ହେଉଛି । ପ୍ରତିଦିନ ଏହାକୁ ରନ୍ଧା ଖାଦ୍ୟ ମିଳିବ । ଗଉରୀ, ଶଉରୀ ଓ ନଳବିଧି – ଏହାକୁ ପ୍ରତ୍ୟହ ପ୍ରାପ୍ତି ହେବ । ତୁମର ଏଇ ବାଲୁତ ସର୍ବଦା ଭୋଜନ, ସଂଗ୍ରାମ ଓ ଶୃଙ୍ଗାରରେ ଅତୃପ୍ତି ରହିବ । ଏହାର ବୃକୋଦର ମୂର୍ତ୍ତିକୁ କେହି ସମକକ୍ଷ ହେବେ ନାହିଁ ।" (ପୃ-୮୨) ମହାଭାରତର ଏହି ପ୍ରସଙ୍ଗକୁ ଗଳ୍ପ ସ୍ରଷ୍ଟା ନିଜସ୍ୱ ବର୍ଣ୍ଣନା ମଧ୍ୟରେ ଯେପରି ଚମତ୍କାର କରି ଉପସ୍ଥାପନା କରିଛନ୍ତି ତାହାର ତୁଳନା ନାହିଁ ।

କୁହାଯାଏ ସ୍ୱାମୀ ସ୍ତ୍ରୀ ସାଂସାରିକ ଜୀବନରେ ଗୋଟିଏ ମୁଦ୍ରାର ଉଭୟପାର୍ଶ୍ୱରେ । ଉଭୟ ବିବାହ ବେଦୀରେ ଅଗ୍ନିଙ୍କୁ ସାକ୍ଷୀ ରଖି ଶପଥ ନେଇଥାନ୍ତି, ଧର୍ମ ଓ ଅଧର୍ମ – ଉଭୟ କାର୍ଯ୍ୟରେ ପରସ୍ପରର ଭାଗୀଦାରି । ସ୍ୱାମୀ ଧୃତରାଷ୍ଟ୍ରଙ୍କର ଚକ୍ଷୁହୀନତା ଖୁବ୍ ଅସହ୍ୟ ମନେହୋଇଛି ପତ୍ନୀ ଗାନ୍ଧାରୀଙ୍କୁ । କପିଳେଶ୍ୱର ତୀର୍ଥରେ ସେଥିପାଇଁ ସେ ଦେବୀଙ୍କ ନିକଟରେ ଶପଥ କରିଛନ୍ତି – "ମୁଁ ଆଉ ସ୍ୱାମୀ ଧୃତରାଷ୍ଟ୍ରଙ୍କର ଦୁଃଖ ଦେଖିପାରିବି ନାହିଁ । ଏଣିକି ନିଜ ଚକ୍ଷୁରେ ମୁଁ ବି ଅନ୍ଧପୁଟୁଳି ବାନ୍ଧିଦେବି ।" ଫଳତଃ ଚକ୍ଷୁ ଥାଉ ଥାଉ ଅନ୍ଧପୁଟୁଳି ବାନ୍ଧିଦେଇ ଅନ୍ଧ ହୋଇଗଲେ ଗାନ୍ଧାରୀ । ଗାନ୍ଧାରୀଙ୍କର ଏପରି ନିଷ୍ପତ୍ତି ସମଗ୍ର ରାଜ୍ୟରେ ବନାଗ୍ନି ପରି ବ୍ୟାପିଗଲା । ତାଙ୍କୁ ନାନା ଭାବରେ ବୁଝାଇବାକୁ ଆସିଲେ କୁନ୍ତୀ । କୁନ୍ତୀଙ୍କଠାରୁ ସବୁ ଶୁଣିବା ସତ୍ତ୍ୱେ ବି ନିଜ ନିଷ୍ପତ୍ତିରେ ଅଟଳ ରହିଲେ ଗାନ୍ଧାରୀ । ବରଂ ସେ କହିଲେ – "ଏହା ତ ମୋ ସ୍ୱାମୀଙ୍କର ଭାଗ୍ୟ । ମୁଁ ତାଙ୍କର ପତ୍ନୀ । ତାଙ୍କ ଦୁଃଖରେ ମୋତେ ସାମିଲ ହେବାକୁ ପଡ଼ିଲା । ତେଣୁ ମୁଁ ଏପରି ଉପାୟ ଅବଲମ୍ବନ କରିଛି ଓ ଅନ୍ଧପୁଟୁଳି ବାନ୍ଧିଛି ।

ଗାନ୍ଧାରୀଙ୍କ କଥା ଶୁଣି କୁନ୍ତୀ କହିଲେ - "ତୁମେ ବହୁ ଦୁଃଖ ସହ୍ୟକରି ପୁତ୍ରମାନଙ୍କୁ ପାଇଛ । ଏବେ ପୁତ୍ରମାନଙ୍କର ଭଲ ମନ୍ଦ ଦେଖିବ । ସେମାନଙ୍କୁ ଉଚିତ ମାର୍ଗରେ ଲାଳନ ପାଳନ କରିବ ।"



Source: Author, Digitized by PPRACHIN, SOA

କୁନ୍ତୀଙ୍କ କଥାରେ ଗାନ୍ଧାରୀ କହିଲେ – "ମୋର ସମସ୍ତ ପୁତ୍ର ଦୁଷ୍ଟ । ଏହା ଧୃତରାଷ୍ଟ୍ରଙ୍କର କର୍ମଫଳ । ମୋ ସ୍ୱାମୀ ଚକ୍ଷୁହୀନ – ଅନ୍ଧ । ସ୍ୱାମୀ ଅନ୍ଧ ହୋଇଥିବାରୁ ମୋର ଚକ୍ଷୁରେ ଆଉ ବା କ'ଣ ପ୍ରୟୋଜନ ? ତୁ ମାଆ ଆଉ ମୋତେ ଅନ୍ଧପଟୁଳି ଖୋଲିବା ପାଇଁ ଅନୁରୋଧ କରନା । ମୁଁ ତୋର ଅନୁରୋଧ ରକ୍ଷା କରିପାରିବି ନାହିଁ । ଏହି ଅନ୍ଧପଟୁଳି ବନ୍ଧାରେ ହିଁ ମୋର ମହାନନ୍ଦ ।"

''କହୁ କହୁ ଆନନ୍ଦରେ ଗାନ୍ଧାରୀ ଏଥର 'ନିଜ ଚକ୍ଷୁରେ ବାନ୍ଧିଥିବା ଅନ୍ଧପଟୁଳିକୁ ଆହୁରି ଦୃଢ଼ ଭାବରେ ବାନ୍ଧିଦେଲେ । (ପୃ-୮୮/୮୯) ସ୍ୱାମୀଙ୍କ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେବା ହିଁ ହେଉଛି ଭାରତୀୟ ସଂସ୍କୃତିର ଏକ ବଳିଷ୍ଠ ଅଙ୍ଗ । ସୁତରାଂ ଆଲୋଚ୍ୟ ଗଳ୍ପ ମଧ୍ୟରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ଜୀବନରେ ସେହି ସତ୍ୟ ଓ ଦିଗନ୍ତକୁ ଗଳ୍ପ ସ୍ରଷ୍ଟା ତାଙ୍କର 'ଅନ୍ଧପଟଳ' ଗଳ୍ପରେ ଉନ୍ମୋଚନ କରିଛନ୍ତି ।

କନିଷ୍ଠ ପାଣ୍ଡବ ସହଦେବଙ୍କ ଜନ୍ମ ସହିତ ପିତା ପଣ୍ଡୁ ଓ ମାତା ମାଦ୍ରୀଙ୍କର ଆକସ୍ମିକ ବିୟୋଗ ଘଟିଛି । ତତ୍‌ଜନିତ ପ୍ରତିକ୍ରିୟାରୁ ଗଳ୍ପସ୍ରଷ୍ଟା ପ୍ରଭାକରଙ୍କର 'ପଣ୍ଡୁ ଓ କନିଷ୍ଠ ପାଣ୍ଡବ' ଗଳ୍ପର ପରିକଳ୍ପନା । ଶତଶିଂଗ ପର୍ବତରେ କୁନ୍ତୀଙ୍କର ଅବସ୍ଥାନ, ଗଙ୍ଗାତୀରରେ ତାଙ୍କର ସ୍ନାନାଦି କର୍ମ କାଳରେ ନିଜ ମନରେ ବିଲକ୍ଷଣ ଭାବର ପରିପ୍ରକାଶ ଓ ସ୍ୱାମୀ ପଣ୍ଡୁଙ୍କୁ ନେଇ ନାନା ଦୁଶ୍ଚିନ୍ତା ଶେଷରେ ପଣ୍ଡୁ ଶାପ କଥା ଭୁଲିଯାଇ ବିପଥଗାମୀ ହୋଇ ମାଦ୍ରୀଙ୍କ ସହିତ ମିଳିତ ହେବା ଫଳରେ ଜନ୍ମ ନେଇଛି ସହଦେବ । ଅନ୍ୟ ପକ୍ଷରେ ସେହି ସମୟରେ ହିଁ ଉଭୟ ସ୍ୱାମୀ ପଣ୍ଡୁଙ୍କ ସହ ସ୍ତ୍ରୀ ମାଦ୍ରୀଙ୍କର ମୃତ୍ୟୁ ହୋଇଛି । ମହାଭାରତର ଏପରି ଏକ ଘଟଣାକୁ ନେଇ ପ୍ରଭାକର ସୃଷ୍ଟି କରିଛନ୍ତି 'ପଣ୍ଡୁ ଓ କନିଷ୍ଠ ପାଣ୍ଡବ' କ୍ଷୁଦ୍ରଗଳ୍ପ ।

ସଙ୍କଳନର ଶେଷ ଗଳ୍ପଟି ହେଉଛି 'ପରୋପକାରାୟ ସ୍ୱର୍ଗୀୟ' । ଏହି ସଂସାରରେ କେତେଜଣ ବିନା ସ୍ୱାର୍ଥ ଓ ବିନା ବାଧା ବନ୍ଧନରେ ଅନ୍ୟର ଉପକାର କରନ୍ତି ! ସଂସାରରେ ଦେଖାଯାଏ ଯିଏ ଅନ୍ୟର ଉପକାର କରେ ସେହି ଉପକୃତ ବ୍ୟକ୍ତିଟି ଉପକାର କରିଥିବା ବ୍ୟକ୍ତିଟିକୁ ପ୍ରଥମେ ଅସୁବିଧାରେ ପକାଏ । ଏସବୁ ସତ୍ତ୍ୱେବି ମଣିଷକୁ ସୁବିଧା ସୁଯୋଗ ମିଳିଲେ ସେ ଅନ୍ୟର ଉପକାର କରେ । ଏହିପରି ଥିଲେ ମହାଭାରତର ଦ୍ରୋଣାଚାର୍ଯ୍ୟ । ରାଜା ଦ୍ରୁପଦଙ୍କର ରାଜ୍ୟ କିରାତ ଅଧିକାର କରିବାରୁ ସେ ଉପାୟ ଶୂନ୍ୟ ହୋଇ ଦ୍ରୋଣଙ୍କ ନିକଟରେ ଆଶ୍ରୟ ପ୍ରାର୍ଥୀ ହୋଇଥିଲେ । ଦ୍ରୋଣ ତାଙ୍କୁ ନିଜର ବନ୍ଧୁ ଓ ସଖାର ଆସନରେ ଆସୀନ କରି ଦୀର୍ଘ ବର୍ଷ ପର୍ଯ୍ୟନ୍ତ ନିଜ ରାଜ୍ୟରେ ଆଶ୍ରୟ ଦେଇଥିଲେ । ସମୟ କ୍ରମେ ଦ୍ରୁପଦ ବିପଦ ମୁକ୍ତ ହୋଇଥିଲେ । ତାଙ୍କ ରାଜ୍ୟ ବି ବିପଦମୁକ୍ତ ହୋଇଥିଲା । ଫଳତଃ ସେ ଦ୍ରୋଣଙ୍କ ନିକଟରୁ ନିଜ ରାଜ୍ୟକୁ ଫେରି ଯାଇଥିଲେ । ଅନ୍ୟ ପକ୍ଷରେ ଦ୍ରୋଣଙ୍କର ପତ୍ନୀ କୃପୀ ଏକ ପୁତ୍ର ସନ୍ତାନ ପ୍ରସବ କରିବା ସହିତ ଆକସ୍ମିକ ଭାବରେ ମୃତ୍ୟୁମୁଖରେ ପଡ଼ିଥିଲେ ।



Source: Author, Digitized by PPRACHIN, SOA

ସେହିଦିନଠାରୁ ପତ୍ନୀଙ୍କର ଅବର୍ତ୍ତମାନରେ ଦ୍ରୋଣଙ୍କ ଅବସ୍ଥା ଖୁବ୍ ଅସମ୍ଭାଳ ହୋଇପଡ଼ିଥିଲା । ଏପରିକି ଶିଶୁ ପୁତ୍ର ଅଶ୍ୱତ୍ଥମାଙ୍କୁ ଦୁଗ୍ଧ ବଦଳରେ ଗଙ୍ଗା ନଦୀ ଜଳର ଫେଣକୁ ପାନ କରିବାକୁ ଦେଇ କୌଣସି ମତେ ବଞ୍ଚାଇ ରଖିଥିଲେ । ଉପାୟହୀନ ହୋଇ ଦ୍ରୋଣ ପୂର୍ବ କଥା ମନେପକାଇ ନିଜ ଜୀବନ ଅପରାହ୍ଣରେ ଦ୍ରୁପଦଙ୍କ ଦରବାରେ ପହଞ୍ଚି ଦୂତ ମାଧ୍ୟମରେ ନିଜର ଉପସ୍ଥିତି ସଂପର୍କରେ ଖବର ଦେଇଥିଲେ ଏବଂ ଏପରି ଅସମୟରେ ତାଙ୍କଠାରୁ ସାହାଯ୍ୟ ଭିକ୍ଷା କରିଥିଲେ । ଦ୍ରୋଣ ସେତେବେଳେ ଦ୍ରୁପଦଙ୍କ ଉଚ୍ଚାରିତ କଥା କେଇପଦ ମଧ୍ୟ ମନେ ପକାଉଥିଲେ – "ମୁଁ ଆପଣଙ୍କୁ କଦାପି ଭୁଲିପାରିବି ନାହିଁ, ଆପଣଙ୍କ ସାହାଯ୍ୟ ପାଇଁ ମୁଁ ଚିରଋଣୀ, ଆପଣଙ୍କୁ ଭୁଲିଲେ ମୁଁ ଧର୍ମଦ୍ରୋହୀ ହେବି ।" (ପୃ.୧୦୦)

ମାତ୍ର କ୍ଷମତା ସିଂହାସନରେ ଅଧିରୂଢ଼ ହେବା ପରେ ଦ୍ରୁପଦ ଅତୀତର ସବୁ କଥା ଭୁଲିଯାଇଥିଲେ । ମନେ ପଡୁନଥିଲା ଅତୀତରେ ତାଙ୍କୁ ଦ୍ରୋଣଙ୍କର ସାହାଯ୍ୟର କଥା । ସ୍ରଷ୍ଟାଙ୍କ ଭାଷାରେ "ମହାପଣ୍ଡିତ ଦ୍ରୋଣ କ୍ଷମତାର ସଂଜ୍ଞା ନିରୂପଣ କରୁଛନ୍ତି । ମଣିଷ ଏମିତି କ୍ଷମତାନ୍ଧ ହୋଇପାରେ – ମଣିଷ ମଣିଷପଣିଆକୁ ଭୁଲିଯାଇପାରେ – ଅତୀତର ଦୁର୍ଦ୍ଦିନକୁ ଭୁଲିଯାଇପାରେ – ଏହାହିଁ କେବଳ ସେ ଚିନ୍ତା କରୁଥାନ୍ତି । ବିଚିତ୍ର ଏ ଦୁନିଆ । ସୁଖର ସାଥୀ ସମସ୍ତେ – ଦୁଃଖର ସାଥୀ କେତେଜଣ ! ଆଜି କି ଅପମାନ ନ ପାଇଲେ ସେ ! ତଥାପି ସେ ପରୋପକାର କରିବେ । ବଞ୍ଚିଥିବା ଯାଏ ଏହାହିଁ ତାଙ୍କର ଜୀବନର ବ୍ରତ ହେବ ବୋଲି ସେ ସ୍ଥିର କଲେ । କାରଣ ପରୋପକାର ସ୍ୱର୍ଗୀୟ । ମହାଜ୍ଞାନୀ ଦ୍ରୋଣଙ୍କର କି ଅପୂର୍ବ ଏ ଚିନ୍ତାଧାରା !" (ପୃ. ୧୦୦) ଶତ ପ୍ରତିବନ୍ଧକ ସତ୍ତ୍ୱେ ବି ଦ୍ରୋଣ ଭୁଲି ପାରିନଥିଲେ ତାଙ୍କର ଅତୀତ ଓ ବର୍ତ୍ତମାନକୁ । ପରୋପକାରକୁ ଜୀବନର ବ୍ରତ ଭାବରେ ଗ୍ରହଣ କରି ସେ ବାରମ୍ବାର ଉଚ୍ଚାରଣ କରୁଥିଲେ – 'ପରୋପକାରାୟ ସ୍ୱର୍ଗୀୟ' । ଦ୍ରୋଣଙ୍କର ଏହି ଉଚ୍ଚାଦର୍ଶ ଓ ମହାନ ଚିନ୍ତାକୁ ନେଇ ସ୍ରଷ୍ଟା ପ୍ରଭାକରଙ୍କର 'ପରୋପକାରାୟ ସ୍ୱର୍ଗୀୟ' ଗଳ୍ପର ପରିକଳ୍ପନା ।

ଗଳ୍ପ ସଙ୍କଳନସ୍ଥିତ ସ୍ରଷ୍ଟାଙ୍କର ସମସ୍ତ ଗଳ୍ପର ମୂଳକଥା ହେଉଛି ସାରଳା ଦାସଙ୍କର ମହାଭାରତର କଥା-କାହାଣୀଗୁଡ଼ିକ । ମହାଭାରତର ସେହି ମୂଳ କଥାକୁ ଆଖ୍ୟାନ ବା ମିଥ୍ ଭାବରେ ଗ୍ରହଣ କରି ତହିଁରେ ରକ୍ତ ମାଂସର ପ୍ରଲେପ ଦେବା ଓ ଆଧୁନିକ ଗଳ୍ପକଳାର ଲକ୍ଷଣ ଦୃଷ୍ଟିରୁ ପାଠକଙ୍କ ସମ୍ମୁଖରେ ତାହାକୁ ପରିବେଷଣ କରିବାରେ ସ୍ରଷ୍ଟାଙ୍କର ବାହାଦୂରି ହିଁ ବଡ଼କଥା । ପୁଣି କ୍ଷୁଦ୍ରଗଳ୍ପ ରଚନା କଳାର ସବୁଠାରୁ ବଡ଼ କଥା ହେଉଛି ଏଥିରେ ଉପଲବ୍ଧ ବ୍ୟଞ୍ଜନା । ବ୍ୟଞ୍ଜନା ମାଧ୍ୟମରେ ଗୋଟିଏ ଛୋଟ କଥାକୁ ଉଲ୍ଲେଖନୀୟ ଭାବରେ ବିଶାଳ ପରିଧି ଭିତରେ ଗଳ୍ପ ସ୍ରଷ୍ଟା ଉପସ୍ଥାପନ କରିପାରେ । ଅନୁରୂପ ଭାବେ ଆମେ ସ୍ରଷ୍ଟାଙ୍କର 'ପୁନଶ୍ଚ ହସ୍ତିନା' ସଙ୍କଳନର ପ୍ରାୟ ପ୍ରତ୍ୟେକ ଗଳ୍ପଭିତରେ ଏହି କଥା ହିଁ ଲକ୍ଷ୍ୟ କରୁ । ପୁରାଣର କାହାଣୀଟି କ୍ଷୁଦ୍ର ମାତ୍ର ଗଳ୍ପକାର ପ୍ରଭାକରଙ୍କ ଗଳ୍ପ କଥନର ବ୍ୟଞ୍ଜନା



Source: Author, Digitized by PPRACHIN, SOA

ବିଶାଳ ଓ ହୃଦୟସ୍ପର୍ଶୀ । ବିଶେଷତଃ ସମାଜ ବିକାଶ ଓ ପରିବର୍ତ୍ତନରେ ସ୍ରଷ୍ଟାଙ୍କର ଏହି ବ୍ୟଞ୍ଜନାର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ବ୍ୟଞ୍ଜନାକୁ ରସସିକ୍ତ କରିବା ପାଇଁ ଅନୁକୂଳ ପରିବେଶ ନେଇ ଗଳ୍ପ ମଧ୍ୟରେ ସ୍ରଷ୍ଟା ଉପସ୍ଥାପିତ କରିଛନ୍ତି ଉପଯୁକ୍ତ ଭାଷା, ପରିବେଷଣ ଶୈଳୀ ପ୍ରଭୃତି ଗଳ୍ପ କଳାଗୁଡିକ । ଏସବୁକୁ ଅବବୋଧ କରିବା ପାଇଁ ଚରିତ୍ର ଚିତ୍ରଣ ହୋଇଛି ଜୀବନଧର୍ମୀ ଏବଂ ଜୀବନ୍ତ । ଗଳ୍ପ ସ୍ରଷ୍ଟା ପ୍ରଭାକର ତାଙ୍କର ପ୍ରଥମ ଗଳ୍ପ ସଙ୍କଳନ 'ଯଦା ଯଦା ହି ଧର୍ମସ୍ୟ' ମଧ୍ୟରେ ପୁରାଣକୁ ଭିତ୍ତି କରି ଆଧୁନିକୀ ଗଳ୍ପ କଥାର ଯେଉଁ ଅୟମାରମ୍ଭ କରିଥିଲେ ତାହା ତାଙ୍କର ଆଲୋଚ୍ୟ ସଙ୍କଳନ 'ପୁନଶ୍ଚ ହସ୍ତିନା' ମଧ୍ୟରେ ଉର୍ଦ୍ଧ୍ୱକୁ ଉଠି ଆମ ସାହିତ୍ୟକୁ ସମୃଦ୍ଧ କରିଛି ଏବଂ ଆଗାମୀ ଦିନରେ ତାଙ୍କର ସେହି ଧାରା ଅଧିକ ପଲ୍ଲବିତ ହୋଇ ମହୀରୁହ ହେବାର ଏକ ବିପୁଳ ସମ୍ଭାବନା ଆମ ସମ୍ମୁଖରେ ସୃଷ୍ଟି କରିଛି ।



Source: Author, Digitized by PPRACHIN, SOA

# ବିଷକନ୍ୟାର କାହାଣୀର ଅନ୍ତର୍ଯାତ୍ରା

"ମନୁଷ୍ୟକୁ ସେତିକି ଭଲପାଏ ବୋଲି ତା'ର ଅସହାୟତାର ବାର୍ତ୍ତା ମୁଁ ସେତେ ବେଶୀ ପ୍ରଚାର କରିପାରିଛି ।" (ମନୋଜ ଦାସ)

'ବିଷକନ୍ୟାର କାହାଣୀ' (୧୯୫୪) ମନୋଜ ଦାସଙ୍କ ତୃତୀୟ ଗଳ୍ପ ସଂକଳନ ।[୧] ଆଧୁନିକ ଭାରତୀୟ ତଥା ଆନ୍ତର୍ଜାତୀୟ କଥା ଜଗତରେ ମନୋଜ ଦାସ୍ ବେଶ୍ ପରିଚିତ । ସାମାଜିକ ପ୍ରତିବଦ୍ଧତା ଏବଂ ମଣିଷକୁ ଗଭୀର ଭାବେ ଭଲପାଇ ତା'ର ଉପଯୁକ୍ତ ମୂଲ୍ୟାୟନ କ୍ଷେତ୍ରରେ ତାଙ୍କର ଶିଳ୍ପକଳା ପାଠକ ମନରେ ଯେଉଁ ଜିଜ୍ଞାସା ଉଦ୍ରେକ କରାଏ ଏବଂ ତା'ଭିତର ଦେଇ ମାନବ ସଭ୍ୟତାର ଯେଉଁ ସଂଦର୍ଶନ ଉପଲବ୍ଧ ହୋଇଥାଏ ତାହା ଅନନ୍ୟ । ତାଙ୍କ ଗଳ୍ପର ଭାବଦର୍ଶନ ତତ୍ତ୍ୱାଶ୍ରିତ ନୁହେଁ କିନ୍ତୁ ତତ୍ତ୍ୱର ମୂଳ ଉପଲବ୍ଧିକୁ ଜୀବନର ପ୍ରାୟୋଗିକ କ୍ଷେତ୍ରରେ ଏପରି ସମାନ୍ତରାଳ ଭାବେ ଗତିକରାଇ ନେଇଥାନ୍ତି ଯାହା ବାସ୍ତବ ଜଗତର ଏକ ପୂର୍ଣ୍ଣାଙ୍ଗ ଚିତ୍ର ପ୍ରଦର୍ଶନ କରାଇବାରେ ସହାୟ ହୋଇଥାଏ । ସାମ୍ୟବାଦୀ ଅନୁଚିନ୍ତା ହେଉ କିମ୍ବା ଶ୍ରୀଅରବିନ୍ଦଙ୍କ ଯୋଗଦର୍ଶନ ହେଉ ସେସବୁର ପ୍ରାସଙ୍ଗିକତା ମଣିଷର ଚେତନାକୁ କିପରି ଅଧିକ ଉଦ୍ଦୀପ୍ତ କରିପାରିବ ତା'ର ଏକ ନିର୍ମଳ ଚିତ୍ରପଟ ଗଳ୍ପଗୁଡ଼ିକରୁ ମିଳିଥାଏ । ଏହି ପ୍ରସଙ୍ଗ କ୍ରମେ ପୁସ୍ତକ ସନ୍ନିବେଶିତ ଗଳ୍ପର ଭାବାଦର୍ଶ ଆଲୋଚନା କରାଯାଇପାରେ ।

"ମଶାଣି ପଦାର ଧୂସର କଳାମାଟି ଭିତରେ ଗୁମୁରି ଗୁମୁରି କେବେ କେବେ ଖଣ୍ଡିଆଭୂତ ପବନରେ ସୁ ସୁ ହୋଇ ମଙ୍ଗଳ ଦାସର ନିଷ୍ପ୍ରଭ ଜୁଇର ଶେଷ ଧୂଳି ରେଣୁ ଉଡ଼ିଆସେ ହୀରାର ଘର ଭିତରକୁ । ଛନକା ପଶେ । କୁହୁଳି କୁହୁଳି ମନଟା ଭିତରେ ଗୋଟାଏ ଆତଙ୍କ ଅଟକିରହେ, ଅଗଣା ଭିତରର ସାପ ଭଳି ।"[୨] 'ବିଷକନ୍ୟାର କାହାଣୀ' ରୂପଜୀବୀ ହୀରାର ଜୀବନକାହାଣୀ ଉପରେ ପର୍ଯ୍ୟବସିତ । ପୁରୁଷ ଗୋଷ୍ଠୀଙ୍କ ଜାନ୍ତବ କାମନାର ଉପଶମ ନିମନ୍ତେ ହୀରା ତା'ର ରୂପଲାବଣ୍ୟରେ କାମୁକ ପୁରୁଷମାନଙ୍କୁ ପରିତୁଷ୍ଟ କରିପାରୁଥିଲା ଏବଂ ସେଇ ଛୋଟ ସହର ରୂପକ ଉପନିବେଶରେ ଅପରାଜିତ ସାମ୍ରାଜ୍ଞୀ ଥିଲା, ସମୟ କ୍ରମେ ତା'ପରି ଅନ୍ୟ ପ୍ରତିଦ୍ୱନ୍ଦ୍ୱିନୀମାନଙ୍କର ଆଗମନ ଏବଂ ତା'ର ପେଷାକୁ ବୈଧୀକରଣ ସ୍ୱରୂପ ଆଇନ୍ ନିକଟରେ ଅଯୋଗ୍ୟା ଘୋଷିତ ହେବା ତା'ର ସ୍ଥିତିକୁ ଦୋହଲାଇ ଦେଇଥିଲା । ଯାହାକୁ ମାଧ୍ୟମ କରି ବିଶୁଦ୍ଧ ହିନ୍ଦୁ ହୋଟେଲ ନିଜ ବ୍ୟାବସାୟିକ



Source: Author, Digitized by PPRACHIN, SOA

ସାଫଲ୍ୟ ଅର୍ଜନ କରିଥିଲା, ସେ ମଧ୍ୟ ହୀରାକୁ ଦୁଇ ମୁଠା ଖାଦ୍ୟ ଯୋଗାଇ ଦେବାକୁ ଅନିଚ୍ଛା ପ୍ରକାଶ କଲା । ପ୍ରକାରାନ୍ତରେ ହୀରା ସ୍ଥାନରେ ଆଗନ୍ତୁକଙ୍କ ମନୋରଞ୍ଜନପାଇଁ ଅନ୍ୟ ଏକ ସଦ୍ୟତମ ହୀରାକୁ ନିଯୁକ୍ତି ଦେଇଥିଲା । ନିଜ ବୃତ୍ତି ସମୟରେ ଗଚ୍ଛିତ ଅଳଂକାର ନକଲି ଥିବାରୁ ତା'ମାଧ୍ୟମରେ ତା'ର ରୋଗ ଜୀର୍ଣ୍ଣ ଶରୀରକୁ ବଞ୍ଚାଇ ରଖିବାର ପ୍ରଲୋଭନଟିକୁ ମଧ୍ୟ ସେ ହରାଇଥିଲା । ଏପରିକି ଜୀବନ ଧାରଣପାଇଁ ଶେଷ ସମ୍ବଳ ସ୍ୱରୂପ ସେ ଯେଉଁ ପାନଦୋକାନ ଉପରେ ନିର୍ଭର କରିଥିଲା ତାହା ମଧ୍ୟ ଏକପ୍ରକାର ସାମାଜିକ ବାସନ୍ଦର ଶିକାର ହୋଇଥିଲା । ସମସ୍ତଙ୍କ ସମ୍ମୁଖରେ ବୟସର ଅପରାହ୍ନ ପୂର୍ବରୁ ସେ ପାଲଟିଥିଲା ବିଷକନ୍ୟା । ଗାଳ୍ପିକ ମନୋଜ ଦାସ ରୁଗ୍‌ଣ, ସାମାଜିକ ବ୍ୟବସ୍ଥା ଭିତରେ ଥିବା ହୀରା ପରି ବେଦନାର୍ତ୍ତ ନାରୀର ଜୀବନ କାହାଣୀକୁ ବିଶେଷ ଭାବେ ଉପଲବ୍ଧି କରିଛନ୍ତି ଏବଂ ପୁରୁଷତାନ୍ତ୍ରିକ ସମାଜରେ ନାରୀକୁ ଯେଉଁ Brothelmodel ଭାବେ ଗ୍ରହଣ କରାଯାଇଥାଏ ତା'ର ଏକ ସଫଳ ରୂପାୟନ ଘଟିଛି ଉକ୍ତ ଗଳ୍ପରେ ।

"କେବଳ ଏଇ ଯାଯାବର କିଶୋରର ଜୀବନ ସଂଗୀତ ଗୋଟାଏ ସ୍ଥାୟୀ ମୂର୍ଚ୍ଛନା ରଖିଗଲା ଦୂର ପଲ୍ଲୀର ଏକ ନିଛାଟିଆ ହୃଦୟ ଭିତରେ ।"(୩) ସେଇ ଯାଯାବର ଥିଲା ଦି ଗ୍ରେଟ ଧନଲକ୍ଷ୍ମୀ ସର୍କସ ପାର୍ଟିର କିଶୋର ଅଭିନେତା ପଲଟୁ ଏବଂ ପଲ୍ଲୀର ନିଛାଟିଆ ହୃଦୟ ଥିଲା କିଶୋରୀ ଉମିର । ପଲଟୁର ଯାଯାବର ଜୀବନର କେତୋଟି ମାତ୍ର ଦିନ ଉମି ସ୍ମୃତିରେ ଗଭୀର ରେଖାପାତ କରିଛି । ପୂର୍ବ ବର୍ଷପରି ସର୍କସ ପାର୍ଟି ଫେରିଛି ହେଲେ ଫେରି ନାହିଁ ପଲଟୁ । ଉମି ଅପେକ୍ଷା କରିଛି ତା'ର ସେଇ ଚିରାଚରିତ ତଥା ସଂପର୍କର ସେତୁ ନିର୍ମାଣର ମୂକସାକ୍ଷୀ ପିଜୁଳିଗଛ ତଳେ, କେତେବେଳେ ପଲଟୁ ଦଲାଣ ପଛପଟୁ ଉଙ୍କି ମାରିବ । ପୂର୍ବ ପରିଚିତ ଗେଟ୍‌କିପର ବୁଢ଼ା ସନ୍ନ୍ୟାସୀଠାରୁ ଖେଳ ପ୍ରଦର୍ଶନୀ ସମୟରେ ଶୂନ୍ୟରୁ ପଡିଯାଇ ପଲଟୁର ମୃତ୍ୟୁ ସଂବାଦ ଶୁଣିଛି ଉମି । ପଲଟୁର ଦୁର୍ଘଟଣା ଉମିର ହୃଦୟରେ ଗୋଟିଏ ସ୍ଥାୟୀ ମୂର୍ଚ୍ଛନା ପରି ଚିରଦିନ ରହିଯାଇଛି । ଏହି ଦୁଇ କିଶୋର କିଶୋରୀଙ୍କ ସ୍ୱପ୍ନିଳ ଭାବୋଚ୍ଛ୍ୱାସକୁ ଗାଳ୍ପିକ ପରିବେଷଣ କରିଛନ୍ତି 'ଯାଯାବର ପୁତ୍ରର କାହାଣୀ' ଗଳ୍ପରେ ।

"ଚୋରି କଲା ଆଲୁଅର ସ୍ନିଗ୍ଧିମା ଦେଇ କେତେ ସହଜରେ ପ୍ରତାରିତ କରିପାରିଛି ବହୁ ଦୂରର ମାଟିର ପୃଥିବୀକୁ ।"(୪) ଚନ୍ଦ୍ରର ଜ୍ୟୋସ୍ନାବିଧୌତ ରଜନୀ ଲକ୍ଷ୍ୟ କରେ ରାଜକୁମାର ଏବଂ କୁଶାଳୀର ରାଜକନ୍ୟାଙ୍କ ବୈବାହିକ ଜୀବନର ପ୍ରଥମ ସାକ୍ଷାତ ଅନ୍ତରାଳେ ଘଟିଥିବା ଚାରିତ୍ରିକ ସ୍ଖଳନର ପୂର୍ଣ୍ଣ ମିଥ୍ୟା ପାରିତୋଷିକମୂଳକ ବାକ୍ୟବ୍ୟୟ । ନିଜ ରାଜ୍ୟ ଅନ୍ତର୍ଗତ ଶ୍ରୀପୁରଗଡ଼ର ନାଏବର କନ୍ୟା ନନ୍ଦା ସହିତ ରାଜକୁମାରର ଗୋପନ ପ୍ରଣୟ ଏବଂ ତା'ର ପରିଣାମସ୍ୱରୂପ ନନ୍ଦାର ଗର୍ଭ ସଂଚାଳନ । ପ୍ରତିଶ୍ରୁତିପୂର୍ବକ ନନ୍ଦା, ଦେଶାନ୍ତରେ ରାଜକୁମାରକୁ ପାଇବାର ଅଭିଳାଷ କ୍ରମେ ରାଜ୍ୟ ତ୍ୟାଗ, ଅପରପକ୍ଷେ ରାଜକୁମାର ପ୍ରତିଶ୍ରୁତିଭଙ୍ଗ ପୂର୍ବକ କୁଶାଳୀର ରାଜନନ୍ଦିନୀ ସହ ପରିଣୟ ପୁରୁଷର ପ୍ରତିବଦ୍ଧତା



Source: Author, Digitized by PPRACHIN, SOA

ପ୍ରତି ଯେତିକି ପ୍ରଶ୍ନ କରିଛି ସେହିପରି ନିଜ ରାଜ୍ୟର ସେନାପତି ପୁତ୍ର ସହିତ ରାଜନନ୍ଦିନୀ ସ୍ୱପ୍ନାର ପ୍ରେମ ସଂପର୍କକୁ ପ୍ରାଚୁର୍ଯ୍ୟ ଭିତରେ ଅସ୍ୱୀକାର କରିବାର ମାନସିକତା ନାରୀର ପ୍ରତିବଦ୍ଧତା ଉପରେ ପ୍ରଶ୍ନ ଉଠାଇଛନ୍ତି ଗାଳ୍ପିକ 'ଜହ୍ନ ଓ ଜ୍ୟୋତ୍ସ୍ନା'ଗଳ୍ପରେ । ପରସ୍ପରଠାରେ ବିଶ୍ୱାସ ସୃଷ୍ଟି କରିବାର ଅଭିନୟ ଭିତରେ ପ୍ରଥମ ପ୍ରେମର ଅସ୍ୱୀକାରୋକ୍ତି ମଣିଷପାଇଁ କଣ ଅତି ପ୍ରୟୋଜନ ? ଏହି ପ୍ରଶ୍ନର ଉତ୍ତର ଅନ୍ତରାଳ ତଳେ ଥିବା ମାନବୀୟ ମନସ୍କତା ପ୍ରତି ଲେଖକ ପାଠକକୁ ଏକ୍ ସଂଦିଗ୍ଧ ପରିବେଶ ମଧ୍ୟରେ ଦଣ୍ଡାୟମାନ କରିଛନ୍ତି ।

"ପ୍ରଜା ବିଦ୍ରୋହରେ ଇତସ୍ତତଃ ବିଧ୍ୱସ୍ତ ଜମିଦାରୀ ଭଳି ଜମିଦାରବାବୁଙ୍କ ନିଶ ବି କଟିର ଯନ୍ତ୍ରାଘାତରେ କ୍ଷୟିଷ୍ଣୁ ହୋଇଆସୁଛି ।"(୫)

ଅସ୍ତଗାମୀ ସାମନ୍ତବାଦର ଦର୍ପିତ ଚାହାଣିର ନିଦର୍ଶନ 'ରାୟବାହାଦୁରଙ୍କ ନିଶ' । ସାମନ୍ତବାଦକୁ ପ୍ରୋତ୍ସାହିତ ତଥା ପ୍ରତିନିଧିତ୍ୱ ଦେଇଆସୁଥିବା ନାଏବ ବାବୁ, ତହସିଲଦାର, ହେଡମାଷ୍ଟର ଆଦି ଶ୍ରେଣୀ ସମୂହ ସହିତ ପାରେଶ୍ୱରର ଜମିଦାର ରାୟ ଶ୍ରୀ ଶଙ୍ଖନାଦ ଚୌଧୁରୀଙ୍କ ଦାମ୍ଭିକତାକୁ ଗାଳ୍ପିକ ଏକ ବ୍ୟଙ୍ଗାତ୍ମକ ରୀତିରେ ପରିବେଷଣ କରିଛନ୍ତି । ପ୍ରସଙ୍ଗ. ନିଶକାଟିବା । ନାଏବବାବୁ, ହେଡ୍‌ମାଷ୍ଟର ଓଗେର ଜମିଦାରଙ୍କ ନିଶର ଆକୃତି ଓ ପ୍ରକୃତି କିପରି ହେବା ଉଚିତ ସେ ନେଇ ତର୍କବିତର୍କ ସହିତ ଚର୍ଚ୍ଚିଲ, ହିଟଲର ତଥା ସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡଙ୍କଠାରୁ ନାତି ଷଷ୍ଠ ଜର୍ଜଙ୍କ ନିଶ ରଖିବାର ସ୍ୱରୂପକୁ ଉଭୟ ଐତିହାସିକ ପ୍ରକ୍ରିୟା ତଥା ବିଜ୍ଞାନସମ୍ମତ ସିଦ୍ଧାନ୍ତଗୁଡ଼ିକୁ ତର୍ଜମା କରିଛନ୍ତି । ପରିଣାମ, ଅତି ସଂକଟ । ଶଙ୍ଖନାଦ ଚୌଧୁରୀ ନିଜ ନିଶ ହଳକ ହରାଇବା ମୂଳରେ ଉପଦେଷ୍ଟାମାନଙ୍କ ତ୍ରୁଟିପୂର୍ଣ୍ଣ ସିଦ୍ଧାନ୍ତକୁ ବିଚାର ପରିସରକୁ ନ ନେଇ ସମସ୍ତ ଦୋଷ ଲଦିଛନ୍ତି ଜଟିଆ ବାରିକ ଉପରେ । ସାମନ୍ତବାଦର ଧ୍ୱଂସସ୍ତୂପ ଉପରେ ନବ୍ୟ ସାମନ୍ତବାଦର ପୁନଃ ଜାଗରଣର ଇଙ୍ଗିତ ଗାଳ୍ପିକ ଦେଇଛନ୍ତି ଯାହାର ସ୍ୱରୂପ ଓ ପ୍ରକାଶନ ଶୈଳୀ ପୂର୍ବଠାରୁ ଭିନ୍ନ ।

"ଅଧଘଣ୍ଟାଏ ଭିତରେ ବିଶୁ ଦାସ ସଂପର୍କୀୟ ଏଇ ନୂତନ ତଥ୍ୟ ଗାଁର ଆବାଳ ବୃଦ୍ଧବନିତା ମହଲରେ ବେଶ୍ ପ୍ରତିକ୍ରିୟା ଓ ବିସ୍ମୟ ସୃଷ୍ଟି କଲା । ଏତେଦିନେ ବହୁ ରହସ୍ୟର ସମାଧାନ ଦୁଇ ଯୁକ୍ତ ଦୁଇ, ଚାରି ଭଳି ସ୍ପଷ୍ଟ ହୋଇଉଠିଲା ।"(୬) ପ୍ରଚଳିତ ପ୍ରଥାର ଅନ୍ତରାଳରେ ସର୍ବନାଶୀ ଅନ୍ଧ ସଂସ୍କାର ଏବଂ ତା' ଦ୍ୱାରା ଆକ୍ରାନ୍ତ ମଣିଷ ଯେଉଁ ହୀନମନ୍ୟତା, ସନ୍ଦେହ ଓ ଦ୍ୱେଷର ଶିକାର ହୁଏ ତା'ର ଏକ୍ ପ୍ରତିଛବି 'ଚୁପ ସଇତାନ' ଗଳ୍ପ । ଗ୍ରାମରେ କାହାର ଗାଈ କ୍ଷୀର ଦେବା ବନ୍ଦ କରିବା, କଦଳୀ କାନ୍ଦି ବହୁଦିନ ଧରି ଅପରିପକ୍ୱ ରହିବା, ବଳଦ ପିଠିରେ ପାଞ୍ଚଣ ପିଟା ଘା' ଦୀର୍ଘଦିନ ଉପରାନ୍ତେ ନ ଶୁଖିବା ଇତ୍ୟାଦି ଘଟଣ ଅଘଟଣପାଇଁ ଦୋଷୀ ସାବ୍ୟସ୍ତ କରାଯାଇଛି ବିଶୁ ଦାସକୁ । ବିଶୁ ଦାସକୁ ଗୁଣି ଗାରେଡ଼ିର ଗନ୍ତାଘର ରୂପେ ନାଥୁ ମହାନ୍ତିର ଆବିଷ୍କାର କ୍ରମେ ସାରା ଗାଁ ଲୋକଙ୍କ ମଧ୍ୟରେ ବିଶ୍ୱାସର ଭୂମିଟିଏ ସୃଷ୍ଟି କରିଛି । ବିଶୁଦାସ କ୍ରମଶଃ ଗ୍ରାମ୍ୟ ଜନତାଙ୍କ ନିକଟରେ ଏକ



Source: Author, Digitized by PPRACHIN, SOA

ଅଜଣା ଆଶଙ୍କା ମିଶ୍ରିତ ଭୟ ଉନ୍ମେଷକାରୀ ମଣିଷଟିଏ ପାଲଟିଯାଇଛି । ତା'ର ପ୍ରତିଟି ଦୃଷ୍ଟିପାତ, ହସ କୌଣସି ନା କୌଣସି ଦୁର୍ଘଟଣା ଘଟିବାର ପୂର୍ବାଭାସ ବୋଲି ଏକ ପ୍ରତ୍ୟୟ ସୃଷ୍ଟି ହୋଇଛି । ଯେଉଁ ପ୍ରତ୍ୟୟଟି ତା'ର ସ୍ତ୍ରୀର ମୃତ୍ୟୁ ତଥା ନିଜର ମୃତ୍ୟୁ ପୂର୍ବରୁ ଗ୍ରାମ୍ୟ ଜନତାଙ୍କ ଚେତନାକୁ ଆବୃତ କରି ରଖିଥିଲା । କିନ୍ତୁ ବିଶୁ ଦାସର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତା' ନିକଟରେ ଥିବା ପୁଟୁଳି ସମସ୍ତଙ୍କ ମନରେ ଯେଉଁ ଅହେତୁକ ଜିଜ୍ଞାସା ସୃଷ୍ଟି କରିଥିଲା, ମୃତ୍ୟୁ ପରେ ସେଇ ପୁଟୁଳି ଭିତରୁ ଆବିଷ୍କାର କରାଯାଇଥିଲା ସଂଗୀତ ପାଚିଲା କଦଳୀ ଶୀର୍ଷକ ପୁସ୍ତିକା ଏବଂ ନିଜ ସ୍ତ୍ରୀ ବ୍ୟବହୃତ ପାନିଆ । ସାମାଜିକ ବାସନ୍ଦ ଏକଲା ମଣିଷ ବିଶୁ ଦାସର ଅସହାୟ ଜୀବନଚର୍ଯ୍ୟା ତଥା ଅନ୍ୟମାନଙ୍କ ପ୍ରତି ତା'ମନରେ ଥିବା ଅନୁକମ୍ପାକୁ ଗ୍ରାମ୍ୟ ଜନତା ହୃଦୟଙ୍ଗମ ନ କରିପାରିବାର ଅକ୍ଷମତାକୁ ଗାଳ୍ପିକ ଉକ୍ତ ଗଳ୍ପରେ ପ୍ରତିପାଦନ କରିଛନ୍ତି ।

"କିନ୍ତୁ ହଜାର ବର୍ଷ ପରେ ସେ ହଠାତ୍ ଦିନେ ଚିତ୍କାର କରି ଉଠିଲା —ନାଗଲୋକରୁ ସେ ମୁକ୍ତି ଚାହେଁ ।"[୭] ସୃଷ୍ଟିର ଅନାବିଷ୍କୃତ ରହସ୍ୟର ସନ୍ଧାନ ଉଦ୍ଦେଶ୍ୟରେ ଭ୍ରମଣମାନ ପାନ୍ଥଟି ନାଗଲୋକର 'ଐଶ୍ୱର୍ଯ୍ୟ ଓ ସଂଭୋଗର ଅକଳ୍ପନୀୟ ପରିସର' ଭିତରେ ବନ୍ଦୀ ହୋଇଛି । ନାଗଲୋକର ଐଶ୍ୱର୍ଯ୍ୟ ବିଭବରେ ହଜାର ବର୍ଷ ଜୀବନ ଅତିକ୍ରାନ୍ତ କରିଥିଲେ ମଧ୍ୟ ତାକୁ ଗୋଟିଏ ବର୍ଷ ପରି ମନେ ହେଇଛି । ପ୍ରାଚୁର୍ଯ୍ୟ ଏବଂ ସମ୍ଭୋଗ ମଧ୍ୟରେ ଥାଇ ସୁଦ୍ଧା ମୁକ୍ତି ଚାହିଁଛି ନାଗଲୋକରୁ । ଫେରିବାକୁ ଇଚ୍ଛା କରୁଛି ତା'ର ସେଇ ଅତି ପ୍ରିୟ ପରିଚିତ ଧୂଳିଧୂସରିତ ମୁକ୍ତ ନୀଳ ଆକାଶ ଘେରା ପୃଥିବୀକୁ । ଜୀବନ ଅପୂର୍ଣ୍ଣ ଅସାର ମନେ ହେଇଛି । ଜୀବନର ପୂର୍ଣ୍ଣତା କେବଳ ପ୍ରାଚୁର୍ଯ୍ୟ କାରାଗାରରେ ସୀମିତ ନୁହେଁ । ତେଣୁ ସେଇ ଅସୀମ ଜୀବନର ପୂର୍ଣ୍ଣ ସ୍ୱାଦ ଅନୁଭବର ଅନୁପସ୍ଥିତିଜନିତ ଯନ୍ତ୍ରଣାରେ ବିଚଳିତ ତା'ର ଅନ୍ତରାତ୍ମା ପୁନଶ୍ଚ ମୁକ୍ତି ସରଣୀ ଅନ୍ୱେଷଣରେ ସେଇ ପୃଥିବୀରେ ନାଗଲୋକ ଅନୁରୂପ ପରିବେଶ ତାକୁ ସ୍ତବ୍ଧ ଚକିତ କରିଛି, ଜୀବନର ଶୂନ୍ୟତାକୁ ସେ ଗଭୀର ଭାବେ ଅନୁଭବ କରିଛି । 'ନାଗଲୋକ ପ୍ରତ୍ୟାଗତ' ଗଳ୍ପଟିରେ ଗାଳ୍ପିକ ଭୋଗ ଏବଂ ତ୍ୟାଗ ସର୍ବୋପରି ମାନବୀୟ ସମ୍ବଳିତ ମୂଲ୍ୟବୋଧ ପ୍ରତି ଗୁରୁତ୍ୱ ଦେଇଛନ୍ତି ।

ଜଣେ କିଏ କହିଲା – "ତା ଛଡ଼ା ଇଏ ହେଲା ଅସୁମାରି କାଳର ପୁରୁଣା ବନ୍ଧୁ । ମା'ଭଳି ଆମକୁ କୋଳକରି ରକ୍ଷା କରି ଆସିଛି । ଇଏ ଇମିତି ନଷ୍ଟ ହେବନି, ଯାରି ଭାଙ୍ଗିବାର ସମୟ ଆସିନି । ଇଏ କେବେ ଭାଙ୍ଗିବ ଜାଣିଛ ?"[୮] ଦଳେଇ ଘାଇର ଭୟାନକ ଦୃଶ୍ୟ ଅବଲୋକନ ପୂର୍ବରୁ ଏଇ ପ୍ରଶ୍ନ ଭିତରେ ସଂଗୁପ୍ତ ଥିଲା ପାର୍ଶ୍ୱବର୍ତ୍ତୀ ଲୋକଙ୍କ ଅନେକ କିମ୍ବଦନ୍ତୀ, ବିଶ୍ୱାସ । ଶୁଣାଯାଏ ସରକାରଙ୍କ ନିର୍ଦ୍ଦେଶ କ୍ରମେ ଏଇ ଘାଇଟି ସୃଷ୍ଟି କରାଯାଇଥିଲା ଘାଇର ଉପର ଅଂଶରେ ବସବାସ କରୁଥିବା ଜନଜୀବନର ସୁରକ୍ଷାପାଇଁ । ତନୁର ସ୍ୱପ୍ନାଛନ୍ନ ଜୀବନ ଭିତରେ ଏପରି ଦୁଃସ୍ୱପ୍ନର ଆବିର୍ଭାବ ଏବଂ ତା'



Source: Author, Digitized by PPRACHIN, SOA

ଚକ୍ଷୁ ସମ୍ମୁଖରେ ବନ୍ୟାପ୍ଲାବିତ ଇଲାକାର ଭୟାବହତାକୁ ଗାଣ୍ଡିକ ପ୍ରକାଶ କରିଛନ୍ତି । ନିଜ ପ୍ରାଣପ୍ରିୟା ପତ୍ନୀ ଲକ୍ଷ୍ମୀ ଏବଂ ବୁଢ଼ୀମା'ର ଅସହାୟତାବୋଧ, ନୀଳ ସବୁଜିମାରେ ଭରପୁର ଶସ୍ୟକ୍ଷେତ୍ର, ଭିଟାମାଟିର ବିପର୍ଯ୍ୟସ୍ତ ଦୃଶ୍ୟ, ଜୀବନ ରକ୍ଷା ଲାଗି ମଣିଷର ପ୍ରତିଯୋଗିତା ମନୋଭାବକୁ ଲକ୍ଷ୍ୟ କରିଛି ତନୁ । ସରକାରୀ କଳର ଅପରିଣାମଦର୍ଶିତାର ଶିକାର ହୋଇଥିବା ଏହି ଅଞ୍ଚଳର କରୁଣ କାହାଣୀ 'ଦଳେଇଘାଇ'ରେ ବେଶ୍ ସ୍ପଷ୍ଟ ରୂପ ନେଇଛି ।

''ପରମାନନ୍ଦ ବା ପରମା ଠକ ନାମ ଅର୍ଜନ କରିବା ଭିତରେ ପରମାର କିଛି ହାତ ନ ଥିଲା । ତା'ପରେ କିନ୍ତୁ ସେ ନିଜ କୃତିତ୍ୱରେ ଯେଉଁ ନାମ ଜନତାର ରାୟରେ. ପଟ୍ଟା କରିନେଲା, ସେ ନାମର ପ୍ରତାପରେ ଧୋଇଗଲା ଦୂର ଅତୀତର ଅନର୍ଜିତ କଳଙ୍କ ।''[୯] ଦୀର୍ଘ ଦୁଇହଜାର ବର୍ଷ ପୂର୍ତ୍ତି ଅବସରରେ ଇହଲୋକରେ ବଞ୍ଚିବାର ଅନିଚ୍ଛା ପ୍ରକାଶ କରି ଯେଉଁ ରାତିରେ ଜମିଦାର ଶଙ୍ଖନାଦବାବୁଙ୍କ ଲୁହା ସିନ୍ଦୁକ ଭାଙ୍ଗି ବାବା ପରମାନନ୍ଦ ଧନରତ୍ନ ଧରି ଅନ୍ତର୍ଦ୍ଧାନ ହେଇଗଲେ ସେଇ ରାତିରେ ଜନ୍ମିଥିବା ଶିଶୁପୁତ୍ରଟି ଠକ ପରମାନନ୍ଦ ନାମରେ ପରିଚିତ ହେଲା । ଜାଆଁଳା ଘାଇ କବଳରୁ ପାଶ୍ୱବର୍ତ୍ତୀ ଗ୍ରାମକୁ ରକ୍ଷା କରିବା ପାଇଁ ବାଲ୍ୟରୁ ବୃଦ୍ଧ ବୟସ ପର୍ଯ୍ୟନ୍ତ କେବଳ ମେହନତ କରିନି ପରନ୍ତୁ ପିତୃ ଅମଳର ପୁରୁଣା ଋଣ ଶୁଝିବା ସକାଶେ ଜମିଦାରଙ୍କ ପ୍ରକାଣ୍ଡ ବାସଭାବନ ନିର୍ମାଣପାଇଁ ବେଠି ଖଟିଥିବା ପରମାନନ୍ଦ ଅବଶେଷରେ 'ଜାଆଁଳା ଘାଇର କୂର୍ମ' ପାଲଟିଛି । ଅଚାନକ ବନ୍ୟାର ଆଗମନ ଏବଂ ବନ୍ଧ ଉପରେ ସରକାରୀ ଲୋକଙ୍କ ପର୍ଯ୍ୟବେକ୍ଷଣ ପରମାନନ୍ଦକୁ ମ୍ରିୟମାଣ କରିଛି । ଜାଆଁଳା ଘାଇ ଭାଙ୍ଗିଛି ଏବଂ ଧ୍ୱସ୍ତବିଧ୍ୱସ୍ତ ଗ୍ରାମରେ କେବଳ ବର୍ତ୍ତିଯାଇଛି ଜମିଦାରଙ୍କ ବିରାଟ ଦୁଇମହଲା କୋଠା ଏବଂ ସେଥିରେ ଆଶ୍ରୟ ନେଇଥିବା କିଛି ଗ୍ରାମବାସୀ । କିନ୍ତୁ ନିଜର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ପ୍ରକୃତିର ତାଣ୍ଡବଲୀଳା ରୋକିବାକୁ ଅକ୍ଷମ ହୋଇ ଯେତେବେଳେ ପରମାନନ୍ଦ ସେଇ କୋଠାରେ ଆଶ୍ରୟ ନେବାକୁ ଶ୍ରେୟ ମଣିଛି ସେତେବେଳେ ସେଇ ଦ୍ୱାର ଖୋଲି ନାହିଁ, ବନ୍ୟାର ଗଭୀର ସ୍ରୋତରେ ସେ ଭାସିଯାଇଛି ।

"ଆହୁରି ଦୁଇ ତିନିଟା ଦୃଶ୍ୟ କଟିଗଲା । ବହୁ ବର୍ଷର ଅଭିନୟପଟୁ ତନ୍ତ୍ରୀ ସବୁ ଆଜି ସମସ୍ତ ଅବସନ୍ନତା ସତ୍ତ୍ୱେ ବିଶ୍ୱସ୍ତ ଭାବରେ କାମ ତୁଲାଇନେଲା ।"[୧୦] ନାଟ୍ୟପ୍ରାଣ ହରିପଦ ନାଟକରେ ବିବିଧ ଚରିତ୍ରରେ ଅଭିନୟ କରି ସଂପ୍ରତି ବୟସ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଛି । ଦାରିଦ୍ର୍ୟର ସୀମାରେଖା ତଳେ ରହି ପ୍ରାଣ ଖୋଲି ହସିପାରୁ ନ ଥିବା ହରିପଦ ନିଜର ନିଖୁଣ ଅଭିନୟ ମାଧ୍ୟମରେ ଦର୍ଶକ ମଣ୍ଡଳୀକୁ ହସାଇବାର ଉପାଦାନଟିଏ ପାଲିଟିଛି । କିନ୍ତୁ ଘରେ ଆଜି ପ୍ରସୂତି ରୋଗରେ ଛଟପଟ ତା'ର ପତ୍ନୀ । ପତ୍ନୀର ଯନ୍ତ୍ରଣା କାତର ଖବର ନିଜ ଝିଅ ଶାରୀଠୁ ଶୁଣିବା ପରେ ତା' ଅଭିନୟରେ ପୂର୍ବ ପଟୁତାର ଅଭାବବୋଧ ଦେଖି ସହକର୍ମୀଗଣ ତିରସ୍କାର କରିଛନ୍ତି । ପୂର୍ବ ସର୍ତ୍ତାନୁସାରେ ରାଜା ଅଭିନୟରେ ଅଭିନୟ କରୁଥିବା ଅଧିକାରୀ ମହାଶୟଙ୍କଠାରୁ ପଇସା ନେଇ ନିଜ ଝିଅ ମାଧ୍ୟମରେ ସ୍ତ୍ରୀପାଇଁ.



Source: Author, Digitized by PPRACHIN, SOA

କବିରାଜ ଔଷଧର ବ୍ୟବସ୍ଥା କରିବ । ଦୃଶ୍ୟ ପରେ ଦୃଶ୍ୟ ଅତିକ୍ରାନ୍ତ କିନ୍ତୁ ନାଟ୍ୟାଭିନୟରେ ତଲ୍ଲୀନ ଏବଂ ବାସ୍ତବ ସମସ୍ୟା ବୁଝିବାକୁ ଅକ୍ଷମ ଅଧିକାରୀଠାରୁ ପଇସା ନେଇ ଅପେକ୍ଷାମାଣ ଆତଙ୍କିତ ଝିଅକୁ ଦେଇପାରୁ ନାହିଁ । ଶେଷ ଦୃଶ୍ୟ ଅଭିନୟ ପରେ ହରିପଦର ଅଶେଷ କାକୁତି ଉପରାନ୍ତେ ଅଧିକାରୀବାବୁଙ୍କ ଠାରୁ ପଇସା ନେଇ ଝିଅ ଶାରୀକୁ ଦେଲାବେଳେ, ମା'ର ମୃତ୍ୟୁକାଳୀନ ଶୋକପୂର୍ଣ୍ଣ ନିଥର ନିରବତାରେ ଆଚ୍ଛନ୍ନ ଶାରୀର ଭାବକୁ ଲକ୍ଷ୍ୟ କରି ନିଜର ଅସହାୟତାକୁ ପ୍ରକାଶ କରିଛି ହରିପଦ ।

"ଘଟଣା ଯେତେ ସାଧାରଣ ହେଉ, ପରିବେଶ ହେଉ ଅସ୍ୱଚ୍ଛ, ଚରିତ୍ରଟି ହେଉ ଅପ୍ରଧାନ, ଥରେ ମନୋଜବାବୁଙ୍କ ଲେଖନୀରେ ସ୍ପର୍ଶ ପାଇବାମାତ୍ରେ ସେସବୁ ସତ୍ୟତା ଆହରଣ କରି ହଠାତ୍ ଉର୍ଜସ୍ୱଳ ହୋଇଉଠନ୍ତି । ଅସାଧାରଣ, ଅନ୍ୟତ୍ର, ଅନନୁଭୂତ ଏକ ମନୋରମ ଭାବବ୍ୟଞ୍ଜନାରେ ପାଠକୀୟ ଚେତନାକୁ ଉଚ୍ଚକିତ, ମଥିତ କରିଦିଅନ୍ତି ।"[୧୧] ବିଶ୍ୱରେ ଅନେକ ଚିନ୍ତାଶୀଳ ବ୍ୟକ୍ତି ଅନ୍ୟ ପକ୍ଷରେ କଳା ସଂସ୍କୃତି ପ୍ରତି ସେମାନଙ୍କର କୌଣସି ଆନୁଗତ୍ୟ ନଥାଏ । ମନୋଜ ଦାସ ସେଇ ଶ୍ରେଣୀୟ ନୁହନ୍ତି । ତାଙ୍କର ଚରିତ୍ର ସ୍ମୂହ ଅସହାୟତାର ଘୂର୍ଣ୍ଣିବଳୟରେ ଆବର୍ତ୍ତିତ ହେଉଥିଲେ ମଧ୍ୟ ଜୀବନ ସହିତ ସଂଗ୍ରାମ ଏବଂ ପ୍ରକୃତି ସହିତ ସଂଗ୍ରାମ କରିବାକୁ ପଶ୍ଚାତ୍‌ପଦ ହେଇ ନାହାନ୍ତି । ଯଦିଓ ମନୁଷ୍ୟ ପ୍ରକୃତିକୁ ଜୟ କରିଛି କିନ୍ତୁ ପ୍ରକୃତିର ତ୍ରାସ ନିକଟରେ ସେ କେତେ ଅସହାୟ ତାହା ଚପରାସୀ ତନୁ (ଦଳେଇଘାଇ) ଏବଂ ପରମାନନ୍ଦ (ଜାଆଁଳାଘାଇର କୂର୍ମ)ଙ୍କ ଶଙ୍କାଗ୍ରସ୍ତ ଜୀବନ କାହାଣୀରୁ ଦେଖିବାକୁ ମିଳେ । ବନ୍ୟାର ପ୍ରବଳ ସ୍ରୋତରେ ଗୋଟିଏ ପରେ ଗୋଟିଏ ଘର ଭାଙ୍ଗିବା, ଜୀବନ ବଞ୍ଚେଇ ରଖିବାର ବ୍ୟାକୁଳ ସଂଗ୍ରାମ, ପରାଜୟ ଅବଶ୍ୟମ୍ଭାବୀ ଜାଣି ମଧ୍ୟ ପ୍ରକୃତି ସହିତ ଲଢ଼ିବାର ଦୃଢ଼ମନୋବଳ ଆଦି ଏହି ଗଳ୍ପ ଦୁଇଟିରେ ପ୍ରକାଶିତ । ଗାଳ୍ପିକଙ୍କ ଚେତନାର ପ୍ରତ୍ୟକ୍ଷ ଅନୁପ୍ରବେଶଜନିତ ଅନୁଭବ ପାଠକ ଉପଲବ୍ଧି କରିଥାଏ । ସୃଜନ ପ୍ରକ୍ରିୟାର ଏହି ଭାବବୋଧକୁ Negative Capability କୁହାଯାଇପାରେ, ଯାହା ମନୋଜୀୟ ଭାବ ଚେତନାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ବୈପ୍ଲବିକ ମନନଶୀଳତା ଭିତରେ ସାହିତ୍ୟ ସଂସ୍କୃତି ପ୍ରତି ତାଙ୍କର ଯେତିକି ଆଗ୍ରହ ଓ ଉଦ୍ୟମ ପ୍ରକାଶ ପାଇଛି ସେତିକି ଏଇ ମାଟିରେ ମୋହାଚ୍ଛନ୍ନ ମଣିଷକୁ ଉତ୍ତରିତ ଜୀବନବୋଧର ସ୍ପର୍ଶ ଦେବାରେ ପ୍ରୟାସ କରିଛନ୍ତି । ସମାଜ ଦୃଷ୍ଟିରେ ହୀରା ବିଷକନ୍ୟା ହେଇପାରେ କିନ୍ତୁ ନିଜକୁ ଅନୁଭବ କରିବାର ଅବକାଶ ସୃଷ୍ଟି କରି ଗାଳ୍ପିକ ହୀରାପ୍ରତି ପାଠକୀୟ ସମବେଦନା ସୃଷ୍ଟି କରିଛନ୍ତି । "It is not the consciousness of of men that determines their being. but the contrary, their social being that determines their consciousness."[୧୨] ନା, ମନୋଜ ଦାସ ଏ ତତ୍ତ୍ୱକୁ ଅତିକ୍ରମ କରିଯାଇଛନ୍ତି । ତାଙ୍କ ପ୍ରଥମ ପର୍ଯ୍ୟାୟର ଗଳ୍ପଗୁଡିକୁ ଛାଡ଼ିଦେଲେ ଆମେ ଦେଖିବା consciousness ହିଁ



Source: Author, Digitized by PPRACHIN, SOA

ପରିବେଶ ନିର୍ମାଣ କରେ । 'ମନୋଜ ଦାସ ସୃଷ୍ଟି ବିଭବକୁ ନିରୀକ୍ଷଣ କଲେ ତାଙ୍କର ସୃଜନଶୀଳ ଚିତ୍ତବୃତ୍ତିରେ ଏହି କଥାଟି ଯେ ଅତ୍ୟନ୍ତ ଗ୍ରାହ୍ୟ ତାହା ଅନସ୍ୱୀକାର୍ଯ୍ୟ ।

**ସହାୟକ ଗ୍ରନ୍ଥସୂଚୀ ଓ ସୂଚନା**

୧. ପ୍ରକାଶକଙ୍କ ମତରେ, "ଅବଶ୍ୟ ଏହା ସଂଶୋଧିତ ଏବଂ ପରିବର୍ଦ୍ଧିତ ସଂସ୍କରଣ । ଏଥିରେ ବୟସ୍ୟ, ଦଳେଇଘାଇ, ଜାଆଁଳାଘାଇର କୁର୍ମ ଏବଂ ମହାପ୍ଲାବନ ଏହି ଚାରିଗୋଟି ଗପ ଯୋଗ କରାଯାଇଛି ।" 'ବିଷକନ୍ୟାର କାହାଣୀ'ର ତୃତୀୟ ସଂସ୍କରଣ ଅବସରରେ ପ୍ରକାଶକ 'ମହାପ୍ଲାବନ' ଶୀର୍ଷକ ଗଳ୍ପଟିର ଉପସ୍ଥିତି କଥା କହିଥିଲେ ମଧ୍ୟ ଏହି ଗଳ୍ପଟି ଉକ୍ତ ସଂକଳନରେ ସ୍ଥାନିତ ହୋଇ ନାହିଁ । ଜହ୍ନ ଓ ଜ୍ୟୋତ୍ସ୍ନା, ଦଳେଇଘାଇ, ବୟସ୍ୟ ଏହି ତିନୋଟି ଗଳ୍ପ ମନୋଜ ଦାସଙ୍କ 'କଥା ଓ କାହାଣୀ'ରେ ନାହିଁ । ୧୯୫୫ ମସିହାରେ ଦଳେଇଘାଇ କୌଣସି ଏକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ 'ବୟସ୍ୟ' ଗଳ୍ପଟି ୧୯୫୩ରେ ପ୍ରକାଶିତ ହୋଇଥିବା 'ଜୀବନର ସ୍ୱାଦ' ଗଳ୍ପ ସଂକଳନରେ ପ୍ରକାଶିତ ।

୨.ବିଷକନ୍ୟାର କାହାଣୀ(ତୃତୀୟ ସଂସ୍କରଣ), ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୬୩ ପୃ-୬ ।

୩.ତତ୍ରୈବ - ପୃ-୨୪ ।

୪.ତତ୍ରୈବ - ପୃ-୩୨ ।

୫.ତତ୍ରୈବ - ପୃ-୩୫ ।

୬.ତତ୍ରୈବ - ପୃ-୪୨ ।

୭.ତତ୍ରୈବ - ପୃ-୫୪ ।

୮.ତତ୍ରୈବ - ପୃ-୫୯ ।

୯.ତତ୍ରୈବ - ପୃ-୭୨ ।

୧୦.ତତ୍ରୈବ - ପୃ-୮୪ ।

୧୧.ମନୋଜାୟନ, ସଂ.ଶ୍ରୀ ଚନ୍ଦ୍ରକୁମାର ମହାନ୍ତି, ମନୋଜ ଦାସ ଅଭିନନ୍ଦନ ସମିତି, ବାଲେଶ୍ୱର-୨୦୦୧, ପୃ-୨୧୨ ।

୧୨.Marxism and Literary Criticism, Terry Eagleton, Routledge, N.Y.2002 page-4.



Source: Author, Digitized by PPRACHIN, SOA



ଡ. ନଗେନ୍ କୁମାର ଦାସ ଜଣେ ପ୍ରତିଶ୍ରୁତି ସଂପନ୍ନ ସାହିତ୍ୟ ସମୀକ୍ଷକ। ବାମାବାଦ ଏବଂ ବାମବାଦ ଦୁଇଟି ପ୍ରମୁଖ ପ୍ରଭାଗ ସଂପର୍କରେ ତାଙ୍କର ଗଭୀର ଅଧ୍ୟୟନ ଓ ତର୍କଣା ପଦ୍ଧତି ବହୁ ବୁଦ୍ଧିଜୀବୀଙ୍କ ଦ୍ୱାରା ଆଦୃତ। ସାହିତ୍ୟ, ସଂସ୍କୃତି ଓ ସମାଜ ବିଜ୍ଞାନର ବିବିଧ ଦିଗରେ ଲେଖନୀ ଚାଳନା କରି ସମୀକ୍ଷା ଶାସ୍ତ୍ରର ନୂତନ ଦିଗ ଉନ୍ମୋଚନ କରିଛନ୍ତି। ବହୁ ଅନୁଷ୍ଠାନ ସହିତ ସକ୍ରିୟ ଭାବେ ଜଡ଼ିତ ହୋଇ ସାମାଜିକ ଦାୟବଦ୍ଧତାର ପରିଚୟ ଦେଇଛନ୍ତି। ସାହିତ୍ୟ ପ୍ରତି ଗଭୀର ଅନୁରାଗ ତାଙ୍କ ସମୀକ୍ଷା କର୍ମକୁ ଅଧିକ ଦୀପ୍ତିମାନ କରିଛି। 'ମୁଁ ନାସ୍ତିକ କାହିଁକି '(ଅନୁବାଦ), 'ଜିଜ୍ଞାସା' (ହେତୁବାଦୀ ପ୍ରବନ୍ଧ ସଂକଳନର ସଂପାଦନା), 'ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଓଡ଼ିଆ ରଚନା ବଳି' (ଦେବେନ୍ଦ୍ର କୁମାର ଦାଶଙ୍କ ସହିତ ସଂପାଦନା), 'ସନତ୍ ସମଗ୍ର' (ସଂପାଦନା), 'ଫକିରମୋହନଙ୍କ ଶାସ୍ତ୍ରାୟଣ ଓ ଅନ୍ୟାନ୍ୟ ପ୍ରବନ୍ଧ' (ପ୍ରବନ୍ଧ ସଂକଳନ) ଓ 'ସ୍ୱାତନ୍ତ୍ର୍ୟର ସଂଧାନରେ : ଓଡ଼ିଆ ଲେଖିକାଙ୍କ ଉପନ୍ୟାସରେ ବାମାବାଦୀ ଚିନ୍ତନ' ପ୍ରଭୃତି ପୁସ୍ତକ ତାଙ୍କ ସାରସ୍ୱତ ସାଧନାର ଗୋଟିଏ ଲେଖାଏଁ ସ୍ମାରକ। ଏତଦ୍ ବ୍ୟତୀତ ବହୁ ପ୍ରବନ୍ଧ ପୁସ୍ତକ ତଥା ପତ୍ର-ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ଗୁଡିକ ଖୁବ୍ ମନୋଜ୍ଞ। ସଂପ୍ରତି ସେ ଏସ୍.ଆର. ମହାବିଦ୍ୟାଳୟ, ବିଶ୍ରାରେ ଅବସ୍ଥାପିତ।

- ପ୍ରକାଶକ



ଅଗ୍ରଦୂତ
କଟକ-୨

ISBN 81-86354-130-8

Source: Author, Digitized by PPRACHIN, SOA